# ବୃହଜ୍ଜାତକ

ଜ୍ୟୋତିଃସାର ରତ୍ନାବଲୀ, ଜାତକଦର୍ପଣ ଆଦି ଗ୍ରନ୍ଥକର୍ତ୍ତା

ଜ୍ୟୋତିଃଶାସ୍ତ୍ରର ସରକାରୀ ପରୀକ୍ଷକ

ପଣ୍ଡିତ ଶ୍ରୀ ବାଇକୋଳି ଜ୍ୟୋତିଷ ବିଶାରଦଙ୍କ

ଉତ୍କଳ ଅନୂଦିତ

ସୁବୋଧିନୀ ଭାଷାଟୀକା ସହିତ ପ୍ରକାଶିତ

(ପ୍ରଥମସଂସ୍କରଣ)

ମୁଦ୍ରାକର:—

ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ

ଶା ର ଦା ପ୍ରେ ସ୍

ବ୍ରହ୍ମପୁର (ଗଞ୍ଜାମ)

୧୯୫୨

ମୂଲ୍ୟ ତିନିଟଙ୍କା ଆଠଅଣା

# ନିବେଦନ

କରୁଣାମୟୀ ନାରାୟଣୀଙ୍କ କୃପାରୁ 'ବୃହଜ୍ଜାତକ' ଗ୍ରନ୍ଥ ଆଜ ପ୍ରକାଶ ପାଇଲା । ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଏଗ୍ରନ୍ଥ ଲେଖା ଯାଇଥିଲେ ସୁଦ୍ଧା ଉତ୍କଳଭାଷାରେ ଏହାହିଁ ପ୍ରଥମ ପ୍ରକାଶ ।

ଗ୍ରନ୍ଥକର୍ତ୍ତା ମହାମତି ବରାହମିହିରାଚାର୍ଯ୍ୟ ସମ୍ରାଟ ବିକ୍ରମାଦିତ୍ୟଙ୍କ ନବରତ୍ନ ସଭା ମଣ୍ଡନ କରିଥିଲେ । ତାହାଙ୍କର ଜନ୍ମସ୍ଥାନ କାପିତ୍ଥଲ । ଏହା ଉଜ୍ଜୟିନୀର ନିକଟବର୍ତ୍ତୀ । ପିତା ପ୍ରସିଦ୍ଧ ଜ୍ୟୋତିର୍ବିଦ ପଣ୍ଡିତ ଆଦିତ୍ୟ ଦାସଙ୍କଠାରୁ ସେ ଜ୍ୟୋତିଃଶାସ୍ତ୍ର ଅଧ୍ୟୟନ କରିଥିଲେ ଓ ଶ୍ରୀ ସୂର୍ଯ୍ୟଦେବଙ୍କ ମନ୍ତ୍ରାଦି ଜପରୁ ତାଙ୍କର ସାଧନା ସିଦ୍ଧ ହୋଇଥିଲା ।

ବରାହ ବହୁଗ୍ରନ୍ଥ ଲେଖିଛନ୍ତି, ସେମଧ୍ୟରୁ ବୃହଜ୍ଜାତକ, ଲଘୁଜାତକ, ପଞ୍ଚସିଦ୍ଧାନ୍ତିକା, ବୃହତ୍ସଂହିତା, ଯୋଗଯାତ୍ରା, ବରାହପଟଳ ପ୍ରଧାନ ।

ଗ୍ରନ୍ଥକର୍ତ୍ତା ନିଜର ଜନ୍ମସ୍ଥାନ ଓ ପିତାଙ୍କ ନାମ ଛଡ଼ା ଜନ୍ମ ସମୟାଦି ବା ଗ୍ରନ୍ଥପୂର୍ତ୍ତିକାଳ ନଲେଖିଥିବାରୁ ତାଙ୍କର ଜନ୍ମ ସମୟ ନେଇ ବହୁମତଭେଦ ଦେଖାଯାଏ । ପାଶ୍ଚାତ୍ୟ ପଣ୍ଡିତ Dr. G. Thibaut ଓ Dr. Kern ତଥା ପ୍ରାଚ୍ୟ ପଣ୍ଡିତ ସୁଧାକର ଦ୍ୱିବେଦୀ ଓ ଡ଼ାଃ ଭାଉଦାଜୀ ପ୍ରଭୃତି ତାଙ୍କର ଜନ୍ମସମୟ ଖ୍ରୀଷ୍ଟୀୟ ପଞ୍ଚମ ଶତକ ବୋଲି ସ୍ଥିର କରିଛନ୍ତି ।

ଫଳିତ ଗ୍ରନ୍ଥମାନଙ୍କ ମଧ୍ୟରେ ବୃହଜ୍ଜାତକର ସ୍ଥାନ ଖୁବ୍ ଉଚ୍ଚରେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ ଫଳ କଥନର କେତେକ ସ୍ୱତନ୍ତ୍ରରୀତି ରହିଛି । ବିଶେଷତଃ ନିଷେକାଧ୍ୟାୟ, ଆୟୁର୍ଦ୍ଦାୟାଧ୍ୟାୟ, ସ୍ତ୍ରୀଜାତକାଧ୍ୟାୟ ଆଦି କେତେକ ବିଷୟରେ ଏହାର ତୁଳନା ଅନ୍ୟତ୍ର ନାହିଁ ।

ଏହି ଗ୍ରନ୍ଥ ଯେଭଳି କଠିନ ସେଥିରେ ଭଟ୍ଟୋତ୍ପଳଙ୍କ 'ଚିନ୍ତାମଣିଟୀକା' କୁହିଁ ଆଶ୍ରୟ କଲେ ଅର୍ଥବୋଧ ହୁଏ । 'ମହୀଧର' ତଥା 'ମହାଦେବ' ଏଗ୍ରନ୍ଥର ଟୀକା କରିଛନ୍ତି ଓ କେରଳୀଟୀକା ନାମକ ଅନ୍ୟ ଟୀକା ମଧ୍ୟ ରହିଛି ବୋଲି ଗ୍ରନ୍ଥାନ୍ତରରୁ ଜଣାଯାଏ । କେରଳୀଟୀକା ଦୁଷ୍ପ୍ରାପ୍ୟ ଓ ଅନ୍ୟଟୀକା ଗୁଡ଼ିକ ଭଟ୍ଟୋତ୍ପଳଙ୍କ ଟୀକା ଭଳି ସୁବୋଧ ଓ ବିସ୍ତୃତ ନୁହେ ।

ଭଟ୍ଟୋତ୍ପଳ ଜ୍ୟୋତିଃଶାସ୍ତ୍ରର ନିଷ୍ଣାତ ପାରଦର୍ଶୀ ଥିଲେ । ସେ ୮୮୮ ଶକାବ୍ଦ (୯୬୭ ଖ୍ରୀଷ୍ଟାବ୍ଦ) ଚୈତ୍ର ଶୁକ୍ଳ ପଞ୍ଚମୀ ଗୁରୁବାର ଦିନ ଏଗ୍ରନ୍ଥର ଟୀକା ପୂର୍ଣ୍ଣ କରିଥିଲେ । ସେ ଲେଖିଛନ୍ତି:—

ବରାହମିହିରାଚାର୍ଯ୍ୟକୃତେ ହୋରାମହୋଦଧୌ ।
ଅର୍ଥିନାମ୍ପୂଲଷ୍ଟକେଽର୍ଥପ୍ରତ୍ୟେ ବିବୃତିପ୍ଳବମ୍ ।୧।
ଚିନ୍ତାମଣିରିତିଖ୍ୟାତା ଟୀକାଶାସ୍ତ୍ରଜ୍ଞବଲ୍ଲଭା ।
ସପ୍ତସାର୍ଦ୍ଧସହସ୍ରାଣି ମାନମସ୍ୟାମନୁଷ୍ଟୁଭାମ୍ ।୨।
ସ୍ଥିତଂ ଦୌଷ୍ଟ୍ୟଂ ପରିତ୍ୟଜ୍ୟ ଟୀକାଂ ସମ୍ୟଗ୍‌ବିରଚ୍ୟ ଚ ।
ଉପଯୋଗ୍ୟାନି ଶାସ୍ତ୍ରେ ଚେତ୍ତାଂସ୍ତ୍ୟକ୍ତ୍ୱା ନୋପବୋଧିତାଃ ।୩।
ବ୍ୟାଖ୍ୟେୟଂ ଯନ୍ମୟା ତ୍ୟକ୍ତଂ ଯଚ୍ଚ ଯୁକ୍ତିବିବର୍ଜ୍ଜିତମ୍ ।
ଭ୍ରାନ୍ତ୍ୟା ବିଲିଖିତଂ ଯଚ୍ଚ ତତ୍ସର୍ବଂ ସ୍ଫୁଟତାଂ ନୟନ୍ତୁ ।୪।
ଚୈତ୍ରମାସସ୍ୟ ପଞ୍ଚମ୍ୟାଂ ସିତାୟାଂ ଗୁରୁବାସରେ ।
ବସ୍ୱଙ୍କାଷ୍ଟମିତେ ଶାକେ କୃତେୟଂ ବିବୃତିର୍ମୟା ।୫।
ବିଧାୟ ଟୀକାଂ ଶାସ୍ତ୍ରେସ୍ମିନ୍ ଯଦ୍ଭବଦ୍ପୁଣ୍ୟମର୍ଜ୍ଜିତମ୍ ।
ତେନ ନିର୍ମତ୍ସରୀଭୂୟାତ୍ସୌଜନ୍ୟାଲଂକୃତୋଜନଃ ।୬।

ବାସ୍ତବରେ ଏଭଳି ସୁବୋଧ ଟୀକା ନଥିଲେ ମାଦୃଶ୍ୟ ପ୍ରଜ୍ଞାହୀନ ବ୍ୟକ୍ତି ଏହାର ଭାଷାଟୀକା କରିବା ଅସମ୍ଭବ ହୁଅନ୍ତା । ମୁଁ ଯେତେଦୂର ପାରିଛି 'ସୁବୋଧିନୀ' ଟୀକାରେ ସମସ୍ତ ସରଳଭାବେ ଓ ଉଦାହରଣ ସହିତ ବୁଝାଇ ଦେଇଛି । ଯଦି କୌଣସି ଠାରେ ଭ୍ରମ ପ୍ରମାଦ ପରିଲକ୍ଷିତ ହେବ, ତେବେ ସଜ୍ଜନମାନେ ମୋତେ ଅନୁଗ୍ରହ କରି ଜଣାଇ ଦେଲେ ମୁଁ କୃତଜ୍ଞ ରହିବି ।

ପରିଶେଷରେ ଯେଉଁ ଶାସ୍ତ୍ରର ଆବଶ୍ୟକତା ଦରିଦ୍ର କୁଟିରବାସୀ ଠାରୁ କୋଟିପତି ଯାଏ, ବନବାସୀଠାରୁ ନଗରବାସୀ ଯାଏ ବୋଧ କରନ୍ତି, ଯାହା ବହୁଦ୍ୱନ୍ଦ୍ୱ ତଥା କମପରିବର୍ତ୍ତନ ମଧ୍ୟ ଦେଇ ଗତିକରି ଦିନକୁ ଦିନ ବଳିଷ୍ଠ ହୋଇଅଛି, ସେହି ଜ୍ଞାନର ଆଧାର ଜ୍ୟୋତିଃଶାସ୍ତ୍ରର ପାଠକ ବୃନ୍ଦଙ୍କ କର-କମଳରେ ଏଗ୍ରନ୍ଥ ଉତ୍ସର୍ଗ କରି ଦେଇ ମୁଁ ସ୍ୱସ୍ତି ଅନୁଭବ କରୁଅଛି ।

ବୈଶାଖ ପୂର୍ଣ୍ଣିମା ଶ ୧୮୭୪
ତା ୯।୫।୧୯୫୨
ଖଲ୍ଲିକୋଟ

ନିବେଦକ
ଶ୍ରୀ ବାଇକୋଳି ଜ୍ୟୋତିଷ ବିଶାରଦ

# ସୂଚୀପତ୍ର

ସୂତିକା ଅଧ୍ୟାୟ (୫)



ରିଷ୍ଟଅଧ୍ୟାୟ (୬)



ଆୟୁର୍ଦାୟ ଅଧ୍ୟାୟ (୭)

ବିଷୟ ପୃଷ୍ଠା

## ନାଭସଯୋଗାଧ୍ୟାୟ (୧୨)



## ଚନ୍ଦ୍ର ଯୋଗ ଅଧ୍ୟାୟ (୧୩)



ବିଷୟ ପୃଷ୍ଠା



## ଦ୍ୱିଗ୍ରହ ଯୋଗାଧ୍ୟାୟ (୧୪)



## ପ୍ରବ୍ରଜ୍ୟାଧ୍ୟାୟ (୧୫)



## ଋକ୍ଷଶୀଳାଧ୍ୟାୟ (୧୬)



## ରାଶିଶୀଳାଧ୍ୟାୟ (୧୭)



## ଗ୍ରହରାଶିଶୀଳାଧ୍ୟାୟ (୧୮)

| ବିଷୟ | ପୃଷ୍ଠା |
|---|---|

## ଅନିଷ୍ଟାଧ୍ୟାୟ (୨୩)



| ବିଷୟ | ପୃଷ୍ଠା |
|---|---|

## ସ୍ତ୍ରୀ ଜାତକାଧ୍ୟାୟ (୨୪)



## ନୈର୍ଯାଣିକାଧ୍ୟାୟ (୨୫)

ନଷ୍ଟଜାତକାଧ୍ୟାୟ (୨୬)



ଦ୍ରେଷ୍କାଣାଧ୍ୟାୟ (୨୭)

ଓଁ ନମଃ ଶ୍ରୀ ସୂର୍ଯ୍ୟାୟ ପରଂବ୍ରହ୍ମଣେ

ଶ୍ରୀଗଣେଶାୟ ନମଃ

# ବୃହଜ୍ଜାତକମ୍

## ରାଶି ପ୍ରଭେଦାଧ୍ୟାୟଃ ପ୍ରଥମଃ

### ଗ୍ରନ୍ଥକର୍ତ୍ତାଙ୍କ ମଙ୍ଗଳାଚରଣ

ମୂର୍ତ୍ତିତ୍ୱେ ପରିକଳ୍ପିତଃ ଶଶଭୃତୋ ବର୍ତ୍ମା'ପୁନର୍ଜନ୍ମନା-
ମାତ୍ମେତ୍ୟାତ୍ମବିଦାଂ କ୍ରତୁଶ୍ଚ ଯଜତାଂ ଭର୍ତ୍ତାମରଜ୍ୟୋତିଷାମ୍ ।
ଲୋକାନାଂ ପ୍ରଳୟୋଦ୍ଭବସ୍ଥିତିବିଭୁଶ୍ଚାନେକଧା ଯଃ ଶ୍ରୁତୌ
ବାଚଂ ନଃ ସ ଦଦାତ୍ୱନେକ କିରଣସ୍ତ୍ରୈଲୋକ୍ୟଦୀପୋ ରବିଃ ।୧।

ଗ୍ରନ୍ଥକର୍ତ୍ତା ମହାମତି ବରାହମିହିରାଚାର୍ଯ୍ୟ ସ୍ୱକୃତ ବୃହଜ୍ଜାତକ ଗ୍ରନ୍ଥର ନିର୍ବିଘ୍ନ ସମାପ୍ତି ନିମନ୍ତେ ନିଜର ଇଷ୍ଟଦେବତା ଶ୍ରୀ ସୂର୍ଯ୍ୟନାରାୟଣଙ୍କୁ ପ୍ରାର୍ଥନା ନିମ୍ନୋକ୍ତ ରୂପେ କରିଅଛନ୍ତି ।

"ଯାହାଙ୍କ କିରଣାବଳୀ ଦ୍ୱାରା ଚନ୍ଦ୍ର ପ୍ରକାଶ ପାଉଛନ୍ତି, ଅପୁନର୍ଜନ୍ମା (ମୋକ୍ଷକାମୀ) ମାନଙ୍କର ଯେ ମାର୍ଗ ସ୍ୱରୂପ ଅଟନ୍ତି, ଯେ ଆତ୍ମଜ୍ଞାନୀମାନଙ୍କର ଆତ୍ମାସ୍ୱରୂପ ଓ ଯାଜ୍ଞିକମାନଙ୍କର ଯଜ୍ଞ; ଦେବତା ଓ ଗ୍ରହ ନକ୍ଷତ୍ରମାନଙ୍କର ପ୍ରଭୁ; ତ୍ରିଲୋକର ନାଶ, ଉତ୍ପତ୍ତି ତଥା ସ୍ଥିତିର କର୍ତ୍ତା ଅଟନ୍ତି; ବେଦରେ ଯାହାଙ୍କର ଶକ୍ତି ବିଶେଷ ଭାବେ ବର୍ଣ୍ଣିତ ହୋଇଅଛି, ସେହି ବହୁକିରଣଶାଳୀ, ତ୍ରିଲୋକର ଦୀପ ସୂର୍ଯ୍ୟଦେବ ମୋତେ ବଚନ ରଚନା ଶକ୍ତି ପ୍ରଦାନ କରନ୍ତୁ ।୧।

ବିଃ ଦ୍ରଃ—ଚନ୍ଦ୍ରର ନିଜର ଆଲୋକ ନାହିଁ । ସେ ସୂର୍ଯ୍ୟଠାରୁ କିରଣ ପାଇଲେହିଁ ପ୍ରକାଶ ପାଏ । ଚନ୍ଦ୍ରମଣ୍ଡଳର ଯେତିକି ଅଂଶ ସୂର୍ଯ୍ୟକିରଣ ପାଏ ସେତିକି ଅଂଶହିଁ ଆଲୋକିତ ହୁଏ । ପୂର୍ଣ୍ଣିମାଦିନ ଚନ୍ଦ୍ରମଣ୍ଡଳର ଦୃଶ୍ୟଭାଗ ସମ୍ପୂର୍ଣ୍ଣ ସୂର୍ଯ୍ୟାଲୋକ ପାଏ ଓ ଅମାବାସ୍ୟା ଦିନ ସେହି ଭାଗଟି ମୋଟେ ଆଲୋକ ପାଏ ନାହିଁ, ତେଣୁ ସୂର୍ଯ୍ୟର କିରଣହିଁ ଚନ୍ଦ୍ରକୁ ପ୍ରକାଶିତ କରାଇ ଥାଏ । ଅତେବ ଚନ୍ଦ୍ରର ଗୋଟିଏ ପାଖ ମାତ୍ର ଦେଖୁ । ସେହି ପାର୍ଶ୍ୱର ଯେତିକି ଅଂଶ ଆଲୋକ ପାଏ ତାକୁ ଧରି ପ୍ରତିପଦାଦି ତିଥି କଳ୍ପନା କରାଯାଏ ।

## ଟୀକାକାରଙ୍କ ମଙ୍ଗଳାଚରଣ

ନତ୍ୱାମ୍ବିକାଂ ମହାମାୟାଂ ମହେଶ୍ୱର ବିମୋହିନୀଂ ।
ସର୍ବଜ୍ଞାଂ ସର୍ବଜଗଦାନନ୍ଦ ସୌଭାଗ୍ୟ ବର୍ଦ୍ଧିନୀଂ ॥,
ବୃହଜ୍ଜାତକ ଗ୍ରନ୍ଥସ୍ୟ ସୁଖବୋଧଂ ଯଥା ଭବେତ୍ ।
ତଥୈବ ନୀୟତେ ଗୃଢ଼ଟୀକା ସର୍ବସୁବୋଧିନୀ ॥
ରାମଶୈଲ ବସୁକ୍ଷୌଣୀ ମିତେ ଶ୍ରୀ ଶକବତ୍ସରେ
ଖଲ୍ଲିକୋଟ ବାଲୁକେଶପୁର ଶାସନ ବାସିନା ॥
କାଶ୍ୟପାନ୍ୱୟସମ୍ଭୂତ ବିଶ୍ୱନାଥସ୍ୟ ସୂନୁନା ।
ଜ୍ୟୋତିର୍ବିଦ୍ବରଦୋପାଧି ଭୂଷିତେନନୃପାଧିପାତ୍
ବାଇକୋଲି ମହାପାତ୍ରଶର୍ମଣାରଚିତାଽଧୁନା ॥

---

## ଗ୍ରନ୍ଥର ପ୍ରୟୋଜନ

ଭୂୟୋଭିଃପଟୁ ବୁଦ୍ଧିଭିଃ ପଟୁଧିୟାଂ ହୋରାଫଲଜ୍ଞପ୍ତୟେ
ଶବ୍ଦନ୍ୟାୟସମନ୍ୱିତେଷୁ ବହୁଶଃଶାସ୍ତ୍ରେଷ୍ୱଦୃଷ୍ଟେଷ୍ୱପି ।
ହୋରାତନ୍ତ୍ରମହାର୍ଣ୍ଣବପ୍ରତରଣେ ଭଗ୍ନୋଦ୍ୟମାନାମହଂ
ସ୍ୱଳ୍ପଂବୃତ୍ତବିଚିତ୍ରମର୍ଥବହୁଳଂ ଶାସ୍ତ୍ରପ୍ଳବଂ ପ୍ରାରଭେ ।୨।

ପ୍ରଚୁର ପ୍ରଜ୍ଞାଯୁକ୍ତ ବ୍ୟାକରଣ ଓ ନ୍ୟାୟଶାସ୍ତ୍ର ତଥା ଅନ୍ୟାନ୍ୟ ବହୁଶାସ୍ତ୍ର ପାରଙ୍ଗମ ବ୍ୟକ୍ତିମାନେ ମଧ୍ୟ ହୋରାତନ୍ତ୍ର ମହାର୍ଣ୍ଣବ (ଜ୍ୟୋତିଷ ଶାସ୍ତ୍ରରୂପ ଅଗାଧ ସମୁଦ୍ର) ପାରହେବା ନିମନ୍ତେ ଭଗ୍ନୋଦ୍ୟମ ହୋଇ ଯାଉଛନ୍ତି, ସେହିମାନଙ୍କ ନିମନ୍ତେ ନୌକାସ୍ୱରୂପ ଏହି ବୃହଜାତକ ଗ୍ରନ୍ଥ ଆରମ୍ଭ କରୁଅଛି । ଏହି ଗ୍ରନ୍ଥରେ ଅଦ୍ଭୁତ ବିଷୟକୁ ସଂକ୍ଷିପ୍ତ ଭାବରେ ବିଭିନ୍ନ ବୃତ୍ତରେ ନିବନ୍ଧ କରାଯାଇଅଛି । ତେଣୁ ହୋରା ବା ଜାତକ ଫଳ ବିସ୍ତୃତ ଶାସ୍ତ୍ରର ବହୁଳତା ଦୃଷ୍ଟିରୁ ବିଶେଷ ପରିଶ୍ରମ ଭୟରେ ଯେଉଁମାନେ ହତୋତ୍ସାହ ହୋଇ ପଡ଼ୁଥିଲେ ଅର୍ଥାତ୍ ପଢ଼ିପାରୁନଥିଲେ ସେମାନଙ୍କର ସେ ଆଶଙ୍କା ଆଉ ରହିବ ନାହିଁ ।୨।

ଦ୍ର: – ଜ୍ୟୋତିଷଶାସ୍ତ୍ର ମୁଖ୍ୟତଃ ତ୍ରିତନ୍ତ୍ର ବା ତ୍ରିସ୍କନ୍ଧ ବିଶିଷ୍ଟ, ପ୍ରଥମ ସିଦ୍ଧାନ୍ତ ଏଥିରେ ଗ୍ରହନକ୍ଷତ୍ରାଦିଙ୍କ ଗତି, ସ୍ଥିତି, ଉଦୟ ତଥା ଅସ୍ତାଦିର ଗଣନାଥାଏ । ଦ୍ୱିତୀୟ ସଂହିତା, ଏଥିରେ ଗ୍ରହମାନଙ୍କ ଗତି ସ୍ଥିତିରୁ ପୃଥିବୀରେ ଯେ ଫଳ ଅର୍ଥାତ୍ ଭୂକମ୍ପ, ଧୂମକେତୁ, ମହାମାରୀ, ଶସ୍ୟ, ବୃଷ୍ଟି, ତଥା ବିଭିନ୍ନ ଉତ୍ପାତର

ବିସ୍ତୃତ କରାଯାଏ । ତୃତୀୟ ହୋରାତନ୍ତ୍ର ବା ହୋରାସ୍କନ୍ଧରେ ଜନ୍ମକାଳୀନ ଗ୍ରହସ୍ଥିତି, ଗୋଚର ଇତ୍ୟାଦି ଗଣନାରେ ମନୁଷ୍ୟ ଜୀବନର ଶୁଭାଶୁଭ ଫଳ ବର୍ଣ୍ଣିତ ହୋଇଥାଏ ।

ଏହି ବୃହଜ୍ଜାତକ ଗ୍ରନ୍ଥରେ ଜନ୍ମକାଳୀନ ଗ୍ରହର ବଳାବଳାଦିକୁ ନେଇ ଫଳ ବିସ୍ତୃତ କରାଯାଇ ଅଛି ।

## ହୋରା ଶବ୍ଦର ଅର୍ଥ

ହୋରେତ୍ୟହୋରାତ୍ରବିକଳ୍ପମେକେ ବାଞ୍ଛନ୍ତି ପୂର୍ବାପରବର୍ଣ୍ଣଲୋପାତ୍ ।
କର୍ମାର୍ଜିତଂ ପୂର୍ବଭବେ ସଦାଦି ଯତ୍ତସ୍ୟ ପଙ୍କ୍ତିଂ ସ୍ମଭିବ୍ୟନକ୍ତି ।୩।

କେତେକ ଅଗ୍ରଷି ଅହୋରାତ୍ରକୁ ବିକଳ୍ପରେ ହୋରା କହନ୍ତି । ଅହୋରାତ୍ର ଶବ୍ଦର ପୂର୍ବବର୍ଣ୍ଣ "ଅ" ଓ ଶେଷବର୍ଣ୍ଣ 'ତ୍ର'କୁ ଲୋପକଲେ "ହୋରା" ଶବ୍ଦ ରହିଲା । ଦିନ ଓ ରାତ୍ରି ଉଭୟରେ ପ୍ରକାଶକ ହେତୁ ଲଗ୍ନକୁ ମଧ୍ୟ ହୋରା କହନ୍ତି । ଏହି ହୋରା (ଲଗ୍ନ) ପୂର୍ବ ଜନ୍ମରେ ଅର୍ଜିତ ଶୁଭ ତଥା ଅଶୁଭ ଫଳକୁ ପ୍ରକାଶ କରେ ।୩।

## କାଳରୂପ ପୁରୁଷର ଅଙ୍ଗବିଭାଗ

କାଲାଙ୍ଗାନି ବରାଙ୍ଗମାନନମୁରୋହୃତ୍କ୍ରୋଡବାସୋଭୃତୋ
ବସ୍ତିର୍ବ୍ୟଞ୍ଜନମୂରୁଜାନୁଯୁଗଲେ ଜଂଘେ ତତୋଂଘ୍ରିଦ୍ୱୟମ୍ ।
ମେଷାଶ୍ୱି ପ୍ରଥମାନବର୍କ୍ଷଚରଣାଶ୍ଚକ୍ରସ୍ଥିତା ରାଶୟୋ
ରାଶିକ୍ଷେତ୍ରଗୃହର୍କ୍ଷଭାନି ଭବନଂ ଚୈକାର୍ଥସଂପ୍ରତ୍ୟୟାଃ ।୪।

ମେଷରାଶି କାଳପୁରୁଷର ମସ୍ତକ ରୂପେ କଳ୍ପିତ । ସେହିପରି ବୃଷ ମୁଖ, ମିଥୁନ ବକ୍ଷ, କର୍କଟ ହୃଦୟ, ସିଂହ ଉଦର, କନ୍ୟା କଟି, ତୁଳା ନାଭିର ନିମ୍ନଦେଶ, ବିଛା ଲିଙ୍ଗପ୍ରଦେଶ, ଧନୁ ଉରୁଦ୍ୱୟ, ମକର ଜାନୁଦ୍ୱୟ, କୁମ୍ଭ ଜଂଘଦ୍ୱୟ ଓ ମୀନରାଶି ପାଦଦ୍ୱୟରୂପେ କଳ୍ପିତ । ରାଶିଚକ୍ର କାଳର ପ୍ରକାଶକ, ତେଣୁ ଏହା ବିରାଟ୍‌ପୁରୁଷ ରୂପେ କଳ୍ପିତ । ଜନ୍ମକାଳରେ ଯେଉଁ ଯେଉଁ ରାଶିରେ ଶୁଭଗ୍ରହ ଥିବେ ସେ ରାଶିର ଅଧିକାର ଭୁକ୍ତ ଅଙ୍ଗ ପୁଷ୍ଟ ତଥା ସୁନ୍ଦର ଦେଖାଯିବ । ପାପଗ୍ରହ ଥିଲେ ବିପରୀତ ଘଟିବ । ମେଷାଦି ରାଶି ଅଶ୍ୱିନୀଠାରୁ ନବପାଦ ହିସାବରେ ଗଠିତ, ପ୍ରତ୍ୟେକ ନକ୍ଷତ୍ର ଚାରିପାଦ । ରାଶି, କ୍ଷେତ୍ର, ଗୃହ, ଋକ୍ଷ, ଭବନ ଏ ସମସ୍ତ ରାଶିପର୍ଯ୍ୟାୟ ଅଟେ ।୪।

## ରାଶିସ୍ୱରୂପ:—

ମତ୍ସ୍ୟୌ ଘଟୀ ନୃମିଥୁନଂସଗଦଂସବୀଣଂ-
ଚାପୀନରୋଶ୍ୱଜଘନୋମକରୋମୃଗାସ୍ୟଃ ।
ତୌଲୀସସସ୍ୟଦହନାପ୍ଲବଗାଚକନ୍ୟା-
ଶେଷାଃ ସ୍ୱନାମସଦୃଶାଃ ଖଚରାଷ୍ଟ ସର୍ବେ ।୫।

ପରସ୍ପର ଦୁଇଟି ମତ୍ସ୍ୟ ବିପରୀତ ମୁଖରେ ସଂଲଗ୍ନ ହେବାଭଳି (ଗୋଟିକର ଲାଞ୍ଜ ପାଖରେ ଅପରର ମୁଣ୍ଡ) ମତ୍ସ୍ୟ ରାଶିର ଆକାର ଦେଖାଯାଏ । ଜଣେ ପୁରୁଷ କାନ୍ଧରେ ଗୋଟିଏ ମାଠିଆ ଥିବା ଭଳି କୁମ୍ଭରାଶିର ଆକାର ଅଟେ । ମିଥୁନରାଶି ସ୍ତ୍ରୀ ଓ ପୁରୁଷର ସମ୍ମୁଖୀନ ଆକାର ତୁଲ୍ୟ, ସେଥିରେ ପୁରୁଷର ହାତରେ ଗଦା ଓ ସ୍ତ୍ରୀର ହାତରେ ବୀଣା ଥାଏ । ଧନୁରାଶି କଟିଠାରୁ ଊର୍ଦ୍ଧ୍ୱଦେଶ ପୁରୁଷାକୃତି ଧନୁର୍ଧାରୀ, ନିମ୍ନଭାଗ ଘୋଡ଼ାର ଜଂଘାତୁଲ୍ୟ ଆକାରଯୁକ୍ତ, ମକର ରାଶି ହରିଣ ମୁଖ ସଦୃଶ୍ୟ, ତୁଳାରାଶି ହାତରେ ତରାଜୁ (ନିକିତି) ଧରିଥିବା ପୁରୁଷ ତୁଲ୍ୟ, କନ୍ୟାରାଶି ଗୋଟିଏ ହାତରେ ନିଆଁ ଓ ଅନ୍ୟହାତରେ ଶସ୍ୟ-କେଣ୍ଡା ଧରି ନାବ ଉପରେ ବସିଥିବା କନ୍ୟାତୁଲ୍ୟ ଦେଖାଯାଏ ।

ମେଷରାଶି ମେଣ୍ଢାପରି, ବୃଷ ବୃଷଭ ତୁଲ୍ୟ, କର୍କଟ କଙ୍କଡ଼ା ପରି, ସିଂହରାଶି ସିଂହପରି, ବୃଶ୍ଚିକରାଶି ବିଛାପରି ଦେଖାଯାଏ ।

ଆକାଶରେ ଦେଖିଲେ ଏହି ଏହି ରାଶିମଣ୍ଡଳ ପ୍ରାୟ ଏହି ଭଳି କଳ୍ପିତ ଆକାରରେ ଦେଖା ଯାଆନ୍ତି ।୫।

## ମେଷାଦି ରାଶିର ତଥା ନବାଂଶାଧିପ ବିଚାର

କ୍ଷିତିଜସିତଜ୍ଞଚନ୍ଦ୍ରରବିସୌମ୍ୟସିତାବନିଜାଃ
ସୁରଗୁରୁମନ୍ଦସୌରିଗୁରବଶ୍ଚଗୃହାଂଶକପାଃ ।
ଅଜମୃଗତୌଲିଚନ୍ଦ୍ରଭବନାଦିନବାଂଶବିଧି-
ର୍ଭବନସମାଂଶକାଧିପତୟଃ ସ୍ୱଗୃହାଦ୍ଭିକମଶଃ ।୬।

ମଙ୍ଗଳ, ଶୁକ୍ର, ବୁଧ, ଚନ୍ଦ୍ର, ରବି, ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି ଶନି, ଶନି, ବୃହସ୍ପତି ଏମାନେ ମେଷାଦି କ୍ରମରେ ଦ୍ୱାଦଶରାଶିର ଅଧିପତି ଅଟନ୍ତି ।

ମେଷ, ମକର, ତୁଳା, କର୍କଟ ଏମାନଙ୍କଠାରୁ ପ୍ରଥମନବାଂଶ ଗଣନା ହୁଏ । ରାଶିଟି ୩୦ ଅଂଶ, ନବାଂଶ ୩ ଅଂଶ ୨୦ କଳା । ମେଷ, ସିଂହ, ଧନୁର ପ୍ରଥମ ନବାଂଶ ମେଷଠାରୁ, ବୃଷ, କନ୍ୟା, ମକରର ପ୍ରଥମ ନବାଂଶ ମକର ଠାରୁ,

ତୁଲା, ମିଥୁନ କୁମ୍ଭର ପ୍ରଥମ ନବାଂଶ ତୁଲାଠାରୁ, କର୍କଟ, ବୃଶ୍ଚିକ, ମୀନର କର୍କଟଠାରୁ ପ୍ରଥମ ନବାଂଶ ଗଣନା କରିବେ, ଦ୍ୱାଦଶାଂଶ କହିଲେ ୨ ଅଂଶ ୩୦ କଳା । ଏହା ରାଶିର ଆରମ୍ଭରୁ ଗଣନା କରାଯିବ ।୬।

## ତ୍ରିଂଶାଂଶାଧିପନିରୂପଣ

କୁଜରବିଜଗୁରୁଜ୍ଞଶୁକ୍ରଭାଗାଃ ପବନସମୀରଣକୌର୍ପିଜୂକଲେୟାଃ
ଅୟୁଜ ଯୁଜତୁ ଭେବପର୍ଯ୍ୟୟସ୍ଥାଃ ଶଶିଭବନାଳିଝଷାନ୍ତ୍ୟମୃକ୍ଷସନ୍ଧିଃ ।୭।

ବିଷମରାଶିରେ ପ୍ରଥମ ପାଞ୍ଚଅଂଶ ମଙ୍ଗଳ, ପର ପାଞ୍ଚଅଂଶ ଶନି, ତାପରେ ଆଠ ଅଂଶ ଗୁରୁ, ତାପର ସାତ ଅଂଶ ବୁଧ ଓ ଶେଷ ପାଞ୍ଚଅଂଶ ଶୁକ୍ର ତ୍ରିଂଶାଂଶାଧିପତି ଅଟନ୍ତି ।

ସମରାଶିର ପ୍ରଥମ ପାଞ୍ଚଅଂଶର ଅଧିପତି ଶୁକ୍ର, ତାପର ୭ ଅଂଶ ବୁଧ, ତାପର ଆଠ ଅଂଶ ବୃହସ୍ପତି, ତାପର ୫ ଅଂଶ ଶନି ଓ ଶେଷ ପାଞ୍ଚଅଂଶର ଅଧିପତି ମଙ୍ଗଳ ଅଟନ୍ତି । କର୍କଟର ଶେଷାଂଶ, ବୃଶ୍ଚିକର ଶେଷାଂଶ ଓ ମୀନର ଶେଷାଂଶ ଋକ୍ଷସନ୍ଧି ଅଟେ ।୭।

## ମେଷାଦିରାଶିରନାମ:—

କ୍ରିୟତାବୁରିଜିତୁମକୁଳୀରଲେୟପାଥୋନଜୂକକୌର୍ପାଖ୍ୟାଃ
ତୌକ୍ଷିକ ଆକୋକେରୋ ହୃଦ୍ରୋଗଶ୍ଚାନ୍ତ୍ୟଭଂ ଚେତ୍ଥମ୍ ।୮।

କ୍ରିୟ, ତାବୁର, ଜିତୁମ, କୁଳୀର, ଲେୟ, ପାଥୋନ, ଜୂକ, କୌର୍ପ୍ୟ, ତୌକ୍ଷିକ, ଆକୋକେର, ହୃଦ୍ରୋଗ, ଅନ୍ତ୍ୟଭ ଏସମସ୍ତ ମେଷାଦି ରାଶିର ନାମ ଅଟେ ।୮।

## ଷଡ଼୍‌ବର୍ଗ ନିରୂପଣ

ଦ୍ରେଷ୍କାଣହୋରାନବଭାଗସଂଜ୍ଞାସ୍ତ୍ରିଂଶାଂଶକଦ୍ୱାଦଶସଂଜ୍ଞିତାଶ୍ଚ ।
କ୍ଷେତ୍ରଂଚ ଯଦ୍‌ଯସ୍ୟ ସତସ୍ୟ ବର୍ଗୋହୋରେତିଲଗ୍ନଂଭନସ୍ୟାର୍ଦ୍ଧମ୍ ।୯।

ଦ୍ରେଷ୍କାଣ, ହୋରା, ନବାଂଶ, ତ୍ରିଂଶାଂଶ, ଦ୍ୱାଦଶାଂଶ ଓ ଗୃହ ବା କ୍ଷେତ୍ର ଏ ଛଅଟି ଗ୍ରହମାନଙ୍କର ଷଡ଼୍‌ବର୍ଗ ଅଟେ । ନିଜର ଗୃହ ତଥା ବର୍ଗରେ ରହିଲେ ଗ୍ରହ ସ୍ୱବର୍ଗସ୍ଥ ହୁଏ ଓ ଶୁଭ କରାଏ । ହୋରା ଲଗ୍ନର ଅର୍ଦ୍ଧଭାଗକୁ କହନ୍ତି ।୯।

## ରାଶିମାନଙ୍କର ଶୀର୍ଷୋଦୟାଦ ବର୍ଣ୍ଣନ

ଗୋଜାଶ୍ୱିକର୍କିମିଥୁନାଃ ସମୃଗାନଶାଖ୍ୟାଃ
ପୃଷ୍ଠୋଦୟା ବିମିଥୁନାଃ କଥିତାସ୍ତ ଏବ ।
ଶୀର୍ଷୋଦୟାଦିନବଲାଶ୍ଚ ଭବନ୍ତି ଶେଷା
ଲଗ୍ନଂସମେତ୍ୟୁଭୟତଃ ପୃଥୁରୋମଯୁଗ୍ମମ୍ । ୧୦।

ବୃଷ, ମେଷ, ଧନୁ, କର୍କଟ, ମିଥୁନ ଓ ମକର ରାଶିମାନେ ନିଶାବଳୀ ହୁଅନ୍ତି । ବୃଷ, ମେଷ, ଧନୁ, କର୍କଟ ଓ ମକର ରାଶି ପୃଷ୍ଠୋଦୟ ଅଟନ୍ତି । ସିଂହ, କନ୍ୟା, ତୁଳା, ବିଛା ଓ କୁମ୍ଭ ଏମାନେ ଦିବାବଳୀ ଓ ଶୀର୍ଷୋଦୟ ରାଶି ଅଟନ୍ତି । ମିଥୁନ ରାଶି ରାତ୍ରିବଳୀ ଓ ଶୀର୍ଷୋଦୟ, ମୀନରାଶି ଦିନ ତଥା ରାତ୍ରି ଉଭୟରେ ସମାନବଳ ପୁଣି ଉଭୟୋଦୟ ଅଟେ ।୧୦।

## ରାଶିମାନଙ୍କର କ୍ରୂରସୌମ୍ୟାଦ ସଂଜ୍ଞା ନିର୍ଣ୍ଣୟ

କ୍ରୂରଃସୌମ୍ୟଃ ପୁରୁଷବନିତେତେଚରାଗଦ୍ୱିଦେହାଃ
ପ୍ରାଗାଦୀଶାଃ କ୍ରିୟବୃଷନୃଯୁକ୍କର୍କଟାଃ ସତ୍ରିକୋଣାଃ ।
ମାର୍ତ୍ତଣ୍ଡେନ୍ଦ୍ୱୋରଯୁଜିସମଭେଚନ୍ଦ୍ରଭାନ୍ୱୋଶ୍ଚହୋରେ
ଦ୍ରେଷ୍କାଣାଃସ୍ୟୁଃ ସ୍ୱଭବନସୁତତ୍ରିତ୍ରିକୋଣାଧିପାନାମ୍ । ୧୧ ।

ମେଷ, ମିଥୁନ, ସିଂହ, ତୁଳା, ଧନୁ, କୁମ୍ଭ ଏମାନେ କ୍ରୂର ତଥା ପୁରୁଷ ରାଶି ଅଟନ୍ତି । ବୃଷ, କର୍କଟ, କନ୍ୟା, ବିଛା, ମକର ଓ ମୀନ ଏମାନେ ସୌମ୍ୟ ତଥା ସ୍ତ୍ରୀ ରାଶି ଅଟନ୍ତି । ମେଷ, କର୍କଟ, ତୁଳା ଓ ମକର ଚରରାଶି, ବୃଷ, ସିଂହ, ବିଛା ଓ କୁମ୍ଭ ସ୍ଥିରରାଶି, ମିଥୁନ, କନ୍ୟା, ଧନୁ ଓ ମୀନ ଦ୍ୱାତ୍ମିକ ରାଶି ଅଟନ୍ତି ।

ମେଷ ଏବଂ ତାହାର ତ୍ରିକୋଣ ( ୫ ଓ ୯ ) ରାଶି ସିଂହ ଓ ଧନୁ ପୂର୍ବ-ଦିଗର ଅଧିପତି ଅଟନ୍ତି । ସେହିପରି ବୃଷ, କନ୍ୟା ଓ ମକର ଦକ୍ଷିଣ ଦିଗର; ମିଥୁନ ତୁଳା ଓ କୁମ୍ଭ ପଶ୍ଚିମ ଦିଗର; କର୍କଟ, ବୃଶ୍ଚିକ ଏବଂ ମୀନ ଉତ୍ତର ଦିଗର ଅଧିପତି ଅଟନ୍ତି ।

ବିଷମ ରାଶିର ପ୍ରଥମ ୧୫ ଅଂଶର ଅଧିପତି ସୂର୍ଯ୍ୟ ଓ ଶେଷ ୧୫ ଅଂଶର ଅଧିପତି ଚନ୍ଦ୍ର ହୋଇ ଯଥାକ୍ରମେ ହୋରାଧିପ ବୋଲନ୍ତି । ସେହିପରି ସମରାଶିର ପ୍ରଥମ ୧୫ ଅଂଶର ଅଧିପତି ଚନ୍ଦ୍ର ଓ ଶେଷ ୧୫ ଅଂଶର ଅଧିପତି ସୂର୍ଯ୍ୟ ଅଟନ୍ତି ।

ରାଶିର ତନିଭାଗରୁ ଭାଗେ ଦ୍ରେଷ୍କାଣ ୧୦ ଅଂଶ ଅଟେ । ପ୍ରତ୍ୟେକ ରାଶିରେ ତନୋଟି ଦ୍ରେଷ୍କାଣ ହୁଏ । ପ୍ରଥମ ଦ୍ରେଷ୍କାଣରେ ଅଧିପତି ସେହି ରାଶିର ଅଧିପତି ଅଟନ୍ତି । ଦ୍ୱିତୀୟ ଦ୍ରେଷ୍କାଣର ଅଧିପତି ସେହିରାଶିର ପଞ୍ଚମ ସ୍ଥାନାଧିପ ଓ ତୃତୀୟ ଦ୍ରେଷ୍କାଣର ନବମସ୍ଥାନାଧିପ ଅଧିପତି ହୋଇଥାନ୍ତି ।୧୧।

## ହୋରାସମ୍ବନ୍ଧେ ମତାନ୍ତର ବର୍ଣ୍ଣନ

କେଚିତ୍ତୁ ହୋରାଂପ୍ରଥମାଂଭପସ୍ୟ ବାଞ୍ଛନ୍ତିଲାଭାଧିପତେ ର୍ଦ୍ୱିତୀୟମ୍ ।
ଦ୍ରେଷ୍କାଣସଂଜ୍ଞାମପି ବର୍ଣ୍ଣୟନ୍ତି ସ୍ୱଦ୍ୱାଦଶୈକାଦଶରାଶିପାନାମ୍ । ୧୨ ।

କୌଣସି କୌଣସି ଗ୍ରନ୍ଥକର୍ତ୍ତା ହୋରା ସମ୍ବନ୍ଧେ ଭିନ୍ନ ମତ ଦିଅନ୍ତି । ସେମାନେ କହନ୍ତି ପ୍ରଥମ ହୋରାର ଅଧିପତି ସେହି ରାଶିର ଅଧିପତି ହେବ । ଦ୍ୱିତୀୟ ହୋରାର ଅଧିପତି ଏକାଦଶ ରାଶିର ଅଧିପତି ହେବେ ।

ଉଦାହରଣ ସ୍ୱରୂପ ମେଷର ପ୍ରଥମ ୧୫ ଅଂଶର (ପ୍ରଥମ ହୋରା) ଅଧିପତି ମଙ୍ଗଳ ଓ ଶେଷ ୧୫ ଅଂଶ (ଦ୍ୱିତୀୟ ହୋରା)ର ଅଧିପତି ଶନି ହେବେ ।

ଦ୍ରେଷ୍କାଣ ସମ୍ବନ୍ଧେ ମତାନ୍ତର ଏହି ଯେ ପ୍ରଥମ ଦ୍ରେଷ୍କାଣର ଅଧିପତି ସେହି ରାଶିପତି । ଦ୍ୱିତୀୟ ଦ୍ରେଷ୍କାଣର ଅଧିପତି ସେହି ରାଶିର ଦ୍ୱାଦଶ ସ୍ଥାନାଧିପତି ଓ ତୃତୀୟ ଦ୍ରେଷ୍କାଣର ଅଧିପତି ସେହି ରାଶିର ଏକାଦଶ ସ୍ଥାନାଧିପତି ଅଟନ୍ତି ।

ଏପରି ସ୍ଥଳେ ମେଷର ପ୍ରଥମ ଦ୍ରେଷ୍କାଣାଧିପ ମଙ୍ଗଳ, ଦ୍ୱିତୀୟ ଦ୍ରେଷ୍କାଣାଧିପ ଗୁରୁ ଓ ତୃତୀୟ ଦ୍ରେଷ୍କାଣାଧିପ ଶନି ହେବ ।୧୨।

ଦ୍ର:—ଏହି ମତାନ୍ତରକୁ କେହି ଗ୍ରହଣ କର ନାହାନ୍ତି । ପ୍ରଥମ ରୀତି ସର୍ବତ୍ର ପ୍ରଚଳିତ ।

## ଗ୍ରହମାନଙ୍କର ଉଚ୍ଚ ନୀଚ୍ଚାଦି ବର୍ଣ୍ଣନ

ଅଜବୃଷଭମୃଗାଙ୍ଗନାକୁଳୀରା ଝଷବଣିଜୌଚ ଦିବାକରାଦିତୁଙ୍ଗାଃ
ଦଶଶିଖିମନୁଯୁକ୍ତିଥୀନ୍ଦ୍ରିୟାଂଶୈସ୍ତ୍ରିନବକବିଂଶତିଭିଶ୍ଚତେସ୍ତନୀଚାଃ ।୧୩।

ରବି ମେଷରେ ଦଶାଂଶ ଯାଏ ଉଚ୍ଚ; ତୁଳାର ଦଶାଂଶ ଯାଏ ନୀଚ ।
ଚନ୍ଦ୍ର ବୃଷର ୩ ଅଂଶ ଯାଏ ଉଚ୍ଚ; ବୃଶ୍ଚିକର ୩ ଅଂଶ ଯାଏ ନୀଚ ।
ମଙ୍ଗଳ ମକରର ୨୮ ଅଂଶ ଯାଏ ଉଚ୍ଚ; କର୍କଟର ୨୮ ଅଂଶ ଯାଏ ନୀଚ ।
ବୁଧ କନ୍ୟାର ୧୫ ଅଂଶ ଯାଏ ଉଚ୍ଚ; ମୀନର ୧୫ ଅଂଶ ଯାଏ ନୀଚ ।

ବୃହସ୍ପତି କର୍କଟରେ ୫ ଅଂଶ ଯାଏ ଉଚ୍ଚ; ମକରରେ ୫ ଅଂଶ ଯାଏ ନୀଚ ।
ଶୁକ୍ର ମୀନରେ ୨୭ ଅଂଶ ଯାଏ ଉଚ୍ଚ; କନ୍ୟାରେ ୨୭ ଅଂଶ ଯାଏ ନୀଚ ।
ଶନି ତୁଳାରେ ୨୦ ଅଂଶ ଯାଏ ଉଚ୍ଚ; ମେଷରେ ୨୦ ଅଂଶ ଯାଏ ନୀଚ ।୧୩।

## ବର୍ଗୋତ୍ତମ ତଥା ମୂଳତ୍ରିକୋଣ ନିରୂପଣ

ବର୍ଗୋତ୍ତମାଶ୍ଚରଗୃହାଦିଷୁ ପୂର୍ବମଧ୍ୟପର୍ଯ୍ୟନ୍ତଗାଃ ଶୁଭଫଲାନବଭାଗସଂଜ୍ଞାଃ ।
ସିଂହୋ ବୃଷଃ ପ୍ରଥମଷଷ୍ଠହୟାଙ୍ଗତୌଳିକୁମ୍ଭାସ୍ତ୍ରିକୋଣଭବନାନି ଭବନ୍ତି ସୂର୍ଯ୍ୟାତ୍ ॥

ମେଷ, କର୍କଟ, ତୁଳା, ମକର ଏହି ରାଶିମାନଙ୍କର ପ୍ରଥମ ନବାଂଶ ବର୍ଗୋତ୍ତମ ସଂଜ୍ଞକ ହୁଏ ।

ବୃଷ, ସିଂହ, ବୃଶ୍ଚିକ ଏବଂ କୁମ୍ଭ ରାଶିମାନଙ୍କର ପଞ୍ଚମ ନବାଂଶ ଏବଂ ମିଥୁନ, କନ୍ୟା, ଧନୁ ତଥା ମୀନ ରାଶିମାନଙ୍କର ନବମ ବା ଶେଷ ନବାଂଶ ବର୍ଗୋତ୍ତମ ଅଟେ ।

ରବିର ସିଂହ, ଚନ୍ଦ୍ରର ବୃଷ, ମଙ୍ଗଳର ମେଷ, ବୁଧର କନ୍ୟା, ବୃହସ୍ପତିର ଧନୁ, ଶୁକ୍ରର ତୁଳା ଓ ଶନିର କୁମ୍ଭ ମୂଳ ତ୍ରିକୋଣ ଅଟେ ।୧୪।

## ଲଗ୍ନାଦି ଦ୍ୱାଦଶଭାବର ସଂଜ୍ଞା

ହୋରାଦୟସ୍ତନୁକୁଟୁମ୍ବସହୋତ୍ଥବନ୍ଧୁପୁତ୍ରାରିପତ୍ନିମରଣାନି ଶୁଭାସ୍ପଦାୟାଃ ।
ରିଃଫାଖ୍ୟମିତ୍ୟୁପଚୟାନ୍ୟରିକର୍ମଲାଭଦୁଶ୍ଚିକ୍ୟସଂଜ୍ଞିତଗୃହାଣି ନ ନିତ୍ୟମେକେ ।୧୫।

ଲଗ୍ନାଦି ଦ୍ୱାଦଶ ଭାବକୁ ଯଥାକ୍ରମେ ତନୁ, କୁଟୁମ୍ବ, ସହୋତ୍ଥ, ବନ୍ଧୁ, ପୁତ୍ର, ଅରି, ପତ୍ନୀ, ମରଣ, ଶୁଭ, ଆସ୍ପଦ, ଆୟ ଏବଂ ବ୍ୟୟ ନାମରେ ଜାଣିବେ । ତୃତୀୟ, ଷଷ୍ଠ ଓ ଏକାଦଶ ସ୍ଥାନକୁ ଉପଚୟ କହନ୍ତି । ଏହି ସମ୍ବନ୍ଧରେ କେହି କେହି ଆଚାର୍ଯ୍ୟ କହନ୍ତି ଯେ ଏହି ଉପଚୟ ସଂଜ୍ଞକ ଭାବ ଗୁଡିକୁ ପାପଗ୍ରହ ତଥା ଭାବାଧିପତିର ଶତ୍ରୁଗ୍ରହ ନ ଦେଖିଲେ ଉପଚୟ ବୋଲାଯିବ । କିନ୍ତୁ ଏହି ମତ ବହୁମତରେ ସମର୍ଥିତ ନୁହେ ।୧୫।

କଲ୍ୟସ୍ୱବିକ୍ରମଗୃହପ୍ରତିଭାକ୍ଷତାନି ଚିତ୍ତୋତ୍ଥରନ୍ଧ୍ରଗୁରୁମାନଭବବ୍ୟୟାନି ।
ଲଗ୍ନାଚ୍ଚତୁର୍ଥନିଧନେ ଚତୁରସ୍ରସଂଜ୍ଞେ ଦ୍ୟୂନଞ୍ଚ ସପ୍ତମଗୃହଂ ଦଶମର୍କ୍ଷମାଜ୍ଞା ।୧୬।

ଦ୍ୱାଦଶ ଭାବର ଅନ୍ୟ ସଂଜ୍ଞା ଗୁଡ଼ିକ ଏଠାରେ ଉଲ୍ଲେଖ କରାଯାଉଛି । ଲଗ୍ନାଦି କ୍ରମରେ କଲ୍ୟ, ସ୍ୱ, ବିକ୍ରମ, ଗୃହ, ପ୍ରତିଭା, କ୍ଷତ, ଚିତ୍ତୋତ୍ଥ, ରନ୍ଧ୍ର, ଗୁରୁ, ମାନ, ଭବ ଓ ବ୍ୟୟ ସଂଜ୍ଞା ଜାଣିବେ । ଲଗ୍ନର ଚତୁର୍ଥ ତଥା ଅଷ୍ଟମସ୍ଥାନ

ଚତୁରସ୍ର ସଂଜ୍ଞା ନାମରେ ପରିଚିତ । ସପ୍ତମ ଭାବକୁ ଦ୍ୟୂନ, ଦଶମକୁ 'ଖ' ଏବଂ ଅଜ୍ଞା ବୋଲି କହନ୍ତି ।

## କଣ୍ଟକ ତଥା ପଣଫର ସଂଜ୍ଞା

କଣ୍ଟକକେନ୍ଦ୍ରଚତୁଷ୍ଟୟସଂଜ୍ଞାଃ ସପ୍ତମଲଗ୍ନ ଚତୁର୍ଥଖଭାନାମ୍ ।
ତେଷୁ ଯଥାଭିହିତେଷୁବଲାଢ୍ୟାଃ କୀଟନରାମ୍ବୁଚରାଃ ପଶବଶ୍ଚ । ୧୭ ।

ସପ୍ତମ, ଲଗ୍ନ, ଚତୁର୍ଥ ଏବଂ ଦଶମକୁ କଣ୍ଟକ, କେନ୍ଦ୍ର ଓ ଚତୁଷ୍ଟୟ ନାମରେ ଜାଣିବେ । କୀଟରାଶି ଯେ ବୃଶ୍ଚିକ, ମୀନ ଏବଂ କର୍କଟ ସପ୍ତମସ୍ଥ ହେଲେ ବଳିଷ୍ଠ ହୁଅନ୍ତି । ମନୁଷ୍ୟ ରାଶି ଅର୍ଥାତ୍ ମିଥୁନ, କନ୍ୟା, ତୁଳା ଏବଂ ଧନୁର ପୂର୍ବାର୍ଦ୍ଧ ଲଗ୍ନସ୍ଥ ହେଲେ ବଳିଷ୍ଠ ହୁଅନ୍ତି । ଜଳଚର ରାଶି ଯେ କର୍କଟ, ମୀନ ଏବଂ ମକରର ଉତ୍ତରାର୍ଦ୍ଧମାନେ ଚତୁର୍ଥସ୍ଥ ହେଲେ ବଳବାନ୍ ହୁଅନ୍ତି । ଚତୁଷ୍ପଦ ରାଶି ଅର୍ଥାତ୍ ମେଷ, ସିଂହ, ବୃଷ, ଧନୁର ଶେଷାର୍ଦ୍ଧ ଦଶମସ୍ଥ ହେଲେ ବଳିଷ୍ଠ ହୁଅନ୍ତି ।୧୭।

କେନ୍ଦ୍ରାତ୍ପରଂପଣଫରଂ ପରତଶ୍ଚ ସର୍ବମାପୋକ୍ଲିମଂ ହିବୁକମମ୍ବୁସୁଖଂଚବେଶ୍ମ ।
ଜାମିତ୍ରମସ୍ତଭବନଂସୁତଭଂ ତ୍ରିକୋଣଂମେଷୂରଣଂ ଦଶମମତ୍ରଚକର୍ମବିଦ୍ୟାତ୍ ।୧୮।

କେନ୍ଦ୍ରସ୍ଥାନ ପରେ ଯେ ସ୍ଥାନ ଅର୍ଥାତ୍ ଦ୍ୱିତୀୟ, ପଞ୍ଚମ, ଅଷ୍ଟମ ଏବଂ ଏକାଦଶକୁ ପଣଫର କହନ୍ତି । ତାପର ସ୍ଥାନ ଯେ ତୃତୀୟ, ଷଷ୍ଠ, ନବମ, ଦ୍ୱାଦଶକୁ ଅପୋକ୍ଲିମ କହନ୍ତି । ଚତୁର୍ଥ ଭାବକୁ ହିବୁକ, ଅମ୍ବୁ, ସୁଖ ଓ ବେଶ୍ମ କହନ୍ତି । ସପ୍ତମକୁ ଜାମିତ୍ର ତଥା ଅସ୍ତ କହନ୍ତି । ପଞ୍ଚମ ଭାବକୁ ତ୍ରିକୋଣ ଓ ଦଶମକୁ ମେଷୂରଣ କହନ୍ତି ।୧୮।

## ଲଗ୍ନାଦିର ବଳ

ହୋରାସ୍ୱାମିଗୁରୁଜ୍ଞବୀକ୍ଷିତଯୁତା ନାନ୍ୟୈଶ୍ଚବୀର୍ଯ୍ୟୋତ୍କଟା
କେନ୍ଦ୍ରସ୍ଥାଦ୍ୱିପଦାଦୟୋଽହ୍ନି ନିଶି ଚ ପ୍ରାପ୍ତେ ଚ ସନ୍ଧ୍ୟାଦ୍ୱୟେ ।
ପୂର୍ବାର୍ଦ୍ଧେବିଷମାଦୟଃ କୃତଗୁଣା ମାନଂପ୍ରତୀପଂଚତ-
ଦ୍ଦୁଶ୍ଚିକ୍ୟଂସହଜଂ ତପଶ୍ଚ ନବମଂ ତ୍ର୍ୟାଦ୍ୟଂ ତ୍ରିକୋଣଞ୍ଚତତ୍ ।୧୯।

ଲଗ୍ନ ନିଜର ଅଧିପତି, ବୃହସ୍ପତି ତଥା ବୁଧ ଦ୍ୱାରା ଦୃଷ୍ଟ ବା ଯୁକ୍ତ ହେଲେ, ଅନ୍ୟ ଗ୍ରହମାନଙ୍କ ଦ୍ୱାରା ଦୃଷ୍ଟ ବା ଯୁକ୍ତ ନ ହେଲେ ବଳବାନ୍ ହୁଏ । ଏମାନଙ୍କ ଛଡ଼ା ଅନ୍ୟ ଗ୍ରହମାନଙ୍କ ଦ୍ୱାରା ଯୁକ୍ତ ତଥା ଦୃଷ୍ଟ ହେଲେ ହୀନବଳ ହୁଏ । ଉଭୟ ପ୍ରକାର ଗ୍ରହାଦିଙ୍କ ଦ୍ୱାରା ଦୃଷ୍ଟ ତଥା ଯୁକ୍ତ ଲଗ୍ନ ମଧ୍ୟମ ବଳଯୁକ୍ତ ହୁଏ ।

ଦ୍ୱିପଦ ରାଶି ଦିନରେ, ଚତୁଷ୍ପଦ ରାଶି ରାତ୍ରିରେ, କୀଟ ରାଶିମାନେ ସନ୍ଧ୍ୟା ତଥା ପ୍ରାତଃ କାଳରେ ବଳଯୁକ୍ତ ହୁଅନ୍ତି । କେନ୍ଦ୍ରସ୍ଥ ରାଶି ପୂର୍ଣ୍ଣବଳୀ, ପଣଫରସ୍ଥ ରାଶି ମଧ୍ୟମବଳୀ ଓ ଅପୋକ୍ଲିମସ୍ଥ ରାଶି ହୀନବଳ ହୁଅନ୍ତି । ତୃତୀୟକୁ ଦୁଷ୍କିକ୍ୟ ନବମକୁ ତପ, ତ୍ରିତ୍ରିକୋଣ ଓ ତ୍ରିକୋଣ ମଧ୍ୟ କହନ୍ତି ।୧୯।

## ମେଷାଦି ରାଶିର ବର୍ଣ୍ଣ ବଚନ

ରକ୍ତଃ ଶ୍ୱେତଃ ଶୁକତନୁନିଭଃ ପାଟଲୋ ଧୂମ୍ରପାଣ୍ଡୁ-
ଶ୍ଚିତ୍ରଃକୃଷ୍ଣଃ କନକସଦୃଶଃ ପିଙ୍ଗଳଃ କର୍ବୁରଶ୍ଚ ।
ବଭ୍ରୁଃ ସ୍ୱଚ୍ଛଃ ପ୍ରଥମଭବନାଦ୍ୟେଷୁ ବର୍ଣ୍ଣାଃ ପ୍ଲବତ୍ୱଂ
ସ୍ୱାମ୍ୟାଶାଖ୍ୟଂ ଦିନକରଯୁତାଭାଦ୍‌ଦ୍ୱିତୀୟଂଚବେଶିଃ ।୨୦।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ରାଶିପ୍ରଭେଦାଧ୍ୟାୟଃ ପ୍ରଥମଃ ।

—):୦:(—

ମେଷର ବର୍ଣ୍ଣ ଲାଲ, ବୃଷର ବର୍ଣ୍ଣ ଶ୍ୱେତ, ମିଥୁନର ବର୍ଣ୍ଣ ଶୁଆର ବର୍ଣ୍ଣପରି, କର୍କଟର ବର୍ଣ୍ଣ ପାଟଳ (ଅଳ୍ପ ଲାଲ) ସିଂହର ବର୍ଣ୍ଣ ସାଧାରଣ ଶୁକ୍ଳ (ଧୂମ୍ର) କନ୍ୟାର ଚିତ୍ରିତ, ତୁଳାର କୃଷ୍ଣବର୍ଣ୍ଣ, ବୃଶ୍ଚିକର ସୁବର୍ଣ୍ଣ ତୁଲ୍ୟ ବର୍ଣ୍ଣ, ଧନୁର ପିଙ୍ଗଳ (ନୀଳ ତଥା ପୀତବର୍ଣ୍ଣ ମିଶ୍ରିତ) ମକରର କର୍ବୁର (ବହୁ ବର୍ଣ୍ଣ ମିଶ୍ରିତ) କୁମ୍ଭର ନକୁଳ ସଦୃଶ୍ୟ ବର୍ଣ୍ଣ ଓ ମୀନର ମତ୍ସ୍ୟତୁଲ୍ୟ ବର୍ଣ୍ଣ ଅଟେ ।

ମେଷ, ବୃଶ୍ଚିକର ଦକ୍ଷିଣପ୍ଲବ, ବୃଷ, ତୁଳାର ଅଗ୍ନିକୋଣ ପ୍ଲବ, ମିଥୁନ, କନ୍ୟାର ଉତ୍ତରପ୍ଲବ, କର୍କଟର ବାୟବ୍ୟ, ଧନୁ ଓ ମୀନର ଇଶାନ-କୋଣ, ମକର ଓ କୁମ୍ଭର ପଶ୍ଚିମପ୍ଲବ ଓ ସିଂହ ରାଶିର ପୂର୍ବପ୍ଲବ ଜାଣିବେ । ଏହି ଏହି ରାଶିରେ ଥିବା ଗ୍ରହମାନେ ତଦାନୁରୂପ ଏହି ଏହି ଦିଗରୁ ଲାଭ ବା କ୍ଷତି କରିବେ । ରବିର ଦ୍ୱିତୀୟ ସ୍ଥାନକୁ 'ବେଶି' କହନ୍ତି ।୨୦।

ଏଠାରେ ଶ୍ରୀ ବରାହମିହିରଙ୍କ କୃତ ବୃହଜ୍ଜାତକ ଗ୍ରନ୍ଥର ରାଶି ପ୍ରଭେଦ ନାମକ ପ୍ରଥମ ଅଧ୍ୟାୟର "ସୁବୋଧିନୀ" ଭାଷା ଟୀକା ସମାପ୍ତ ହେଲା ।

# ଗ୍ରହଭେଦାଧ୍ୟାୟୋ ଦ୍ୱିତୀୟଃ

## କାଳପୁରୁଷର ଆତ୍ମାଦ ବର୍ଗର

କାଲାତ୍ମା ଦିନକୃନ୍ମନସ୍ତୁହିନଗୁଃ ସତ୍ତ୍ୱଂ କୁଜୋ ଜ୍ଞୋ ବଚୋ
ଜୀବୋ ଜ୍ଞାନସୁଖେସିତଶ୍ଚ ମଦନୋ ଦୁଃଖଂ ଦିନେଶାତ୍ମଜଃ ।
ରାଜାନୌ ରବିଶୀତଗୂ କ୍ଷିତିସୁତୋ ନେତା କୁମାରୋ ବୁଧଃ
ସୁରିର୍ଦାନବପୂଜିତଶ୍ଚ ସଚିବୌ ପ୍ରେଷ୍ୟଃ ସହସ୍ରାଂଶୁଜଃ ।୧।

କାଳ ସ୍ୱରୂପ ପୁରୁଷର ସୂର୍ଯ୍ୟ ଆତ୍ମାରୂପେ କଳ୍ପିତ, ଚନ୍ଦ୍ରମା ମନ, ମଙ୍ଗଳ ବଳ, ବୁଧ ବାଣୀ, ବୃହସ୍ପତି ଜ୍ଞାନ ଏବଂ ସୁଖ, ଶୁକ୍ର ମଦନ (କାମ) ଓ ଶନି ଦୁଃଖ ରୂପେ କଳ୍ପିତ ହୋଇଛନ୍ତି । ରବି ଓ ଚନ୍ଦ୍ର ରାଜା, ବୁଧ ରାଜକୁମାର, ମଙ୍ଗଳ ସେନାପତି, ଗୁରୁ ଓ ଶୁକ୍ର ମନ୍ତ୍ରୀ, ଶନିଙ୍କୁ ଦାସରୂପେ କଳ୍ପନା କରାଯାଇ ଅଛି ।

## ଗ୍ରହମାନଙ୍କର ବିଭିନ୍ନ ନାମ

ହେଲିଃ ସୂର୍ଯ୍ୟଶ୍ଚନ୍ଦ୍ରମାଃଶୀତରଶ୍ମି ର୍ହେମ୍ନାବିଜ୍‌ଜ୍ଞୋବୋଧନଶ୍ଚେନ୍ଦୁପୁତ୍ରଃ
ଆରୋବକ୍ରଃ କ୍ରୂରଦୃକ୍‌ଚାବନେୟଃ କୋଣୋମନ୍ଦଃ ସୂର୍ଯ୍ୟପୁତ୍ରୋସିତଶ୍ଚ ।୨।

ଜୀବୋଙ୍ଗିରାଃସୁରଗୁରୁର୍ବଚସାଂପତୀଜ୍ୟଃ
ଶୁକ୍ରୋଭୃଗୁର୍ଭୃଗୁସୁତଃ ସିତଆସ୍ଫୁଜିଚ ।
ରାହୁସ୍ତମୋଗୁରସୁରଶ୍ଚ ଶିଖୀତି କେତୁଃ
ପର୍ଯ୍ୟାୟମନ୍ୟମୁପଲଭ୍ୟ ବଦେଚ ଲୋକାତ୍ ।୩।

ହେଲି ସୂର୍ଯ୍ୟଙ୍କ ନାମ; ଶୀତରଶ୍ମି ଚନ୍ଦ୍ରଙ୍କ ନାମ; ହେମ୍ନ, ବିଦ୍, ଜ୍ଞ ଏବଂ ବୋଧନ ବୁଧଙ୍କ ନାମ; ଆର, ବକ୍ର, କ୍ରୂରଦୃକ୍, ଆବନେୟ ମଙ୍ଗଳଙ୍କ ନାମ; କୋଣ, ମନ୍ଦ, ଅସିତ ଶନିଙ୍କ ନାମ, ଜୀବ, ଅଙ୍ଗିରା, ସୁରଗୁରୁ, ବଚୋଂପତି, ଇଜ୍ୟ ବୃହସ୍ପତିଙ୍କ ନାମ; ଭୃଗୁ, ଭୃଗୁସୁତ, ସିତ, ଅସ୍ଫୁଜିତ ଶୁକ୍ରଙ୍କ ନାମ; ତମ, ଅଗ୍ର ଅସୁର ରାହୁଙ୍କ ନାମ ଓ ଶିଖୀ କେତୁଙ୍କ ନାମ ଅଟେ ।

ଏହି ୨ ଅର୍ଥବୋଧକ ତଥା ଅନ୍ୟାନ୍ୟ ପର୍ଯ୍ୟାୟ ଲୋକ ବ୍ୟବହାରରୁ ତଥା ଶାସ୍ତ୍ରରୁ ଗ୍ରହଣ କରିବେ ।୨-୩।

# ୪ ଗ୍ରହମାନଙ୍କର ବର୍ଣ୍ଣ ବର୍ଣ୍ଣ

ରକ୍ତଶ୍ୟାମୋଭାସ୍କରୋ ଗୌରଇନ୍ଦୁର୍ନାତ୍ୟୁଚ୍ଚାଙ୍ଗୋ ରକ୍ତଗୌରଶ୍ଚ ବକ୍ରଃ ।
ଦୂର୍ବାଶ୍ୟାମୋଜ୍ଞୋଗୁରୁର୍ଗୌରଗାତ୍ରଃ ଶ୍ୟାମଃଶୁକ୍ରୋଭାସ୍କରିଃ କୃଷ୍ଣଦେହଃ ।୪।

ରବିର ବର୍ଣ୍ଣ ରକ୍ତଶ୍ୟାମ (ପାଟଳ ଫୁଲର ବର୍ଣ୍ଣ) ଚନ୍ଦ୍ର ଗୌରବର୍ଣ୍ଣ, ମଙ୍ଗଳ ଅନୁଚ୍ଚ ଓ ରକ୍ତ ଗୌର (ପଦ୍ମବର୍ଣ୍ଣ) ବୁଧ ଦୁର୍ବାଦଳ ସଦୃଶ୍ୟ ଶ୍ୟାମ, ବୃହସ୍ପତି ଗୌରବର୍ଣ୍ଣ, ଶୁକ୍ର ଅଳ୍ପ କୃଷ୍ଣ ବର୍ଣ୍ଣ ଏବଂ ଶନି କୃଷ୍ଣ ବର୍ଣ୍ଣ ଅଟେ ।

ଜାତକ ଯେଉଁ ଗ୍ରହର ନବାଂଶରେ ଜନ୍ମ ହୋଇଥାଏ ବା ଯେ ଗ୍ରହ ସମସ୍ତଙ୍କ ଅପେକ୍ଷା ବଳବାନ୍ ସେହି ଗ୍ରହର ବର୍ଣ୍ଣ ଧାରଣ କରେ ।

## ଗ୍ରହମାନଙ୍କର ଧାତୁ, ପାପଶୁଭତ୍ୱ ଓ ଦିଗ ନିରୂପଣ

ବର୍ଣ୍ଣାସ୍ତାମ୍ରସିତାତିରକ୍ତହରିତବ୍ୟାପୀତଚିତ୍ରାସିତା
ବହ୍ନ୍ୟଂମ୍ବଗ୍ନିଜକେଶବେନ୍ଦ୍ରଶଚିକାଃ ସୂର୍ଯ୍ୟାଦିନାଥାକ୍ରମାତ୍ ।
ପ୍ରାଗାଦ୍ୟାରବିଶୁକ୍ରଲୋହିତତମଃ ସୌରେନ୍ଦୁବିତ୍ସୂରୟଃ
କ୍ଷୀଣେନ୍ଦ୍ୱର୍କମହୀସୁତାର୍କତନୟାଃ ପାପାବୁଧସ୍ତୈର୍ଯୁତଃ ।୫।

ରବି ଲାଲବର୍ଣ୍ଣର, ଚନ୍ଦ୍ର ଶ୍ୱେତବର୍ଣ୍ଣର, ମଙ୍ଗଳ ଅତିଲାଲ ବର୍ଣ୍ଣର, ବୁଧ ହରିତ୍ ବର୍ଣ୍ଣର, ବୃହସ୍ପତି ପୀତ (ହଳଦିଆ) ବର୍ଣ୍ଣର, ଶୁକ୍ର ବହୁମିଶ୍ରିତ ବର୍ଣ୍ଣର ଓ ଶନି କୃଷ୍ଣବର୍ଣ୍ଣର ଅଧିକାରୀ ଅଟନ୍ତି ।

ଏମାନେ ଶୁଭ ହୋଇଥିଲେ ଏହି ଏହି ବର୍ଣ୍ଣର ଦ୍ରବ୍ୟ ଲାଭ ଓ ଅଶୁଭ ହୋଇଥିଲେ କ୍ଷତି ଘଟିବ ।

ରବିଙ୍କ ଦେବତା ଅଗ୍ନି, ଚନ୍ଦ୍ରଙ୍କର ଜଳ, ମଙ୍ଗଳଙ୍କ କାର୍ତ୍ତିକେୟ, ବୁଧଙ୍କ ବିଷ୍ଣୁ, ବୃହସ୍ପତିଙ୍କର ଇନ୍ଦ୍ର, ଶୁକ୍ରଙ୍କ ଇନ୍ଦ୍ରାଣୀ ଓ ବ୍ରହ୍ମା ଶନିଙ୍କର ଦେବତା ଅଟନ୍ତି । ଗ୍ରହ ଶାନ୍ତିରେ ଏହି ଏହି ଗ୍ରହ ଦେବତାଙ୍କୁ ପୂଜା କରାଯିବା ଉଚିତ ।

ପୂର୍ବଦିଗର ଅଧିପତି ରବି, ସେହିପରି ଅଗ୍ନି କୋଣର ଶୁକ୍ର, ଦକ୍ଷିଣର ମଙ୍ଗଳ, ନୈରୃତର ରାହୁ, ପଶ୍ଚିମର ଶନି, ବାୟବ୍ୟ କୋଣର ଚନ୍ଦ୍ର, ଉତ୍ତରର ବୁଧ ଓ ଇଶାନ କୋଣର ଗୁରୁ ଅଧିପତି ଅଟନ୍ତି ।

କ୍ଷୀଣଚନ୍ଦ୍ର (କୃଷ୍ଣପକ୍ଷର ଅଷ୍ଟମୀଠାରୁ ଶୁକ୍ଳ ଅଷ୍ଟମୀ ଯାଏ) ରବି, ମଙ୍ଗଳ, ଶନି ଓ ଏମାନଙ୍କ ସହିତ ଯୁକ୍ତ ବୁଧ ପାପ ଗୁରୁ ଓ ଶୁକ୍ର ଶୁଭ ଗ୍ରହ ।୫।

## ଗ୍ରହମାନଙ୍କର ପୁରୁଷାଦି ସଂଜ୍ଞା

ବୁଧସୂର୍ଯ୍ୟସୁତୌ ନପୁଂସକାଖ୍ୟୌ ଶଶିଶୁକ୍ରୌ ଯୁବତୀ ନରାଶ୍ଚ ଶେଷାଃ
ଶିଖିଭୂଖପୟୋମରୁଦ୍ଗଣାନାଂ ବଶିନୋଭୂମିସୁତାଦୟଃକ୍ରମେଣ ।୬।

ବୁଧ ଓ ଶନି ନପୁଂସକ ଗ୍ରହ, ଶୁକ୍ର ଓ ଚନ୍ଦ୍ର ସ୍ତ୍ରୀ ଗ୍ରହ, ରବି, ମଙ୍ଗଳ, ଗୁରୁ ପୁରୁଷ ଗ୍ରହ ଅଟନ୍ତି ।

ମଙ୍ଗଳ ଅଗ୍ନିତତ୍ତ୍ୱର, ବୁଧ ପୃଥ୍ୱୀତତ୍ତ୍ୱର, ବୃହସ୍ପତି ଆକାଶତତ୍ତ୍ୱର, ଶୁକ୍ର ଜଳ ତତ୍ତ୍ୱର ଓ ଶନି ବାୟୁ ତତ୍ତ୍ୱର ଅଧିକାରୀ ଅଟନ୍ତି ।

### ଜାତି ନିର୍ଣ୍ଣୟ

ବିପ୍ରାଦିତଃ ଶୁକ୍ରଗୁରୁ କୁଜାର୍କୌ ଶଶୀ ବୁଧଶ୍ଚେତ୍ୟସିତୋନ୍ତ୍ୟଜାନାମ୍ ।
ଚନ୍ଦ୍ରାର୍କଜୀବାଜ୍ଞସିତୌ କୁଜାର୍କୀ ଯଥାକ୍ରମଂସତ୍ତ୍ୱରଜସ୍ତମାଂସି ।୭।

ଶୁକ୍ର ଓ ଗୁରୁ ବ୍ରାହ୍ମଣ ଜାତିର, ମଙ୍ଗଳ ଓ ରବି କ୍ଷତ୍ରିୟ ଜାତିର, ଚନ୍ଦ୍ରମା ଓ ବୁଧ ବୈଶ୍ୟ ଜାତିର ଓ ଶନି ଶୂଦ୍ର ଜାତିର ଅଧିପତି ଅଟନ୍ତି ।

ଦଶାର ଶୁଭାଶୁଭରେ ଏହି ଏହି ଜାତି ବା ଏହି ଜାତିର ବ୍ୟବସାୟ କରୁଥିବା ବ୍ୟକ୍ତି ଦ୍ୱାରା ଲାଭ ବା କ୍ଷତି ନିର୍ଦ୍ଦେଶ କରିବେ । ହୃତନଷ୍ଟାଦି ଦ୍ରବ୍ୟର ପ୍ରଶ୍ନବେଳେ ଗ୍ରହର ବଳକୁ ଧରି ଚୌରାଦିର ଜାତି ମଧ୍ୟ ଏଥିରୁ ସ୍ଥିର କରିବେ ।

ଚନ୍ଦ୍ର, ରବି ଓ ଗୁରୁ ସତ୍ତ୍ୱଗୁଣର, ବୁଧ ଓ ଶୁକ୍ର ରଜୋ ଗୁଣର, ମଙ୍ଗଳ ଓ ଶନି ତମୋ ଗୁଣର ଅଧିପତି ଅଟନ୍ତି ।୭।

### ଗ୍ରହମାନଙ୍କର ସ୍ୱରୂପ

ମଧୁପିଙ୍ଗଳଦୃକ୍ଚତୁରସ୍ରତନୁଃ ପିତ୍ତପ୍ରକୃତିଃ ସବିତାଲ୍ପକଚଃ
ତନୁବୃତ୍ତତନୁର୍ବହୁବାତକଫଃ ପ୍ରାଜ୍ଞଶ୍ଚଶଶୀମୃଦୁବାକ୍ଶୁଭଦୃକ୍ ।୮।

* ରବିଙ୍କର ସ୍ୱରୂପଃ—ମଧୁପିଙ୍ଗଳ ନେତ୍ର, ଚତୁରସ୍ର ଦେହ (ଲମ୍ବାଚୌଡ଼ାରେ ସ୍ଥୂଳ) ପିତ୍ତ ପ୍ରକୃତି, ଅଳ୍ପକେଶ ଯୁକ୍ତ; ଚନ୍ଦ୍ରଙ୍କ ସ୍ୱରୂପଃ— କ୍ଷୀଣ ତନୁ ସୁଗଠିତ, ବହୁଶ୍ଳେଷ୍ମା ତଥା ବାତ ପ୍ରକୃତିକ, ବୁଦ୍ଧିମାନ୍, ସୁନ୍ଦରଚକ୍ଷୁ, କୋମଳ ବଚନ, ଜାତକ ଯେଉଁଗ୍ରହର ନବାଂଶରେ ଜନ୍ମ ହୋଇଥାଏ, ଯେ ଗ୍ରହ ଲଗ୍ନରେ ଥାଏ ସେହି ଗ୍ରହର ସ୍ୱରୂପ ତାଠାରେ ରହେ ।

କ୍ରୂରଦୃକ୍ତରୁଣମୂର୍ତ୍ତିରୁଦାରଃ ପୈତ୍ତିକଃସୁଚପଳଃ କୃଶମଧ୍ୟଃ
ଶ୍ଲିଷ୍ଟବାକ୍‌ସତତହାସ୍ୟରୁଚିର୍ଜ୍ଞଃ ପିତ୍ତମାରୁତକଫପ୍ରକୃତିଶ୍ଚ ।୯।

ମଙ୍ଗଳଙ୍କର ସ୍ୱରୂପ:–କ୍ରୂରଦୃଷ୍ଟି, ତରୁଣ ବୟସ, ଉଦାର ଚିତ୍ତ, ପିତ୍ତ ପ୍ରକୃତି, ଚଞ୍ଚଳ ସ୍ୱଭାବ ଓ କୃଶ କଟି ।

ବୁଧଙ୍କ ସ୍ୱରୂପ:–ଗଦ୍‌ଗଦ ବାଣୀ, ସର୍ବଦା ହାସ୍ୟପ୍ରିୟ, ବାତ ପିତ୍ତ କଫ ମିଶ୍ରିତ ପ୍ରକୃତି ।୯।

ବୃହତ୍ତନୁଃ ପିଙ୍ଗଳମୂର୍ଦ୍ଧଜେକ୍ଷଣୋ ବୃହସ୍ପତିଃଶ୍ରେଷ୍ଠମତିଃକଫାତ୍ମକଃ ।
ଭୃଗୁଃ ସୁଖୀକାନ୍ତବପୁଃ ସୁଲୋଚନଃ କଫାନିଳାତ୍ମାସିତବକ୍ରମୂର୍ଦ୍ଧଜଃ ।୧୦।

ବୃହସ୍ପତିଙ୍କ ସ୍ୱରୂପ:–ବୃହତ୍ ଶରୀର, ପିଙ୍ଗଳ ବର୍ଣ୍ଣ କେଶ ଓ ଚକ୍ଷୁ, ଉତ୍ତମ ବୁଦ୍ଧି ଓ କଫ ପ୍ରକୃତି ।

ଶୁକ୍ରଙ୍କ ସ୍ୱରୂପ:–ସୁଖୀ, ସୁନ୍ଦର ଶରୀର, ସୁନ୍ଦର ଆଖି, କଫ ଓ ବାତ ପ୍ରକୃତି, ମସ୍ତକର କେଶ କଳା ଓ କୁଞ୍ଚୁକୁଞ୍ଚିଆ ଥାଏ ।

ମନ୍ଦୋଽଲସଃ କପିଳଦୃକ୍ କୃଶଦୀର୍ଘଗାତ୍ରଃ
ସ୍ଥୂଳଦ୍ୱିଜଃ ପରୁଷରୋମକଚୋଽନିଲାତ୍ମା ।
ସ୍ନାୟ୍ୱସ୍ଥ୍ୟସୃକ୍‌ତ୍ୱଗଥ ଶୁକ୍ରବସେ ଚ ମଜ୍ଜା
ମନ୍ଦାର୍କଚନ୍ଦ୍ରବୁଧଶୁକ୍ରସୁରେଜ୍ୟ ଭୌମାଃ ।୧୧।

ଶନିଙ୍କ ସ୍ୱରୂପ:–ଆଳସ୍ୟ, ପିଙ୍ଗଳ ଚକ୍ଷୁ, କୃଶ ତଥା ଲମ୍ବାଦେହ, ବଡ଼ ବଡ଼ ଦାନ୍ତ, ରୁକ୍ଷରୋମଯୁକ୍ତ, କେଶମଧ୍ୟ ରୁକ୍ଷ ଓ ବାୟୁ ପ୍ରକୃତି ।

ଶନିଙ୍କର ସ୍ନାୟୁ, ରବିଙ୍କର ଅସ୍ଥି, ଚନ୍ଦ୍ରଙ୍କର ରକ୍ତ, ବୁଧଙ୍କର ଚର୍ମ, ଶୁକ୍ରଙ୍କର ଶୁକ୍ର, ବୃହସ୍ପତିଙ୍କର ମେଦ (ବସା) ଏବଂ ମଙ୍ଗଳଙ୍କର ମଜ୍ଜାରେ ଅଧିକାର ।

ଯେ ଗ୍ରହ ଜାତକରେ ବଳବାନ୍ ଜାତକର ସେହି ବଳ ଅଧିକ ରହେ । ଗ୍ରହ ଦୋଷହେଲେ ସେହି ସେହି ଧାତୁର ହାନି ଘଟେ, ପୀଡ଼ା ବା ଅଘାତ ମଧ୍ୟ ଘଟେ ।୧୧।

## ଗ୍ରହମାନଙ୍କର ସ୍ଥାନ, ବସ୍ତ୍ର, ଧାତୁ ଓ ଋତୁ ବର୍ଣ୍ଣନ

ଦେବାମ୍ବ୍ୱଗ୍ନିବିହାରକୋଶଶୟନକ୍ଷିତ୍ୟୁତ୍କରେଶାଃକ୍ରମା–
ଦ୍‌ବସ୍ତ୍ରଂ ସ୍ଥୂଳମଭୁକ୍ତମଗ୍ନିକହତଂ ମଧ୍ୟଂ ଦୃଢ଼ଂ ସ୍ଫାଟିତମ୍ ।

ତାମ୍ରଂ ସ୍ୟାନ୍ମଣିହେମଯୁକ୍ତିରଜତାନ୍ୟର୍କାଚ୍ଚ ମୁକ୍ତାୟସୀ ।
ଦ୍ରେଷ୍କାଣୈଃ ଶିଶିରାଦୟଃ ଶଶିଗୁରୁଚନ୍ଦ୍ରଜ୍ଞାଦୟୋଦ୍ୟସ୍ତୁବା ।୧୨।

ରବିଙ୍କର ଦେବତା ସ୍ଥାନ, ଚନ୍ଦ୍ରଙ୍କର ଜଳସ୍ଥାନ, ମଙ୍ଗଳଙ୍କର ଅଗ୍ନିସ୍ଥାନ, ବୁଧଙ୍କର କ୍ରୀଡ଼ାସ୍ଥାନ, ବୃହସ୍ପତିଙ୍କ ଭଣ୍ଡାର, ଶୁକ୍ରଙ୍କ ଶୟନସ୍ଥାନ ଓ ଶନିଙ୍କର ଊଷର ପ୍ରଦେଶରେ ଅଧିକାର । ଯେଉଁ ଗ୍ରହ ବଳବାନ୍ ସେହି ଗ୍ରହର ସ୍ଥାନରେ ଜାତକର ପ୍ରସବ ହୋଇଥାଏ । ହଜିଥିବା ଦ୍ରବ୍ୟ ସେହି ସେହି ସ୍ଥାନରେ ଥାଏ । ଅଧିକାର, ସଂପର୍କ ତଥା ପ୍ରୀତି ଗ୍ରହଦଶାନୁରୂପେ ସେହି ସେହି ସ୍ଥାନରେ ଜାତହୁଏ ।

ରବିଙ୍କର ମୋଟାଲୁଗା, ଚନ୍ଦ୍ରଙ୍କର ନୂତନବସ୍ତ୍ର, ମଙ୍ଗଳଙ୍କର ଏକାଂଶ ଅଗ୍ନିଦଗ୍ଧ, ବୁଧଙ୍କର ଓଦାଲୁଗା ( ଶପୁଡ଼ା ହୋଇଥିବା ) ତାହା ନୂଆ ବା ଅତପୁରୁଣା ନୁହେ, ବୃହସ୍ପତିଙ୍କର ମଧ୍ୟ ଅଳ୍ପ ବ୍ୟବହୃତ ହୋଇଥିବା, ଶୁକ୍ରଙ୍କ ଦୃଢ ଓ ଶନିଙ୍କ ପୁରୁଣା ଲୁଗା ଜାଣିବେ ଜନ୍ମଲଗ୍ନସ୍ଥ ଗ୍ରହ ବା ନବାଂଶାଧିପର ଅନୁକ୍ରମରେ ସୂତିକା ବସ୍ତ୍ର ଧାରଣ କରିଥିବ ।

ରବିଙ୍କର ତାମ୍ର, ଚନ୍ଦ୍ରଙ୍କର ମଣି, ମଙ୍ଗଳଙ୍କ ସୁନା, ବୁଧଙ୍କର କାଂସ୍ୟ, ବୃହସ୍ପତିଙ୍କର ରୂପା, ଶୁକ୍ରଙ୍କର ମୁକ୍ତା ଓ ଶନିଙ୍କର ଲୌହରେ ଅଧିକାର । ଗ୍ରହର ଶୁଭରେ ଏହି ଏହି ଦ୍ରବ୍ୟର ଲାଭ ଓ ଅଶୁଭରେ ହାନି କହିବେ । ଶନିଙ୍କର ଶିଶିର, ଶୁକ୍ରଙ୍କର ବସନ୍ତ, ମଙ୍ଗଳଙ୍କର ଗ୍ରୀଷ୍ମ, ଚନ୍ଦ୍ରଙ୍କର ବର୍ଷା, ବୁଧଙ୍କର ଶରତ, ବୃହସ୍ପତିଙ୍କର ହେମନ୍ତ ଋତୁରେ ଅଧିକାର । ଲଗ୍ନ ଗତ ଗ୍ରହ ବା ଲଗ୍ନରେ ଗ୍ରହ ନଥିଲେ ଦ୍ରେକ୍କାଣର ଅଧିପତି ଓ ଲଗ୍ନରେ ବହୁ ଗ୍ରହଥିଲେ ବଳବାନ ଗ୍ରହର ଋତୁରେ ଜାତକର ଶୁଭାଶୁଭ ସ୍ଥିର କରିବେ ।୧୨।

## ଗ୍ରହମାନଙ୍କର ଦୃଷ୍ଟି ବିଚାରଃ—

ତ୍ରିଦଶତ୍ରିକୋଣଚତୁରସ୍ରସପ୍ତମାନ୍ୟବଲୋକୟନ୍ତି ଚରଣାଭିବୃଦ୍ଧିତଃ
ରବିଜାମରେଜ୍ୟରୁଧିରାଃ ପରେଚଯେ କ୍ରମଶୋ ଭବନ୍ତିକିଲବୀକ୍ଷଣେଧିକାଃ ।୧୩।

ଗ୍ରହ ଯେଉଁ ସ୍ଥାନରେ ଥାଏ ତାହାର ତୃତୀୟ ଓ ଦଶମକୁ ଏକପାଦ, ନବମ ତଥା ପଞ୍ଚମକୁ ଦୁଇପାଦ, ଚତୁର୍ଥ ତଥା ଅଷ୍ଟମକୁ ତିନିପାଦ ଓ ସପ୍ତମକୁ ସଂପୂର୍ଣ୍ଣ ଦେଖେ । ବିଶେଷ ଏହି ଯେ ଶନି ଦଶମ ତଥା ତୃତୀୟକୁ, ଗୁରୁ ପଞ୍ଚମ ଓ ନବମକୁ, ମଙ୍ଗଳ ଚତୁର୍ଥ ତଥା ଅଷ୍ଟମକୁ ଓ ଅନ୍ୟ ସମସ୍ତେ ସପ୍ତମକୁ ସଂପୂର୍ଣ୍ଣ ଦେଖନ୍ତି ।

## କାଳ ଓ ରସନିର୍ଣ୍ଣୟଃ

ଅୟନକ୍ଷଣବାସରର୍ତ୍ତବୋ ମାସୋର୍ଦ୍ଧଞ୍ଚ ସମାଶ୍ଚ ଭାସ୍କରାତ୍
କଟୁକଲବଣତିକ୍ତମିଶ୍ରିତା ମଧୁରାମ୍ଳୌ ଚ କଷାୟ ଇତ୍ୟପି ।୧୪।

ରବିଙ୍କର ଅୟନ, ଚନ୍ଦ୍ରଙ୍କର ମୁହୂର୍ତ୍ତି, ମଙ୍ଗଳଙ୍କର ଦିନ, ବୁଧଙ୍କର ଋତୁ ବୃହସ୍ପତିଙ୍କର ମାସ, ଶୁକ୍ରଙ୍କର ପକ୍ଷ ଓ ଶନିଙ୍କର ବର୍ଷ ରୂପକ କାଳରେ ଅଧିକାର ପ୍ରଶ୍ନାଦିରେ ବା ଗ୍ରହଦଶାରେ ଏମାନଙ୍କର ଅଧିକାରାନୁରୂପ ସମୟ ମଧ୍ୟରେ ଶୁଭ ତଥା ଅଶୁଭ ଫଳ ଘଟିଥାଏ ।

ରବିଙ୍କର କଟୁ, ଚନ୍ଦ୍ରଙ୍କର ଲବଣ, ମଙ୍ଗଳଙ୍କ ପିତା, ବୁଧଙ୍କ ମିଶ୍ରିତ ରସ, ଗୁରୁଙ୍କର ମିଷ୍ଟ ରସ, ଶୁକ୍ରଙ୍କର ଅମ୍ଳ (ଖଟା) ଓ ଶନିଙ୍କର କଷାୟ ରସ ଅଟେ ।

ଲଗ୍ନସ୍ଥିତ ଗ୍ରହାନୁରୂପ ବା ନବାଂଶାଧିପର ଅନୁରୂପ ରସରେ ପ୍ରୀତି ଜାତ ହୁଏ ।୧୪।

### ଶତ୍ରୁମିତ୍ରାଦି ସମ୍ବନ୍ଧେ ବିଭିନ୍ନମତ—

ଜୀବୋ ଜୀବବୁଧୌ ସିତେନ୍ଦୁ ତନୟୌ ବ୍ୟର୍କା ବିଭୌମାଃ କ୍ରମା-
ଦ୍ଵୀନ୍ଦ୍ୱର୍କା ବିକୁଜେନ୍ଦ୍ୱିନାଶ୍ଚ ସୁହୃଦଃ କେଷାଞ୍ଚିଦେବଂ ମତମ୍ ।
ସତ୍ୟୋକ୍ତେ ସୁହୃଦସ୍ତ୍ରିକୋଣଭବନାତ୍ସ୍ୱାତ୍ ସ୍ୱାନ୍ତ୍ୟଧୀଧର୍ମପାଃ
ସ୍ୱୋଚ୍ଚାୟୁଃ ସୁଖପାଃ ସ୍ୱଲକ୍ଷଣବିଧେର୍ନାନ୍ୟୈର୍ବିରୋଧାଦିତି ।୧୫।

ରବିର ମିତ୍ର ବୃହସ୍ପତି, ଚନ୍ଦ୍ରର ମିତ୍ର ଗୁରୁ ଓ ବୁଧ; ମଙ୍ଗଳର ଶୁକ୍ର ଓ ବୁଧ ମିତ୍ର; ଚନ୍ଦ୍ର, ମଙ୍ଗଳ, ଗୁରୁ ଓ ଶନି ବୃହସ୍ପତି, ବୁଧର ମିତ୍ର; ଶୁକ୍ର, ଶନି, ରବି, ଚନ୍ଦ୍ର ବୁଧ ଗୁରୁର ମିତ୍ର; ଶୁକ୍ରର ମଙ୍ଗଳ, ବୁଧ, ବୃହସ୍ପତି, ଶନି ମିତ୍ର; ଶନିର ବୁଧ, ବୃହସ୍ପତି ଓ ଶୁକ୍ର ମିତ୍ର ଅଟନ୍ତି । ଯେଉଁମାନେ ମିତ୍ର ନୁହନ୍ତି ସେମାନେ ଶତ୍ରୁ ଅଟନ୍ତି । ଏହି ମତ କୌଣସି କୌଣସି ଆଚାର୍ଯ୍ୟଙ୍କର ଅଟେ କିନ୍ତୁ ଗ୍ରାହ୍ୟ ନୁହେ । ସତ୍ୟାଚାର୍ଯ୍ୟ କହନ୍ତି ଗ୍ରହର ନିଜର ମୂଳ ତ୍ରିକୋଣ ରାଶିର ଦ୍ୱିତୀୟ, ଦ୍ୱାଦଶ, ପଞ୍ଚମ, ନବମ, ଅଷ୍ଟମ ଏବଂ ଚତୁର୍ଥ ସ୍ଥାନର ଅଧିପତି ଓ ନିଜର ଉଚ୍ଚ ରାଶିର ଅଧିପତି ମିତ୍ର, ଅନ୍ୟମାନେ ଶତ୍ରୁ ଅଟନ୍ତି । ଏହିମତ ସର୍ବ ସମ୍ମତ ନୁହେ ।୧୫।

### ଗ୍ରହମାନଙ୍କର ଶତ୍ରୁ ମିତ୍ର, ସମ ନିରୂପଣ

ଶତ୍ରୂମନ୍ଦସିତୌ ସମଶ୍ଚ ଶଶିଜୋ ମିତ୍ରାଣି ଶେଷା ରବେ-
ସ୍ତୀକ୍ଷ୍ଣାଂଶୁର୍ହିମରଶ୍ମିଜଶ୍ଚ ସୁହୃଦୌ ଶେଷାଃ ସମାଃ ଶୀତଗୋଃ ।

ଜୀବେନ୍ଦୂଷ୍ଣକରାଃ କୁଜସ୍ୟ ସୁହୃଦୋ ଜ୍ଞୋଽରିଃ ସିତାର୍କୀ ସମୌ
ମିତ୍ରେସୂର୍ଯ୍ୟସିତୌ ବୁଧସ୍ୟ ହିମଗୁଃ ଶତ୍ରୁଃ ସମାଶ୍ଚାପରେ ।୧୬।
ସୂରେଃ ସୌମ୍ୟସିତାବରୀ ରବିସୁତୋ ମଧ୍ୟୋଽପରେତ୍ୱନ୍ୟଥା
ସୌମ୍ୟାର୍କୀସୁହୃଦୌସମୌ କୁଜଗୁରୂ ଶୁକ୍ରସ୍ୟ ଶେଷାବରୀ ॥
ଶୁକ୍ରଜ୍ଞୌସୁହୃଦୌ ସମଃ ସୁରଗୁରୁଃ ସୌରସ୍ୟ ଚାନ୍ୟେଽରୟୋ
ଯେ ପ୍ରୋକ୍ତାଃ ସ୍ୱତ୍ରିକୋଣଭାଦିଷୁ ପୁନସ୍ତେଽମୀ ମୟା କୀର୍ତ୍ତିତାଃ ।୧୭।

ରବିର ମିତ୍ର ଚନ୍ଦ୍ର, ମଙ୍ଗଳ ଓ ଗୁରୁ; ଶତ୍ରୁ ଶୁକ୍ର ଓ ଶନି; ସମଗ୍ରହ ବୁଧ ଅଟେ ।

ଚନ୍ଦ୍ରର ମିତ୍ର ରବି ଓ ବୁଧ; ଶତ୍ରୁ କେହି ନାହିଁ; ସମ ମଙ୍ଗଳ, ଗୁରୁ, ଶୁକ୍ର ଏବଂ ଶନି ଅଟନ୍ତି ।

ମଙ୍ଗଳର ମିତ୍ର ଗୁରୁ, ଚନ୍ଦ୍ର, ରବି; ଶତ୍ରୁ ବୁଧ; ଶୁକ୍ର ଓ ଶନି ସମ, ବୁଧର ମିତ୍ର ରବି, ଶୁକ୍ର; ଶତ୍ରୁ ଚନ୍ଦ୍ର; ସମ ମଙ୍ଗଳ, ଗୁରୁ ଓ ଶନି, ବୃହସ୍ପତିର ମିତ୍ର ରବି, ଚନ୍ଦ୍ର; ମଙ୍ଗଳ, ଶତ୍ରୁ ବୁଧ ଓ ଶୁକ୍ର; ସମ ଶନି । ଶୁକ୍ରର ମିତ୍ର ବୁଧ, ଶନି; ଶତ୍ରୁ ରବି ଓ ଚନ୍ଦ୍ର, ସମ ମଙ୍ଗଳ, ଓ ଗୁରୁ । ଶନିର ମିତ୍ର ଶୁକ୍ର, ବୁଧ; ଶତ୍ରୁ ରବି, ଚନ୍ଦ୍ର, ମଙ୍ଗଳ, ସମ ଗୁରୁ । ଏହି ମତହିଁ ଗ୍ରାହ୍ୟ ଓ ଅନ୍ୟାନ୍ୟ ମାନେ ଅନୁମୋଦନ କରନ୍ତି ।

ପୂର୍ବରୁ କୁହାଯାଇଥିବା ମୂଳତ୍ରିକୋଣଠାରୁ କଥିତ ଭାବମାନଙ୍କ ସହିତ ସାମ୍ୟ ରକ୍ଷାକରି ଏହି ମତ କୁହାଗଲା । ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ ରବିର ମୂଳ ତ୍ରିକୋଣ ସିଂହ ଏହାର ଦ୍ୱିତୀୟ କନ୍ୟା–ତାହାର ଅଧିପତି ବୁଧ, ଏକାଦଶ ମିଥୁନ–ଅଧିପତି ବୁଧ, ଦ୍ୱିତୀୟ ଭାବାଧିପ ମିତ୍ର, କିନ୍ତୁ ଏକାଦଶ ଭାବ ସମ୍ବନ୍ଧେ କିଛି କୁହାନଯିବାରୁ ଏହା ସମ ହେଲା । ତେଣୁ ବୁଧ ସମ ଦ୍ୱାଦଶର ଅଧିପତି ଚନ୍ଦ୍ର, ଅନ୍ୟଗ୍ରହ ନଥିବାରୁ ସେ ମିତ୍ର, ପଞ୍ଚମ ତଥା ଅଷ୍ଟମର ଅଧିପତି ବୃହସ୍ପତି ତେଣୁ ସେ ମିତ୍ର, ଚତୁର୍ଥ ତଥା ନବମର ଅଧିପତି ମଙ୍ଗଳ ଏସ ମିତ୍ର ଓ ସପ୍ତମର ଅଧିପତି ଶନି ଶତ୍ରୁ । ଏହି ନିୟମରେ ମିତ୍ରାମିତ୍ର ସ୍ଥିର କରାଗଲା ।୧୬।୧୭।

ଅନ୍ୟୋନ୍ୟସ୍ୟ ଧନବ୍ୟୟାୟୁସହଜବ୍ୟାପାରବନ୍ଧୁସ୍ଥିତା
ସ୍ତତ୍କାଲଂ ସୁହୃଦଃସ୍ୱତୁଙ୍ଗଭବନେଽପ୍ୟେକେଽରୟସ୍ତ୍ୱନ୍ୟଥା ।
ଦ୍ୱ୍ୟେକାନୁକ୍ତଭପାନ୍ ସୁହୃତ୍ସମରିପୂନ୍ସଞ୍ଚିନ୍ତ୍ୟନୈସର୍ଗିକାଂ
ସ୍ତତ୍କାଲେ ଚ ପୁନସ୍ତୁତାନଧିସୁହୃନ୍ମିତ୍ରାଦିଭିଃ କଳ୍ପୟେତ୍ ।୧୮।

ଯେଉଁ ସ୍ଥାନରେ ଗ୍ରହଥାଏ ସେହି ସ୍ଥାନର ଦ୍ୱିତୀୟ, ଦ୍ୱାଦଶ, ଏକାଦଶ, ତୃତୀୟ, ଦଶମ ଏବଂ ଚତୁର୍ଥ ସ୍ଥାନରେ ଥିବା ଗ୍ରହମାନେ ପରସ୍ପର ତାଙ୍କାଳିକ ମିତ୍ର ହୁଅନ୍ତି । କୌଣସି କୌଣସ ଅଗ୍ରନ୍ଥୀ ଗ୍ରହର ଯେ ଉଚ୍ଚସ୍ଥାନ ସେଠାରେ ଥିବା ଗ୍ରହ ମଧ୍ୟ ଉଚ୍ଚସ୍ଥଗ୍ରହର ତାଙ୍କାଳିକ ମିତ୍ର ବୋଲି କହିଛନ୍ତି । ଅନ୍ୟ ସ୍ଥାନରେ ଥିବା ଗ୍ରହମାନେ ଶତ୍ରୁ ଅଟନ୍ତି । ନୈସର୍ଗିକ ମିତ୍ର ଗ୍ରହ ତାଙ୍କାଳିକ ମିତ୍ର ହେଲେ ଅଧିମିତ୍ର, ସମ ହୋଇଥିଲେ ମିତ୍ର, ଶତ୍ରୁ ହୋଇଥିଲେ ସମ ହୁଅନ୍ତି । ସମ ଗ୍ରହ ତାଙ୍କାଳିକ ଶତ୍ରୁ ହେଲେ ଶତ୍ରୁ. ଶତ୍ରୁହୋଇ ଶତ୍ରୁହେଲେ ଅଧିଶତ୍ରୁ ହୁଅନ୍ତି ।୧୮।

## ସ୍ଥାନବଳ ଓ ଦିଗ୍‌ବଳ ନିର୍ଣ୍ଣୟ

ସ୍ୱୋଚ୍ଚସୁହୃତ୍ସ୍ୱତ୍ରିକୋଣନବାଂଶୈଃ ସ୍ଥାନବଲଂ ସ୍ୱଗୃହୋପଗତୈଶ୍ଚ ।
ଦିକ୍ଷୁ ବୁଧାଙ୍ଗିରସୌ ରବିଭୌମୌ ସୂର୍ଯ୍ୟସୁତଃ ସିତଶୀତକରୌ ଚ ।୧୯।

ଗ୍ରହ ଉଚ୍ଚରେ, ମିତ୍ର ଗୃହରେ, ମୂଳତ୍ରିକୋଣରେ, ସ୍ୱଗୃହରେ, ସ୍ୱନ-ବାଂଶରେ ଥିଲେ ସ୍ଥାନବଳ ଯୁକ୍ତ ହୁଏ ।

ଲଗ୍ନରେ ବୁଧ ବା ବୃହସ୍ପତି ଥିଲେ ପୂର୍ବଦିଗ ବଳୀ ହୁଅନ୍ତି; ଦଶମରେ ରବି ବା ମଙ୍ଗଳ ଥିଲେ ଦକ୍ଷିଣଦିଗ ବଳୀ ହୁଅନ୍ତି; ସପ୍ତମରେ ଶନି ପଶ୍ଚିମ ବଳୀ ଅଟେ; ଚତୁର୍ଥରେ ଶୁକ୍ର ବା ଚନ୍ଦ୍ର ଥିଲେ ଉତ୍ତର ଦିଗରେ ବଳୀ ହୁଅନ୍ତି ।

ଗ୍ରହବଳ ଯେଉଁ ଦିଗରେ ଥାଏ ଜାତକ ସେହି ସେହି ଦିଗରୁ ଧନ ଓ ପ୍ରତିଷ୍ଠା ଲଭକରେ, ଯେ ଗ୍ରହ ଯେଉଁ ସ୍ଥାନରେ ବଳଯୁକ୍ତ ସେ ତାହାର ସପ୍ତମରେ ଦୁର୍ବଳ ଅଟେ ।୧୯।

## ବକ୍ର ଓ ଅସ୍ତାଦି ବଳ ନିରୂପଣ

ଉଦଗୟନେ ରବିଶୀତମୟୂଖୌ ବକ୍ରସମାଗମଗାଃ ପରଶେଷାଃ
ବିପୁଲକରାଯୁଧିଚୋତ୍ତରସଂସ୍ଥାଶ୍ଚେଷ୍ଟିତବୀର୍ଯ୍ୟଯୁତାଃପରିକଲ୍ପ୍ୟାଃ ।୨୦।

ରବି ଓ ଚନ୍ଦ୍ର ଉତ୍ତରାୟଣରେ; ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନି ବକ୍ରଗତି ଯୁକ୍ତ ହେଲେ ବା ଚନ୍ଦ୍ର ସହିତ ଯୁକ୍ତହେଲେ ବଳବାନ୍ ହୁଅନ୍ତି । ରବି ସହିତ ଯୁକ୍ତ ଗ୍ରହ ଅସ୍ତ ହୁଏ ଓ ଚନ୍ଦ୍ର ସହିତ ଯୁକ୍ତହେଲେ "ସମାଗମ" ବୋଲଯାଏ । ଅନ୍ୟଗ୍ରହ ମାନେ ମିଶିତ ହେଲେ "ଯୁଦ୍ଧ" ବୋଲଯାଏ । ସେମା-ନଙ୍କ ମଧ୍ୟରୁ ଯେ ଅଧିକ କିରଣ ଯୁକ୍ତ ଓ ଉତ୍ତର ଦିଗସ୍ଥ ସେ ଜୟୀ ହୁଏ ।୨୦।

## ଗ୍ରହମାନଙ୍କର କାଳବଳ

ନିଶି ଶଶିକୁଜସୌରାଃ ସର୍ବଦାଜ୍ଞୋଽହ୍ନି ଚାନ୍ୟେ
ବହୁଲସିତଗତାଃ ସୁଃ କ୍ରୂରସୌମ୍ୟାଃ କ୍ରମେଣ ।

ଦ୍ୟୁନଦିବସହୋରାମାସପୈଃ କାଲବୀର୍ଯ୍ୟଂ
ଶରୁବୁଗୁଶୁଚସାଦ୍ୟାବୃଦ୍ଧିତୋବୀର୍ଯ୍ୟବନ୍ତଃ ।୨୧।

**ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ଗ୍ରହଭେଦାଧ୍ୟାୟୋ ଦ୍ୱିତୀୟଃ ॥**

ଚନ୍ଦ୍ର, ମଙ୍ଗଳ ଓ ଶନି ରାତ୍ରି ବଳୀ । ବୁଧ ଦିନ ଓ ରାତ୍ର ଉଭୟରେ ବଳିଷ୍ଠ । ରବି, ଗୁରୁ, ଶୁକ୍ର ଦିବାବଳୀ, କୃଷ୍ଣପକ୍ଷରେ ପାପଗ୍ରହମାନେ ବଳବାନ୍, ଶୁକ୍ଳପକ୍ଷରେ ଶୁଭଗ୍ରହମାନେ ବଳଯୁକ୍ତ ହୁଅନ୍ତି ।

ଯେଉଁଗ୍ରହ ବର୍ଷର ଅଧିପତି ହୋଇଥାଏ ସେ ଗ୍ରହ ସେହି ବର୍ଷଯାକ ବଳଯୁକ୍ତ ହୁଏ । ଯେ ଗ୍ରହ ଯେ ଦିନର ଅଧିପତି (ବାରାଧିପ) ସେ ସେହି ଦିନକ ବଳଯୁକ୍ତ ହୁଏ । ହୋରାଧିପ ତଥା ମାସର ଅଧିପତି ମଧ୍ୟ କାଳବଳ ଯୁକ୍ତ ହୁଅନ୍ତି ।

ସ୍ଥାନବଳ ତଥା କାଳବଳାଦିରେ କ୍ରମଶଃ ଶନି, ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଚନ୍ଦ୍ର, ରବି ଉତ୍ତରୋତ୍ତର ବଳବାନ୍ ଅଟନ୍ତି । ଅର୍ଥାତ୍ ଶନି ଓ ମଙ୍ଗଳ ଏହି ବଳମାନଙ୍କରେ ଯୁକ୍ତ ହୋଇଥିଲେ ଶନିଠାରୁ ମଙ୍ଗଳର ବଳ ଅଧିକ, ଏହି କ୍ରମରେ ସମସ୍ତଙ୍କୁ ବୁଝିବେ ।୨୧।

**ଶ୍ରୀ ବରାହମିହିରକୃତ ବୃହଜ୍ଜାତକଗ୍ରନ୍ଥର ଗ୍ରହଭେଦ ନାମକ ଦ୍ୱିତୀୟ ଅଧ୍ୟାୟର 'ସୁବୋଧିନୀ' ଭାଷାଟୀକା ସମାପ୍ତ ହେଲା ।**



# ବିୟୋନିଜନ୍ମାଧ୍ୟାୟସ୍ତୃତୀୟଃ

## ଜନ୍ମ ତଥା ପ୍ରଶ୍ନକାଳରୁ ବିୟୋନି ଜନ୍ମ ନିରୂପଣ

କ୍ରୂରଗ୍ରହୈଃସୁବଳିଭିର୍ବିବଲୈଶ୍ଚ ସୌମ୍ୟୈଃ
କ୍ଲୀବେ ଚତୁଷ୍ଟୟଗତେତଦବେକ୍ଷଣାଦ୍‌ବା ।
ଚନ୍ଦ୍ରୋପଗଦ୍ୱିରସଭାଗସମାନରୂପଂ
ସତ୍ତ୍ୱଂବଦେଦ୍ୟଦି ଭବେତ୍ସବିୟୋନିସଂଜ୍ଞଃ । ୧ ।

ଜନ୍ମ କାଳିନ ବା ପ୍ରଶ୍ନକାଳିନ ଗ୍ରହସ୍ଥିତିରୁ ବିୟୋନି ଅର୍ଥାତ୍ ମନୁଷ୍ୟେ-ତର ଜୀବର ଜନ୍ମ ବୁଝାଯିବ । ସମସ୍ତ ପାପଗ୍ରହମାନେ ବଳଯୁକ୍ତ ଓ ଶୁଭ ଗ୍ରହମାନେ ନିର୍ବଳ ହେଲେ ବୁଧ ଓ ଶନି କେନ୍ଦ୍ରସ୍ଥାନରେ ଥିଲେ ବା ସେହି ସ୍ଥାନକୁ ଦେଖୁଥିଲେ ବିୟୋନି ଜନ୍ମ କହିବେ ।

ଚନ୍ଦ୍ର ପାପଗ୍ରହର ଦ୍ୱାଦଶାଂଶରେ ଥିବେ, ଶୁଭଗ୍ରହମାନେ ବଳହୀନ ହୋଇଥିଲେ, ଶନି ଓ ବୁଧ ଲଗ୍ନକୁ ଦେଖୁଥିଲେ ବିଯୋନି ଜନ୍ମ କହିବେ ।

ପୂର୍ବୋକ୍ତ ଚନ୍ଦ୍ର ଯେଉଁ ରାଶିରେ ଥିବେ ସେହିରାଶ୍ୟନୁରୂପ ଜନ୍ତୁ ଜାତ ହେବା ସମ୍ଭବ ବୋଲି କେହି କେହି ଆଚାର୍ଯ୍ୟ କହନ୍ତି ।୧।

ପାପା ବଳିନଃ ସ୍ୱଭାଗଗାଃ ପାରକ୍ୟେ ଶବଲାଶ୍ଚଶୋଭନାଃ
ଲଗ୍ନଞ୍ଚ ବିଯୋନି ସଂଜ୍ଞକଂ ଦୃଷ୍ଟ୍ୱାତ୍ରାପିବିଯୋନିମାଦିଶେତ୍ । ୨ ।

ବଳଯୁକ୍ତ ପାପଗ୍ରହ ନିଜ ନିଜ ନବାଂଶରେ, ନିର୍ବଳ ଶୁଭଗ୍ରହ ଅନ୍ୟ... ନବାଂଶରେ ଥିବେ, ବିଯୋନି ସଂଜ୍ଞକ ଲଗ୍ନ ଅର୍ଥାତ୍ ମେଷ, ବୃଷ, କର୍କଟ, ସିଂହ, ବୃଶ୍ଚିକ, ଧନୁର ଉତ୍ତରାର୍ଦ୍ଧ, ମକରର ପୂର୍ବାର୍ଦ୍ଧ ବା ମୀନ ଲଗ୍ନ ହୋଇଥିଲେ ଚନ୍ଦ୍ର ଏହି ଏହି ନବାଂଶରେ ଥିଲେ ବିଯୋନି ଜନ୍ମ ସମ୍ଭବ ହୁଏ ।୨।

## ଚତୁଷ୍ପଦ ରାଶିମାନଙ୍କର ଅଙ୍ଗବିଭାଗ

କ୍ରିୟଃଶିରୋବକ୍ତ୍ରଗଳୋବୃଷୋଽନ୍ୟେ ପାଦାଂସକଂପୃଷ୍ଠମୁରୋଽଥପାର୍ଶ୍ୱେ ।
କୁକ୍ଷିସ୍ତ୍ୱପାନାଂଘ୍ର୍ୟଥ ମେଢ୍ରମୁଷ୍କୌ ସ୍ଫିକ୍‌ପୁଚ୍ଛମିତ୍ୟାହ ଚତୁଷ୍ପଦାଙ୍ଗେ । ୩ ।

ମନୁଷ୍ୟର ଅଙ୍ଗବିଭାଗ କାଳପୁରୁଷ ବିଭାଗରେ ବର୍ଣ୍ଣିତ ଅଛି । ଏଠାରେ ଚତୁଷ୍ପଦ ଜୀବମାନଙ୍କର ଅଙ୍ଗ ବିଭାଗ ବର୍ଣ୍ଣିତ ହେବ । ମେଷ ଚତୁଷ୍ପଦମାନଙ୍କର ମସ୍ତକ, ବୃଷ ମୁଖ ବା ଗଳପ୍ରଦେଶ, ମିଥୁନ ଆଗପାଦ ଓ କାନ୍ଧ, କର୍କଟ ପୃଷ୍ଠଭାଗ, ବକ୍ଷବିଭାଗରେ ସିଂହ, ଉଭୟ ପାର୍ଶ୍ୱରେ କନ୍ୟା, ତୁଳା ଉଭୟ କକ୍ଷ, ଗୁହ୍ୟସ୍ଥଳରେ ବୃଶ୍ଚିକ, ପଛପାଦରେ ଧନୁ, ଲିଙ୍ଗ ତଥା ଅଣ୍ଡକୋଷରେ ମକର, ପଛଭାଗ କୁମ୍ଭ ଓ ଲାଙ୍ଗୁଳ ମୀନ ରାଶିର ସ୍ଥାନ ରୂପରେ କଳ୍ପିତ ।୩।

## ବିଯୋନି ବର୍ଣ୍ଣଜ୍ଞାନ

ଲଗ୍ନାଂଶକାଦ୍‌ଗ୍ରହଯୋଗେକ୍ଷଣାଦ୍‌ବାବର୍ଣ୍ଣାନ୍‌ବଦେଦ୍‌ବଲଯୁକ୍ତାଦ୍‌ବିଯୋନୌ ।
ଦୃଷ୍ଟ୍ୟାସମାନାନ୍‌ପ୍ରବଦେତ୍ସ୍ୱସଂଖ୍ୟୟା ରେଖାଂବଦେତ୍‌ସ୍ମରସଂଶ୍ଲିଷ୍ଟପୃଷ୍ଠେ । ୪ ।

ଲଗ୍ନରେ ଯେ ଗ୍ରହଥିବ ତାହାର ବର୍ଣ୍ଣ ଏହି ଜୀବର ହେବ । ଲଗ୍ନରେ ଗ୍ରହ ନଥିଲେ ଯେଉଁଗ୍ରହ ଲଗ୍ନକୁ ବିଶେଷ ଭାବେ ଦେଖୁଥାଏ ତାହାର ବର୍ଣ୍ଣ କହିବେ । ଲଗ୍ନରେ ଗ୍ରହ ନଥିବେ ବା ଦେଖୁନଥିବେ ତେବେ ଲଗ୍ନ ନବାଂଶ-ତୁଲ୍ୟ ବର୍ଣ୍ଣ କହିବେ । ବହୁଗ୍ରହ ଲଗ୍ନରେ ଥିଲେ ବା ଲଗ୍ନକୁ ଦେଖୁଥିଲେ ସମସ୍ତଙ୍କଠାରୁ ଯେ ବଳବାନ୍ ତାହାର ବର୍ଣ୍ଣ ବା ସମବଳ ହେଲେ ବହୁବର୍ଣ୍ଣ

କହିବେ । ସପ୍ତମ ସ୍ଥାନରେ ଯେ ଗ୍ରହ ସମସ୍ତଙ୍କ ଠାରୁ ବଳଯୁକ୍ତ ତାହାର ବର୍ଣ୍ଣର ରେଖା ଏହି ଜନ୍ତୁର ପିଠିରେ ଥିବା କହିବେ ।୪।

## ପକ୍ଷୀ ଜନ୍ମ ଜ୍ଞାନ

ଖଗେ ଦୃକାଣେ ବଲସଂଯୁତେନ ବା ଗ୍ରହେଣଯୁକ୍ତେ ଚରଭାଂଶକୋଦୟେ ।
ବୁଧାଂଶକେବା ବିହଗାଃସ୍ଥଲାମ୍ବୁଜାଃ ଶନୈଶ୍ଚରେନ୍ଦ୍ୱୀକ୍ଷଣଯୋଗସମ୍ଭବାଃ ।୫।

ପକ୍ଷୀ ଦ୍ରେକ୍କାଣ (ମିଥୁନର ଦ୍ୱିତୀୟ ଦ୍ରେକ୍କାଣ, ସିଂହର ପ୍ରଥମ, ତୁଳାର ଦ୍ୱିତୀୟ ଓ କୁମ୍ଭର ପ୍ରଥମ) ଲଗ୍ନରେ ହେଲେ ଶନି ବା ଚନ୍ଦ୍ର ଯୁକ୍ତ ବା ଦୃଷ୍ଟ ହେଲେ ପକ୍ଷୀ ଜାତ କହିବେ ।

ଲଗ୍ନ ଚରରାଶିର ନବାଂଶରେ ହୋଇଥିବ, ଚନ୍ଦ୍ର ଓ ଶନି ଦେଖୁଥିବେ, ବା ସେଥିରେ ଥିବେ ତେବେ ପକ୍ଷୀଜନ୍ମ ହେବ ।

ଲଗ୍ନ ବୁଧର ନବାଂଶରେ ହେବ, ତହିଁରେ ଶନି ଓ ଚନ୍ଦ୍ର ଥିବେ ବା ଦେଖୁଥିବେ ତେବେ ପକ୍ଷୀଜନ୍ମ ହେବ । ଏସମସ୍ତ ଯୋଗରେ ଶନିଯୁକ୍ତ ତଥା ଶନି ଦୃଷ୍ଟି ଫଳରେ ସ୍ଥଳଚର ପକ୍ଷୀ ଏବଂ ଚନ୍ଦ୍ରଯୁକ୍ତ ବା ଦୃଷ୍ଟି ଫଳରେ ଜଳଚର ପକ୍ଷୀ ଜାତ ବୋଲି ସ୍ଥିର କରିବେ ।୫।

## ବୃକ୍ଷଜନ୍ମ ଜ୍ଞାନ

ହୋରେନ୍ଦୁସୂରିରବିଭିର୍ବିବଲୈସ୍ତରୂଣାଂ
ତୋୟସ୍ଥଲେତରୁଭବୋଂଶକୃତଃ ପ୍ରଭେଦଃ ।
ଲଗ୍ନାଦ୍‌ଗ୍ରହଃ ସ୍ଥଲଜଲର୍କ୍ଷପତିସ୍ତୁ ଯାବାଂ
ସ୍ତାବନ୍ତ ଏବ ତରବଃସ୍ଥଲତୋୟଜାତାଃ ।୬।

ପ୍ରଶ୍ନ କାଳରେ ଲଗ୍ନ, ଚନ୍ଦ୍ର, ଗୁରୁ ଏବଂ ରବି ନିର୍ବଳ ହେଲେ ବୃକ୍ଷଜାତହେବା କହିବେ । ଜଳଚର ରାଶିର ନବାଂଶରେ ଲଗ୍ନ ଥିଲେ ଜଳରେ ଏବଂ ସ୍ଥଳଚର ରାଶିର ନବାଂଶରେ ଲଗ୍ନଥିଲେ ସ୍ଥଳରେ ବୃକ୍ଷଜାତ ହେବା କହିବେ ।

ଲଗ୍ନଠାରୁ ଏହି ନବାଂଶର ଅଧିପତିମାନେ ଯେତେ ସ୍ଥାନ (ରାଶି)ରେ ଥିବେ ସେତିକି ବୃକ୍ଷଜାତ ହେବା କହିବେ, ନବାଂଶପତି ଉଚ୍ଚରେ ଥିଲେ ସ୍ଥାନ ସଂଖ୍ୟାର ଦୁଇ ଗୁଣ କହିବେ ।୬।

## ଜଳନିର୍ଜଳ ବୃକ୍ଷ ବିଶେଷ ନିର୍ଣ୍ଣୟ

ଅନ୍ତଃସାରାଃଞ୍ଜନୟତି ରବିର୍ଦୁର୍ଭଗାନ୍ ସୂର୍ଯ୍ୟସୂନୁଃ
କ୍ଷୀରୋପେତାଂସ୍ତୁହିନକିରଣଃ କଣ୍ଟକାଢ୍ୟାଂଶ୍ଚଭୌମଃ

ବାଗୀଶଜ୍ଞୌ ସଫଲବିଫଲାନ୍ ପୁଷ୍ପବୃକ୍ଷାଂଶ୍ଚ ଶୁକ୍ରଃ
ସ୍ନିଗ୍ଧାନିନ୍ଦୁଃ କଟୁକବିଟପାନ୍ ଭୂମିପୁତ୍ରଶ୍ଚ ଭୂୟଃ ।୭।

ପୂର୍ବକଥିତ ନବାଂଶର ଅଧିପତି ରବି ହେଲେ ଅନ୍ତଃସାର ଯୁକ୍ତ (ଶିଶୁଅ, ଶାଳୁଆ ପ୍ରଭୃତି) ବୃକ୍ଷ ସମ୍ଭବ ହୁଏ । ଶନି ହେଲେ ଦୁର୍ଭଗ (କୁଶ, ତଣ୍ଡା, ଶର) ବୃକ୍ଷ; ଚନ୍ଦ୍ର ହେଲେ କ୍ଷୀରଯୁକ୍ତ ବୃକ୍ଷ, ମଙ୍ଗଳ ହେଲେ କଣ୍ଟକ ବୃକ୍ଷ, ଗୁରୁହେଲେ ଫଳପ୍ରଦ ବୃକ୍ଷ (ଆମ୍ର ପନସାଦି) ବୁଧ ହେଲେ ଫଳହୀନ ବୃକ୍ଷ, ଶୁକ୍ରହେଲେ ପୁଷ୍ପବୃକ୍ଷ, ଜାତ ହୁଅନ୍ତି । ଚନ୍ଦ୍ର ସ୍ନିଗ୍ଧ ବୃକ୍ଷକାରକ ଓ ମଙ୍ଗଳ କଟୁକ (ଭାଲିଆ ପ୍ରଭୃତି) ଫଳ ବୃକ୍ଷର କାରକ ।୭।

## ବୃକ୍ଷଜାତି ସ୍ଥାନ ଓ ସଂଖ୍ୟା ବିଚାର

ଶୁଭୋଽଶୁଭର୍କ୍ଷେ ରୁଚିରଂ କୁଭୂମିଜଂ କରୋତି ବୃକ୍ଷଂ ବିପରୀତମନ୍ୟଥା ।
ପରାଂଶକେ ଯାବତି ବିଚ୍ୟୁତଃସ୍ୱକାଦ୍ଭବନ୍ତି ତୁଲ୍ୟାସ୍ତରବସ୍ତଥାବିଧାଃ ।୮।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ବିୟୋନିଜନ୍ମାଧ୍ୟାୟସ୍ତୃତୀୟଃ ॥

ଏହି ନବାଂଶର ଅଧିପତି ଶୁଭଗ୍ରହ ହେଲେ ଓ ପାପଗ୍ରହର ଗୃହରେ ଥିଲେ ମନ୍ଦସ୍ଥାନରେ ବୃକ୍ଷ ଉଠିଥାଏ । ନବାଂଶପତି ପାପଗ୍ରହ ହୋଇ ଶୁଭଗ୍ରହ ଗୃହରେ ଥିଲେ ଉତ୍ତମ ଭୂମିରେ ବୃକ୍ଷ ହୁଏ । ଶୁଭଗ୍ରହ ହୋଇ ଶୁଭଗ୍ରହ ଗୃହରେ ଥିଲେ ଉତ୍ତମ ସ୍ଥାନ ଓ ପାପଗ୍ରହ ହୋଇ ପାପଗ୍ରହର ଗୃହରେ ଥିଲେ ମନ୍ଦ ସ୍ଥାନରେ ବୃକ୍ଷ ଜାତ କହିବେ ।

ନବାଂଶ ଅଧିପତି ଆପଣାନବାଂଶଠାରୁ ଯେତିକି ନବାଂଶ ଦୂରରେ ଥିବ ସେତିକି ସଂଖ୍ୟା ବୃକ୍ଷ ଜାତ କଥା କହିବେ ।

ବୃହଜ୍ଜାତକର ବିୟୋନିଜନ୍ମାଧ୍ୟାୟ ନାମକ ତୃତୀୟ ଅଧ୍ୟାୟର
'ସୁବୋଧିନୀ' ଭାଷା ଟୀକା ସମାପ୍ତ ହେଲା ।୮।

---

# ନିଷେକାଧ୍ୟାୟଶ୍ଚତୁର୍ଥଃ

## ଗର୍ଭଧାରଣ ଯୋଗ୍ୟ ଋତୁକାଳ ନିର୍ଣ୍ଣୟ

କୁଜେନ୍ଦୁହେତୁ ପ୍ରତିମାସମାର୍ତ୍ତବଂ ଗତେତୁ ପୀଡ଼ର୍କ୍ଷମନୁଷ୍ଣଦୀଧିତୌ ।
ଅତୋଽନ୍ୟଥାସ୍ଥେ ଶୁଭପୁଂଗ୍ରହେକ୍ଷିତେ ନରେଣ ସଂଯୋଗମୁପୈତି କାମିନୀ ।୧।

ସ୍ତ୍ରୀମାନଙ୍କର ମାସିକ ରକ୍ତ ପ୍ରବର୍ତ୍ତନ ନିମନ୍ତେ ଚନ୍ଦ୍ର ଓ ମଙ୍ଗଳ କାରଣ ଅଟନ୍ତି । ଚନ୍ଦ୍ର ଜଳରୂପକ (ରକ୍ତ) ମଙ୍ଗଳ ଅଗ୍ନି ରୂପକ (ପିତ୍ତ ସ୍ୱରୂପ) ଅଟନ୍ତି । ପିତ୍ତ ଦ୍ୱାରା ରକ୍ତ କ୍ଷୁଭିତ ହେଲେ ରଜୋଦର୍ଶନ ହୁଏ ।

ସ୍ତ୍ରୀର ଜନ୍ମ ରାଶିଠାରୁ ଚନ୍ଦ୍ର ତୃତୀୟ, ଷଷ୍ଠ, ଦଶମ ଓ ଏକାଦଶ ସ୍ଥାନ ଛଡ଼ା ଅନ୍ୟରାଶିରେ ଥାଇ ମଙ୍ଗଳର ଦୃଷ୍ଟିରେ ଥିଲେ ଯେ ରଜୋଦର୍ଶନ ହେବ ତାହା ଗର୍ଭଧାରଣ ନିମନ୍ତେ ଉପଯୁକ୍ତ ଅଟେ ।

ପୁରୁଷର ଜନ୍ମ ରାଶିଠାରୁ ଚନ୍ଦ୍ର ତୃତୀୟ, ଷଷ୍ଠ, ଦଶମ ବା ଏକାଦଶ ସ୍ଥାନରେ ଥିଲେ ଓ ତାକୁ ଶୁଭ ପୁରୁଷ ଗ୍ରହ (ଗୁରୁ) ଦେଖିଲେ ସ୍ତ୍ରୀ ଓ ପୁରୁଷଙ୍କ ମିଳନ ଘଟେ ।୧।

## ଗର୍ଭାଧାନ ଲଗ୍ନର ଫଳ କଥନ

ଯଥାସ୍ତରାଶିମିଥୁନଂ ସମେତି ତଥୈବ ବାଚ୍ୟୋ ମିଥୁନପ୍ରୟୋଗଃ ।
ଅସଦ୍‌ଗ୍ରହାଲୋକିତସଂଯୁତେଽସ୍ତେ ସରୋଷଇଷ୍ଟୈଃସବିଲାସହାସଃ ।୨।

ଗର୍ଭାଧାନକାଳୀନ ଲଗ୍ନର ସପ୍ତମ ସ୍ଥାନରେ ଯେ ରାଶି ସେହି ଜୀବ ତୁଲ୍ୟ ମୈଥୁନ ପୁରୁଷ ସ୍ତ୍ରୀ କରିଥାନ୍ତି ।

ଆଧାନ ଲଗ୍ନର ସପ୍ତମ ସ୍ଥାନ ପାପଗ୍ରହ ଯୁକ୍ତ ବା ପାପଦୃଷ୍ଟ ହେଲେ କ୍ରୋଧ, କଳହ ବା ବଳ ପ୍ରୟୋଗ ହେତୁ ସେହି ମୈଥୁନ କର୍ମ ସମାହିତ ହୋଇଥାଏ ।

ଏହି ଲଗ୍ନର ସପ୍ତମ ସ୍ଥାନ ଶୁଭଗ୍ରହ ଯୁକ୍ତ ତଥା ଦୃଷ୍ଟ ହେଲେ ହାସ୍ୟ, ବିଳାସ ସହିତ ରତିକ୍ରିୟା ସଂଘଟିତ ହୁଏ ।୨।

## ଗର୍ଭର ସ୍ଥିତି ଜ୍ଞାନ

ରବୀନ୍ଦୁଶୁକ୍ରାବନିଜୈଃ ସ୍ୱଭାଗଗୈର୍ଗୁରୌ ତ୍ରିକୋଣୋଦୟସଂସ୍ଥିତେଽପିବା ।
ଭବତ୍ୟପତ୍ୟଂ ହି ବିବୀଜିନାମିମେ କରା ହିମାଂଶୋର୍ବିଦୃଶାମିବା ଫଳାଃ ।୩।

ଗର୍ଭାଧାନ କାଳରେ ରବି, ଚନ୍ଦ୍ର, ଶୁକ୍ର ଏବଂ ମଙ୍ଗଳ ନିଜ ନିଜର ନବାଂଶରେ ଥିଲେ ଗର୍ଭସ୍ଥିତି ହୁଏ । ଗୁରୁ ନବମ, ପଞ୍ଚମ ତଥା ଲଗ୍ନରେ ଥିଲେ ଗର୍ଭସମ୍ଭବ ହୁଏ । ଉପର୍ଯୁକ୍ତ ଯୋଗଥିବା ସତ୍ତ୍ୱେ ବୀଜହୀନ ( ନପୁଂସକ ପୁରୁଷ ବା ବନ୍ଧ୍ୟା ଦୋଷ ଯୁକ୍ତା ସ୍ତ୍ରୀ ) ସମ୍ଭୋଗ ଗର୍ଭସ୍ଥିତି ଘଟାଇ ନପାରେ । ଯେପରି କି ଚନ୍ଦ୍ର କିରଣ ସତ୍ତ୍ୱେ ଅନ୍ଧ ଦେଖିବା ଅସମ୍ଭବ ହୁଏ, ସେହିପରି ଏହି ସମ୍ଭୋଗ ବିଫଳ ହୁଏ ।

## ଗର୍ଭାଧାନ କାଳଠାରୁ ପ୍ରସବ ପର୍ଯ୍ୟନ୍ତ ଫଳ

ଦିବାକରେନ୍ଦ୍ୱୋଃ ସ୍ମରଗୌ କୁଜାର୍କଜୌ ଗଦପ୍ରଦୌ ପୁଂଗଲଯୋଷିତୋସ୍ତଦା ।
ବ୍ୟୟସ୍ୱଗୌ ମୃତ୍ୟୁକରୌ ଯୁତୌ ତୌ ତଥୈକଦୃଷ୍ଟ୍ୟା ମରଣାୟ କଳ୍ପିତୌ ।୪।

ଆଧାନ କାଳରେ ରବି ଓ ଚନ୍ଦ୍ରର ସପ୍ତମ ସ୍ଥାନରେ ମଙ୍ଗଳ ଏବଂ ଶନି ଥିଲେ ଯଥାକ୍ରମରେ ପୁରୁଷ ଓ ସ୍ତ୍ରୀର କଷ୍ଟଭୋଗ ହୁଏ ଅର୍ଥାତ୍ ରବିର ସପ୍ତମରେ ମଙ୍ଗଳ ବା ଶନି ଥିଲେ ପୁରୁଷର, ଚନ୍ଦ୍ରର ସପ୍ତମରେ ମଙ୍ଗଳ ବା ଶନି ଥିଲେ ସ୍ତ୍ରୀର ପୀଡ଼ା ହୁଏ ।

ରବିର ଦ୍ୱିତୀୟ ବା ଦ୍ୱାଦଶରେ ମଙ୍ଗଳ ବା ଶନି ଥିଲେ ବା ରବିକୁ ଦେଖିଲେ ପୁରୁଷର ମୃତ୍ୟୁ ଘଟେ । ଚନ୍ଦ୍ରର ଦ୍ୱିତୀୟ ବା ଦ୍ୱାଦଶରେ ମଙ୍ଗଳ ବା ଶନି ଥିଲେ ବା ଚନ୍ଦ୍ରକୁ ଦେଖିଲେ ସ୍ତ୍ରୀର ମୃତ୍ୟୁ ଘଟେ ।୪।

## ପିତା, ମାତା ଇତ୍ୟାଦିଙ୍କର ଶୁଭାଶୁଭଜ୍ଞାନ

ଦିବାର୍କଶୁକ୍ରୌ ପିତୃମାତୃସଂଜ୍ଞିତୌ ଶନୈଶ୍ଚରେନ୍ଦୂ ନିଶି ତଦ୍ୱିପର୍ଯ୍ୟୟାତ୍
ପିତୃବ୍ୟମାତୃଷ୍ୱସୃସଂଜ୍ଞିତୌ ଚ ତାବଥୌଜଯୁଗ୍ମର୍କ୍ଷଗତୌ ତୟୋଃ ଶୁଭୌ ।୫।

ଦିବସରେ ଗର୍ଭାଧାନ ଘଟିଲେ ବା ଦିବାଜାତ ହେଲେ ସେହି ଜାତକର ରବି ପିତୃ ସଂଜ୍ଞକ ଏବଂ ଶୁକ୍ର ମାତୃସଂଜ୍ଞକ ଅଟନ୍ତି; ରାତ୍ରିରେ ଜନ୍ମ ତଥା ଗର୍ଭାଧାନ ଘଟିଲେ ଶନି ପିତୃସଂଜ୍ଞକ ଓ ଚନ୍ଦ୍ର ମାତୃସଂଜ୍ଞକ ହୁଅନ୍ତି । ଦିବସରେ ଗର୍ଭାଧାନ ବା ଜନ୍ମହେଲେ ଶନି ପିତୃବ୍ୟ (ବାପାର ଭାଇ) ଓ ଚନ୍ଦ୍ର ମାତୃଷ୍ୱସା (ମାଉସୀ) ସଂଜ୍ଞା ପ୍ରାପ୍ତ ହୁଅନ୍ତି, ରାତ୍ରିହେଲେ ରବି ପିତୃବ୍ୟ, ଶୁକ୍ର ମାତୃଷ୍ୱସା ହୋଇ ଥାନ୍ତି ।

ପିତୃ ତଥା ପିତୃବ୍ୟ ସଂଜ୍ଞକ ଗ୍ରହମାନେ ବିଷମରାଶିରେ ଓ ମାତୃ ତଥା ମାତୃଷ୍ୱସା ସଂଜ୍ଞକ ଗ୍ରହମାନେ ସମରାଶିରେ ଥିଲେ ଏହି ଏହି ମାନଙ୍କର ମଙ୍ଗଳ ଘଟିଥାଏ ।୫।

## ଗର୍ଭିଣୀର ମରଣ ଯୋଗ

ଅଭିଲଗ୍ନଭିର୍ବୁଦୟର୍କ୍ଷମସଦ୍ଭିର୍ମରଣମେତି ଶୁଭଦୃଷ୍ଟିମହୃତେ
ଉଦୟରାଶିସହିତେ ଚ ଯମେ ସ୍ତ୍ରୀ ବିଗଳିତୋଡୁପତିଭୂସୁତଦୃଷ୍ଟେ ।୬।

ଆଧାନ ଲଗ୍ନର ଯେ ରାଶି ସେ ରାଶିକୁ ପାପଗ୍ରହ ପ୍ରବେଶ କରିବା ଉଦ୍ୟମରେ ଥିଲେ ଅର୍ଥାତ୍ ଦ୍ୱାଦଶ ରାଶିର ଶେଷଭାଗରେ ପାପଗ୍ରହ ଥିଲେ, କୌଣସି ଶୁଭଗ୍ରହ ଲଗ୍ନକୁ ନଦେଖୁଥିଲେ ଗର୍ଭିଣୀର ମରଣ ଘଟେ । ଶନି ଗର୍ଭାଧାନ

ଲଗ୍ନରେ ଥିବେ ଓ କ୍ଷୀଣଚନ୍ଦ୍ର କିମ୍ବା ମଙ୍ଗଳ ତାଙ୍କୁ ଦେଖୁଥିବେ ତେବେ ଗର୍ଭିଣୀର ମୃତ୍ୟୁ ଘଟିବ ।୬।

ପାପଦ୍ୱୟମଧ୍ୟ ସଂସ୍ଥିତୌ ଲଗ୍ନେନ୍ଦୂ ନଚସୌମ୍ୟବୀକ୍ଷିତୌ
ଯୁଗପତ୍ପୃଥଗେବ ବା ବଦେନ୍ନାଶଂଗର୍ଭଯୁତା ସଂପଦ୍ୟତେ ।୭।

ଲଗ୍ନ ତଥା ଚନ୍ଦ୍ର ପାପଗ୍ରହମାନଙ୍କ ମଧ୍ୟରେ ଥିବେ, ଶୁଭଗ୍ରହ ଏମାନଙ୍କୁ ଦେଖୁନଥିବେ ତେବେ ଗର୍ଭିଣୀର ବିନାଶ ଘଟିବ । ଲଗ୍ନରେ ଚନ୍ଦ୍ର ଥାଇ ପାପ ମଧ୍ୟଗତ ହେଲେ ମଧ୍ୟ ଏହି ଦୋଷ ହେବ ।୭।

କ୍ରୂରେ ଶଶିନଶ୍ଚତୁର୍ଥଗେ ଲଗ୍ନାଦ୍ୱା ନିଧନାଶ୍ରିତେ କୁଜେ
ବନ୍ଧ୍ୱନ୍ତ୍ୟଗୟୋଃ କୁଜାର୍କୟୋଃ କ୍ଷୀଣେନ୍ଦୌ ନିଧନାୟ ପୂର୍ବବତ୍ ।୮।

ପାପଗ୍ରହମାନେ ଚନ୍ଦ୍ରର ଚତୁର୍ଥରେ ଥିବେ, ଓ ମଙ୍ଗଳ ଅଷ୍ଟମ ସ୍ଥାନରେ ଥିଲେ ଗର୍ଭିଣୀର ମରଣ ଘଟେ । ଲଗ୍ନର ଚତୁର୍ଥରେ ପାପଗ୍ରହ ଓ ଅଷ୍ଟମରେ ମଙ୍ଗଳ ଥିଲେ ଏହି ଦୋଷ ଘଟେ । ଲଗ୍ନର ଚତୁର୍ଥରେ ମଙ୍ଗଳ, ଦ୍ୱାଦଶରେ ରବି ଥିଲେ ଓ ଚନ୍ଦ୍ର କ୍ଷୀଣ ହୋଇଥିଲେ ଏହି ଦୁର୍ଯୋଗ ଘଟି ଥାଏ ।୮।

ଉଦୟାସ୍ତଗୟୋଃ କୁଜାର୍କୟୋର୍ନିଧନଂ ଶସ୍ତ୍ରକୃତଂ ବଦେତ୍ତଥା
ମାସାଧିପତୌ ନିପୀଡ଼ିତେ ତତ୍କାଳଂ ସ୍ରବଣଂ ସମାଦିଶେତ୍ ।୯।

ଗର୍ଭାଧାନକାଳୀନ ଲଗ୍ନରେ ମଙ୍ଗଳ ଓ ସପ୍ତମ ସ୍ଥାନରେ ରବି ଥିଲେ ଗର୍ଭିଣୀ ଶସ୍ତ୍ରଘାତରେ ମରିଥାଏ । ଗର୍ଭର ମାସାଧିପତି ଅନ୍ୟଗ୍ରହ ଦ୍ୱାରା ପୀଡ଼ିତ ବା ପରାଜିତ ହେଲେ ଗର୍ଭସ୍ରାବ ଘଟେ । ଷୋଡ଼ଶ ଶ୍ଳୋକରେ ମାସାଧିପତି ଦେଖନ୍ତୁ ।

## ଗର୍ଭପୁଷ୍ଟି ବିଚାର

ଶଶାଙ୍କଲଗ୍ନୋପଗତୈଃ ଶୁଭଗ୍ରହୈ-
ସ୍ତ୍ରିକୋଣଜାୟାର୍ଥସୁଖାସ୍ପଦସ୍ଥିତୈଃ
ତୃତୀୟଲାଭର୍କ୍ଷଗତୈଶ୍ଚ ପାପକୈଃ
ସୁଖୀ ତୁ ଗର୍ଭୋ ରବିଣା ନିରୀକ୍ଷିତଃ ।୧୦।

ଲଗ୍ନରେ ବା ଚନ୍ଦ୍ର ସହିତରେ ଶୁଭଗ୍ରହ ଥିବେ କିମ୍ବା ଲଗ୍ନ ବା ଚନ୍ଦ୍ରର ପଞ୍ଚମ, ନବମ, ସପ୍ତମ, ଦ୍ୱିତୀୟ, ଚତୁର୍ଥ ଏବଂ ଦଶମରେ ଶୁଭଗ୍ରହ ଥିବେ; ଲଗ୍ନ ବା ଚନ୍ଦ୍ରର ତୃତୀୟ, ଏକାଦଶରେ ଯଦି ପାପଗ୍ରହ ଥିବେ, ଲଗ୍ନ ବା ଚନ୍ଦ୍ରକୁ ଯଦି ରବି ଦେଖୁଥିବେ ତେବେ [illegible] ପୁଷ୍ଟି କହିବେ ।

ଚନ୍ଦ୍ର ଓ ଲଗ୍ନ ଉଭୟଙ୍କ ସପ୍ତମ ବା ଉଭୟଙ୍କ ଠାରୁ କଥିତ ସ୍ଥାନରେ ଶୁଭଗ୍ରହ ଯଦି ଥିବେ ଓ ରବି ଚନ୍ଦ୍ର ତଥା ଲଗ୍ନ ଉଭୟଙ୍କୁ ଦେଖିଲେ ମଧ୍ଯ ଏ ଯୋଗ ହେବ ।୧୦।

## ପୁତ୍ରକନ୍ୟା ତଥା ଯମଳଜାତ ନିର୍ଣ୍ଣୟ

ଓଜର୍କ୍ଷେ ପୁରୁଷାଂ ଶକେଷୁବଲିଭିର୍ଲଗ୍ନାର୍କ ଗୁର୍ବିନ୍ଦୁଭିଃ
ପୁଂଜନ୍ମପ୍ରବଦେତ୍ସମାଂଶକଗତୈର୍ୟୁଗ୍ମେଷୁ ତୈର୍ୟୋଷିତଃ ।
ଗୁର୍ବର୍କୌ ବିଷମେ ନରଂ ଶଶିସିତୌ ବକ୍ରଶ୍ଚଯୁଗ୍ମେସ୍ତ୍ରିୟଂ
ଦ୍ୱ୍ୟଙ୍ଗସ୍ଥା ବୁଧବୀକ୍ଷଣାଚ୍ଚ ଯମଳୌ କୁର୍ବନ୍ତି ପକ୍ଷେସ୍ୱକେ ।୧୧।

ଗର୍ଭାଧାନ ବା ପ୍ରଶ୍ନକାଳୀନ ଲଗ୍ନ, ରବି, ଗୁରୁ ଏବଂ ଚନ୍ଦ୍ର ବିଷମରାଶିରେ ଥିଲେ ବା ବିଷମ ରାଶିର ନବାଂଶରେ ଥିଲେ ପୁତ୍ର ଗର୍ଭସ୍ଥ ହେବା, ଜାଣିବେ, ଏମାନେ ସମରାଶିରେ ବା ସମରାଶିର ନବାଂଶରେ ଥିଲେ କନ୍ୟା ଗର୍ଭସ୍ଥ ହେବା କହିବେ ।

ବଳବାନ୍ ରବି ଓ ଗୁରୁ ବିଷମ ରାଶିରେ ଥିଲେ ପୁତ୍ର; ବଳବାନ୍ ଚନ୍ଦ୍ର, ଶୁକ୍ର ଏବଂ ମଙ୍ଗଳ ସମ ରାଶିରେ ଥିଲେ କନ୍ୟା ଗର୍ଭଗତ ବୋଲି କହିବେ ।

ରବି, ଗୁରୁ, ଶୁକ୍ର, ଚନ୍ଦ୍ର, ମଙ୍ଗଳ ଦ୍ୱିସ୍ୱଭାବ ରାଶିରେ ବା ସେହି ରାଶି ନବାଂଶରେ ଥିଲେ, ବୁଧର ଦୃଷ୍ଟିରେ ଥିଲେ ଯମଳ ସନ୍ତାନ ଗର୍ଭରେ ଥିବେ ।

ରବି, ବୃହସ୍ପତି ଏମାନେ ବିଷମ ଦ୍ୱିସ୍ୱଭାବ (ମିଥୁନ, ଧନୁ) ରାଶିରେ ଥାଇ ବୁଧଦୃଷ୍ଟ ହେବେ; ତେବେ ଦୁଇଟି ବାଳକ ଓ ଶୁକ୍ର, ଚନ୍ଦ୍ର, ମଙ୍ଗଳ ସମ ଦ୍ୱିସ୍ୱଭାବ (କନ୍ୟା, ମୀନ) ରାଶିରେ ଥାଇ ବୁଧଦ୍ୱାରା ଦୃଷ୍ଟହେଲେ ଦୁଇଟି କନ୍ୟା ଜାତହେବେ ।

ଉଭୟ ପ୍ରକାର ଦ୍ୱିସ୍ୱଭାବ ରାଶିରେ ଉଭୟ ଜାତିର ଗ୍ରହଥିଲେ (ପୁରୁଷ-କାରକ ତଥା ସ୍ତ୍ରୀ କାରକ) ବୁଧ ଦୃଷ୍ଟ ହେଉଥିଲେ ଗୋଟିଏ ପୁତ୍ର ଓ ଅପରଟି କନ୍ୟା ଗର୍ଭସ୍ଥିତ ବା ପ୍ରସବ ହେବା କହିବେ ।୧୧।

ଦ୍ର:—ବୁଧ ରବିଙ୍କୁ ଦେଖିବା ସମ୍ଭବ ନୁହେଁ, ତେଣୁ ଏ ପ୍ରମାଣ ରବିଙ୍କ ବୁଧ ନଦେଖିଲେ ମଧ୍ଯ ହେବ ।

## ପୁତ୍ରଜନ୍ମ ଯୋଗ

ବିହାୟ ଲଗ୍ନଂ ବିଷମର୍କ୍ଷସଂସ୍ଥଃ ସୌରୋଽପି ପୁଂଜନ୍ମକରୋ ବିଲଗ୍ନାତ୍
ପ୍ରୋକ୍ତଗ୍ରହାଣାମବଲୋକ୍ୟ ବୀର୍ଯଂ ବାଚ୍ୟଃ ପ୍ରସୂତୌ ପୁରୁଷୋଽଙ୍ଗନାବା ।୧୨।

ଗର୍ଭାଧାନକାଳରେ ଅଥବା ପ୍ରଶ୍ନକାଳରେ ଲଗ୍ନଛଡ଼ା ବିଷମ ସ୍ଥାନ ମାନଙ୍କରେ ଅର୍ଥାତ୍ ତୃତୀୟ, ପଞ୍ଚମ, ସପ୍ତମ, ନବମ ବା ଏକାଦଶରେ ଶନି ଥିଲେ ପୁତ୍ର ଜନ୍ମହୁଏ, ଅନ୍ୟ ସ୍ଥାନରେ ଶନିଥିଲେ କନ୍ୟାଜାତ ହୁଏ । ପୁତ୍ର-କାରକ ଗ୍ରହମାନଙ୍କର ବଳ ଅଧିକ ଥିଲେ ପୁତ୍ର ଓ କନ୍ୟା କାରକ ଗ୍ରହ (ପୂର୍ବଶ୍ଳୋକରେ ଯାହା କୁହାଯାଇଛି) ମାନଙ୍କର ବଳ ଅଧିକ ହେଲେ କନ୍ୟା ଜାତ ହୁଏ ।୧୨।

## ନପୁଂସକ ଜାତଯୋଗ

ଅନ୍ୟୋନ୍ୟଂ ଯଦି ପଶ୍ୟତଃ ଶଶିରବୀଯାଦ୍ୟାର୍କିସୌମ୍ୟାବପି ·
ବକ୍ରୋ ବା ସମଗଂ ଦିନେଶମସମେ ଚନ୍ଦ୍ରୋଦୟୌ ଚେତ୍ସ୍ଥିତୌ ।
ଯୁଗ୍ମୌଜର୍କ୍ଷଗତାବପୀନ୍ଦୁଶଶିଜୌ ଭୂମ୍ୟାତ୍ମଜେନେକ୍ଷିତୌ
ପୁଂଭାଗେ ସିତଲଗ୍ନଶୀତକିରଣାଃ ସ୍ୟୁଃ କ୍ଲୀବଯୋଗାଃ ସ୍ମୃତାଃ ।୧୩।

ନପୁଂସକ କିପରି ଯୋଗରେ ଜାତହୁଏ ତାହା କହାଯିବ, ଏହା ଛ ପ୍ରକାର ।

ପ୍ରଥମ:—ରବି ବିଷମ ରାଶିରେ, ଚନ୍ଦ୍ର ସମ ରାଶିରେ ଉଭୟେ ପରସ୍ପରକୁ ଦେଖିଲେ 'କ୍ଲୀବ' ଜାତହୁଏ । ଏଠାରେ ପାଦଦୃଷ୍ଟି ମଧ୍ୟ ଗ୍ରହଣୀୟ ।

ଦ୍ୱିତୀୟ:—ଶନି ବିଷମ ରାଶିରେ ବୁଧ ସମରାଶିରେ ଥିବେ; ଦୁହେଁ ପରସ୍ପରକୁ ଦେଖିବେ । ଏହା କ୍ଲୀବଯୋଗ ।

ତୃତୀୟ:—ସମରାଶିରେ ରବି, ବିଷମରାଶିରେ ମଙ୍ଗଳଥିବେ ଉଭୟେ ପରସ୍ପରକୁ ଦେଖିବେ । ଏହା କ୍ଲୀବଯୋଗ ।

ଚତୁର୍ଥ:—ଲଗ୍ନ ଓ ଚନ୍ଦ୍ର ବିଷମ ରାଶିରେ ଥାଇ ଏମାନଙ୍କୁ ସମରାଶିସ୍ଥ ମଙ୍ଗଳ ଦେଖିଲେ ନପୁଂସକ ଯୋଗହୁଏ ।

ପଞ୍ଚମ:—ବିସମ ରାଶିରେ ଚନ୍ଦ୍ର ଏବଂ ସମ ରାଶିରେ ବୁଧ ଥିଲେ ଓ ଉଭୟଙ୍କୁ ମଙ୍ଗଳ ଦେଖିଲେ କ୍ଲୀବ ଯୋଗହୁଏ ।

ଷଷ୍ଠ:—ଲଗ୍ନ, ଶୁକ୍ର ଏବଂ ଚନ୍ଦ୍ର ପୁରୁଷ ରାଶି ବା ପୁରୁଷ ରାଶିର ନବାଂଶରେ ଥିଲେ କ୍ଲୀବ ଯୋଗହୁଏ ।୧୩।

## ଏକ ଗର୍ଭରେ ଏକାଧିକ ସନ୍ତାନ ଯୋଗ

ଯୁଗ୍ମେ ଚନ୍ଦ୍ରସିତୌ ତଥୌଜଭବନେ ସ୍ୟୁର୍ଜ୍ଞାରଜୀବୋଦୟା-
ଲ୍ଲଗ୍ନେନ୍ଦୂ ନୃନିରୀକ୍ଷିତୌ ଚ ସମଗୌ ଯୁଗ୍ମେଷୁ ବା ପ୍ରାଣିନଃ ।

କୁଜେନ୍ଦ୍ରସ୍ତ୍ରେମିଥୁନଂ ଗ୍ରହୋଦୟଗତାଃ ଦ୍ୱ୍ୟଂଗୋଶକାନ୍ ପଶ୍ୟତ
ସ୍ୱାଂଶେଶଙ୍କେବିତଯ୍ୟଙ୍କଗାଂଶକବଶାଦ୍ୟୁଗ୍ମଂ ଭୃମିଶୈଃ ସମମ୍ ।୧୪।

ଗର୍ଭାଧାନ କାଲ ବା ପ୍ରଶ୍ନକାଳରେ ଚନ୍ଦ୍ର ଓ ଶୁକ୍ର ଉଭୟେ ସମ ରାଶିରେ ଥିବେ, ବୁଧ, ମଙ୍ଗଳ, ଗୁରୁ, ଲଗ୍ନ ଏମାନେ ବିଷମ ରାଶିରେ ଥିବେ ତେବେ ଏକପୁତ୍ର ଓ ଏକ କନ୍ୟା ଜାତ ହେବେ ।

ଲଗ୍ନ, ଚନ୍ଦ୍ର ଦୁହେଁ ସମ ରାଶିରେ ଥିବେ, କୌଣସି ପୁରୁଷଗ୍ରହ (ରବି, ମଙ୍ଗଳ, ଗୁରୁ) ଏମାନଙ୍କୁ ଦେଖିଲେ ଏକକନ୍ୟା ତଥା ଏକ ପୁତ୍ର ଜନ୍ମିବେ । ମଙ୍ଗଳ, ବୁଧ ତଥା ଗୁରୁ ଲଗ୍ନରେ ବଳବାନ୍ ହୋଇ ସମ ରାଶିରେ ଥିଲେ ଏକା-କନ୍ୟା ଓ ଏକପୁତ୍ର ଜନ୍ମହେବେ । ଏମାନେ ଲଗ୍ନରେ ରହି ଦ୍ୱିସ୍ୱଭାବ ରାଶିର ନବାଂଶରେ ଥିଲେ ଓ ନିଜର ନବାଂଶରେ ଥିବା ବୁଧ ଏମାନଙ୍କୁ ଦେଖିଲେ ତିନୋଟି ସନ୍ତାନ ଜନ୍ମହେବେ, ଏଥିରୁ ଦୁଇଟି ବାଳକ ଗୋଟିଏ ବାଳିକା କିମ୍ବା ଦୁଇଟି କନ୍ୟା ଓ ଗୋଟିଏ ପୁତ୍ର ହେବ ।

ମିଥୁନ ନବାଂଶରେ ଥିବା ବୁଧ ପୂର୍ବୋକ୍ତ ଗ୍ରହମାନଙ୍କୁ ଦେଖିଲେ ଦୁଇଟି ପୁତ୍ର ଓ ଗୋଟିଏ କନ୍ୟା ହେବେ; କନ୍ୟା ନବାଂଶରେ ରହି ଦେଖିପଲ ଦୁଇଟି କନ୍ୟା ଓ ଗୋଟିଏ ପୁତ୍ର କହିବେ ।

ସ୍ତ୍ରୀ ସଜ୍ଞକ ନବାଂଶରେ ବୁଧ ଥାଇ ସ୍ତ୍ରୀ ସଂଜ୍ଞକ ନବାଂଶରେ ଥିବା ଲଗ୍ନ ତଥା ଗ୍ରହମାନଙ୍କୁ ଦେଖେ ତେବେ ତିନୋଟି କନ୍ୟା ଜନ୍ମିବେ ।

କନ୍ୟାନବାଂଶରେ ଥିବା ବୁଧ କନ୍ୟା ବା ମୀନ ନବାଂଶରେ ସ୍ଥିତ ପୂର୍ବୋକ୍ତ ଲଗ୍ନ ସହିତ ଗ୍ରହମାନଙ୍କୁ ଦେଖିଲେ ଗର୍ଭରେ ତିନିପୁତ୍ର ଥିବା କହିବେ ।୧୪।

ଦ୍ର:—ପୂର୍ବୋକ୍ତ ପ୍ରମାଣ ମାନଙ୍କରେ ଅନେକକର ରବି ସହିତ ଅନ୍ୟାନ୍ୟ ଗ୍ରହଙ୍କ ଉଲ୍ଲେଖ ରହି ବୁଧ ସେମାନଙ୍କୁ ଦେଖୁଥିବେ ବୋଲି ରହିଛି । ରବିଙ୍କୁ ବୁଧ ଦେଖିବା ସମ୍ଭବ ନୁହେଁ, ଏଣୁ ସେହି ସେହି ପ୍ରମାଣରେ ରବିଛଡା ଅନ୍ୟ ଗ୍ରହମାନଙ୍କୁ ବୁଧ ଦେଖିବ ବୋଲି ବୁଝିବେ ।

ଧନୁର୍ଦ୍ଧରସ୍ୟାନ୍ତ୍ୟଗତେ ବିଲଗ୍ନେ ଗ୍ରହୈସ୍ତଦଂଶୋପଗତୈର୍ବଲିଷ୍ଠୈଃ
ଜ୍ଞେନାର୍କିଣା ବୀର୍ଯ୍ୟଯୁତେନ ଦୃଷ୍ଟେ ସନ୍ତି ପ୍ରଭୂତା ଅପିକୋଶସଂସ୍ଥାଃ ।୧୫।

ଗର୍ଭାଧାନକାଳୀନ ଲଗ୍ନ ଧନୁ ହେବ ବା ଧନୁରାଶିର ନବାଂଶ ହେଲେ ବଳିଷ୍ଠ ଗ୍ରହମାନେ ଧନୁ ନବାଂଶରେ ରହିଲେ ବଳବାନ୍ ବୁଧ ଓ ଶନି ଲଗ୍ନକୁ ଦେଖିଲେ ଗର୍ଭରେ ବହୁତ ସନ୍ତାନ ଥିବା କହିବେ ।୧୫।

## ଗର୍ଭୋତ୍ପତ୍ତି ଓ ମାସାଧିପତି କର୍ତ୍ତବ୍ୟ

କଲଲ ଘନାଙ୍କୁରାଂସ୍ଥିଚର୍ମାଂଗଜଚେତନାଃ
ସିତକୁଜଜୀବସୂର୍ଯ୍ୟଚନ୍ଦ୍ରାର୍କି ବୁଧାଃ ପରତଃ
ଉଦୟପଚନ୍ଦ୍ରସୂର୍ଯ୍ୟନାଥାଃ କ୍ରମଶୋ ଗଦିତା
ଭବନ୍ତି ଶୁଭାଶୁଭଞ୍ଚ ମାସାଧିପତେଃ ସଦୃଶମ୍ ।୧୬।

ଗର୍ଭାଧାନର ଏକମାସ ମଧ୍ୟରେ କଲଲ (ରଜ ଓ ବୀର୍ଯ୍ୟର ସଂପୂର୍ଣ୍ଣ ମିଶ୍ରଣ) ହୁଏ । ଦ୍ୱିତୀୟ ମାସରେ ଘନ ଅର୍ଥାତ୍ ପିଣ୍ଡ ସଂଘଟିତ ହୁଏ । ତୃତୀୟ ମାସରେ ହସ୍ତପଦାଦ ଜାତହୁଏ, ଏହା ଅଙ୍କୁରାବସ୍ଥା । ଚତୁର୍ଥ ମାସରେ ଅସ୍ଥି ଜାତହୁଏ । ପଞ୍ଚମ ମାସରେ ଚର୍ମ ଓ ଷଷ୍ଠ ମାସରେ ରୋମ ଜାତହୁଏ । ସପ୍ତମ ମାସରେ ଚେତନା ଜାତହୁଏ । ଏହି ସାତଟି ମାସରେ ଯଥାକ୍ରମେ ଶୁକ୍ର, ମଙ୍ଗଳ, ଗୁରୁ, ରବି, ଚନ୍ଦ୍ର, ଶନି ଏବଂ ବୁଧ ଗର୍ଭର ଅଧିପତି ଅଟନ୍ତି ।

ଅଷ୍ଟମ ମାସରେ ମା'ର ଖାଦ୍ୟରସ ଗର୍ଭସ୍ଥ ଶିଶୁ ଗ୍ରହଣ କରିବାରେ ସକ୍ଷମ ହୁଏ, ନବମ ମାସରେ ଗର୍ଭରୁ ବାହାରିବା ଉଦ୍‌ବେଗ ଜାତହୁଏ ଓ ଦଶମ ମାସରେ ପ୍ରସବ ହୋଇଥାଏ ।

ଅଷ୍ଟମ ମାସରେ ଗର୍ଭାଧିପତି ଲଗ୍ନେଶ, ନବମ ମାସରେ ଚନ୍ଦ୍ର ଓ ଦଶମ ମାସରେ ରବି ଗର୍ଭାଧିପତି ହୁଏ ।

ଗର୍ଭାଧାନ ବେଳେ ଯେଉଁଗ୍ରହ ଦୁର୍ବଳ, ଅସ୍ତ, ପରାଜିତ ହୋଇଥାଏ ସେହିଗ୍ରହର ମାସରେ ପୀଡ଼ା ଘଟେ ।

ଯେଉଁ ମାସାଧିପତି ଯୁଦ୍ଧରେ ପରାଜିତ ହେବ ସେହି ମାସରେ ଗର୍ଭ ପାତ କହିବେ ।

ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି ଏକାଂଶ ଗତ ହେଲେ ଯୁଦ୍ଧ ହୁଏ । ଏମାନଙ୍କ ମଧ୍ୟରେ ଯେ ରଶ୍ମିହୀନ ହୋଇ ଦକ୍ଷିଣକୁ ରହେ ସେ ପରାଜିତ ବୋଲି ଧରାଯାଏ । ଶୁକ୍ର ଉତ୍ତମ କିରଣ ଯୁକ୍ତହୋଇ ଦକ୍ଷିଣରେ ଥିଲେ ମଧ୍ୟ ପରାଜିତ ବୋଲି ଧରିବାକୁ ହୁଏନାହିଁ ।୧୭।

## ଅଧିକାଙ୍ଗ, ମୂକ ଓ ବହୁଦନରେ ବାକ୍‌ଶକ୍ତି ପ୍ରାପ୍ତିଯୋଗ

ତ୍ରିକୋଣଗେ ଜ୍ଞେ ବଳବର୍ଜିତୈସ୍ତଥାପରୈ-
ର୍ମୂର୍ଦ୍ଧାଂଘ୍ରିହସ୍ତଦ୍ୱିଗୁଣସ୍ତଦା ଭବେତ୍ ।
ଅବାଗ୍‌ଗବାନ୍ଦାବଶୁଭୈର୍ଭସନ୍ଧିଗୈଃ
ଶୁଭେକ୍ଷିତେ ଶ୍ଚେଲ୍ଲୁଚ୍ଛତେ ଗିରଂଚିରାତ୍ ।୧୭।

ଗର୍ଭାଧାନ ବା ପ୍ରଶ୍ନକାଳୀନ ଲଗ୍ନର ପଞ୍ଚମ ବା ନବମରେ ବୁଧ ଥିଲେ, ଅନ୍ୟାନ୍ୟ ଗ୍ରହମାନେ ବଳହୀନ ହୋଇଥିଲେ ଗର୍ଭସ୍ଥ ଶିଶୁର ଦୁଇଟି ମୁଣ୍ଡ, ଚାରିଟି ହାତ, ଚାରିଟି ପାଦ ହେବ ।

ବୃଷରାଶିରେ ଚନ୍ଦ୍ର ଥିଲେ, ସବୁପାପଗ୍ରହ ଭସନ୍ଧି କହନ୍ତେ କର୍କଟ, ବୃଶ୍ଚିକ ତଥା ମୀନର ଶେଷନବାଂଶମାନଙ୍କରେ ଥିଲେ ମୂକ ସନ୍ତାନ ପ୍ରସବ ହେବ ।

ବୃଷରାଶିରେ ଚନ୍ଦ୍ର, ସବୁ ପାପଗ୍ରହ ଭସନ୍ଧିରେ ଥିବେ, ଚନ୍ଦ୍ରକୁ ଶୁଭଗ୍ରହମାନେ ଦେଖିଲେ ବହୁତ ଦିନରେ ଶିଶୁ କଥା କହିବ । କେବଳ ପାପଗ୍ରହମାନେ ଦେଖିଲେ ମୂକ ହୋଇ ରହିବ ।୧୭।

### ସଦନ୍ତ, କୁବ୍‌ଜ, ପଙ୍ଗୁ, ଜଡ଼ଯୋଗ

ସୌମ୍ୟର୍କ୍ଷାଂଶେ ରବିଜରୁଧିରୌ ଚେଦ୍ଦନ୍ତୋଽତ୍ର ଜାତଃ
କୁବ୍ଜଃସ୍ୱର୍କ୍ଷେ ଶଶିନି ତନୁଗେ ମନ୍ଦମାହେୟଦୃଷ୍ଟେ ।
ପଙ୍ଗୁର୍ମୀନେ ଯମଶଶିକୁଜୈର୍ବୀକ୍ଷିତେ ଲଗ୍ନସଂସ୍ଥେ
ସନ୍ଧୌ ପାପେ ଶଶିନି ଚ ଜଡ଼ଃ ସ୍ୟାନ୍ନଚେତ୍ସୌମ୍ୟଦୃଷ୍ଟଃ ।୧୮।

ଶନି ଓ ମଙ୍ଗଳ ବୁଧର ରାଶି (ମିଥୁନ ଓ କନ୍ୟା) ବା ସେହି ରାଶିର ନବାଂଶରେ ଥିଲେ ଗର୍ଭରେ ଶିଶୁର ଦାନ୍ତ ଉଠିଥାଏ ।

ଲଗ୍ନସ୍ଥଚନ୍ଦ୍ର କର୍କଟରେ ଥାଇ ଶନି ଓ ମଙ୍ଗଳ କର୍ତ୍ତୃକ ଦୃଷ୍ଟହେଲେ ଗର୍ଭସ୍ଥ ସନ୍ତାନ କୁଜା ହୋଇଥାଏ । ଲଗ୍ନ ମୀନ ହୋଇଥିବ, ଶନି, ଚନ୍ଦ୍ର ଓ ମଙ୍ଗଳ ଲଗ୍ନକୁ ଦେଖିଲେ ଗର୍ଭରେ ପଙ୍ଗୁ (ଛୋଟା) ଶିଶୁ ଥିବା ଜାଣିବେ । ପାପଗ୍ରହର ସହିତ ଚନ୍ଦ୍ର ଭସନ୍ଧି (କର୍କଟ, ବୃଶ୍ଚିକ ଓ ମୀନର ଶେଷ ନବାଂଶ) ରେ ଥାଇ କୌଣସି ଶୁଭଗ୍ରହ ଦ୍ୱାରା ଦୃଷ୍ଟ ନହେଲେ ଜଡ଼ (ମୂଢ଼) ଗର୍ଭସ୍ଥ ବୋଲି କହିବେ ।୧୮।

## ବାମନ ଓ ଅଙ୍ଗହୀନ ଯୋଗ

ସୌରଶଶାଙ୍କଦିବାକରଦୃଷ୍ଟେ ବାମନକୋ ମକରାନ୍ତ୍ୟବିଲଗ୍ନେ
ଧୀନବମୋଦୟଗୈଷ୍ଟ ଦୃକାଣୈଃ ପାପଯୁତୈରଭୁଜାଂଘ୍ରିଶିରାଃସ୍ୟାତ୍ ।୧୯।

ମକରର ଅନ୍ତ୍ୟନବାଂଶରେ ଲଗ୍ନହେବ, ଏହି ଲଗ୍ନକୁ ଶନି, ଚନ୍ଦ୍ର ଓ ରବି ଦେଖୁଥିଲେ ଗର୍ଭରେ ବାମନ ସନ୍ତାନ ରହିବ । ଲଗ୍ନର ପ୍ରଥମ ଦ୍ରେକ୍କାଣ ପାପଯୁକ୍ତ ହୋଇଥିଲେ ଶିରହୀନ, ଦ୍ୱିତୀୟ ଦ୍ରେକ୍କାଣ ପାପଯୁକ୍ତ ହେଲେ ହସ୍ତ ହୀନ, ତୃତୀୟ ଦ୍ରେକ୍କାଣ ପାପଯୁକ୍ତ ହେଲେ ପାଦହୀନ ହୁଏ । କେହି କେହି ଏହାର ଅର୍ଥ ବିଭିନ୍ନ ଭାବେ କରନ୍ତି । ସେମାନଙ୍କର ମତ ଲଗ୍ନରେ ପ୍ରଥମ ଦ୍ରେକ୍କାଣ, ପଞ୍ଚମର ପ୍ରଥମ ଦ୍ରେକ୍କାଣ ତଥା ନବମର ପ୍ରଥମ ଦ୍ରେକ୍କାଣ ପାପଯୁକ୍ତ ହେଲେ ଶିରହୀନ, ସେହିପରି ଲଗ୍ନର ଦ୍ୱିତୀୟ, ପଞ୍ଚମର ଦ୍ୱିତୀୟ ତଥା ନବମର ଦ୍ୱିତୀୟ ଦ୍ରେକ୍କାଣ ପାପଯୁକ୍ତ ହେଲେ ହସ୍ତହୀନ ହୁଏ । ଲଗ୍ନରେ ତୃତୀୟ, ପଞ୍ଚମର ତୃତୀୟ, ନବମର ତୃତୀୟ ଦ୍ରେକ୍କାଣ ପାପଯୁକ୍ତ ହେଲେ ପଦହୀନ ହେବେ ।

ଏଭଳି ବିଭିନ୍ନ ମତଦେଇ ଗ୍ରନ୍ଥର ଟୀକାକାର "ଉତ୍ପଳ" ଭଗବାନ୍ ଗାର୍ଗି ତଥା ସାରାବଳୀର ପ୍ରମାଣ ଗ୍ରହଣ କରି ଅଛନ୍ତି । ସେ କହିଛନ୍ତି ଯେ ଗର୍ଭାଧାନ କାଳରେ ଲଗ୍ନର ପଞ୍ଚମ ରାଶିର ଯେ ଦ୍ରେକ୍କାଣ ସେଥିରେ ମଙ୍ଗଳ ଥିବେ, ଶନି, ଚନ୍ଦ୍ର ଓ ରବି ତାଙ୍କୁ ଦେଖୁଥିବେ ତେବେ ହସ୍ତହୀନ ଶିଶୁ ଗର୍ଭରେ ଥିବା ଜାଣିବେ ।

ଲଗ୍ନର ନବମରାଶିର ଯେ ଦ୍ରେକାଣ ହେବ ସେଥିରେ ମଙ୍ଗଳ ଥିବେ, ଶନି, ଚନ୍ଦ୍ର ଓ ରବି ତାଙ୍କୁ ଦେଖୁଥିଲେ ଶିଶୁ ପାଦରହିତ ହେବ ଲଗ୍ନସ୍ଥ ଦ୍ରେକ୍କାଣରେ ମଙ୍ଗଳ ଥାଇ ଶନି, ଚନ୍ଦ୍ର ଓ ରବିଦ୍ୱାରା ଦୃଷ୍ଟହେଲେ ଶିରହୀନ ସନ୍ତାନ ଥିବା କଥା ଜାଣିବେ । ଏହିମତ ବିଶେଷ ଯୁକ୍ତିଯୁକ୍ତ ବୋଧହୁଏ ।୧୯।

### ଅନ୍ଧାଦିଯୋଗ

ରବିଶଶିଯୁତେ ସିଂହେ ଲଗ୍ନକୁଜାର୍କିନିରୀକ୍ଷିତେ
ନୟନରହିତଃ ସୌମ୍ୟାସୌମ୍ୟୈଃ ସବୁଦ୍‌ବୁଦଲୋଚନଃ
ବ୍ୟୟଗୃହଗତଶ୍ଚନ୍ଦ୍ରୋ ବାମଂ ହିନସ୍ତ୍ୟପରଂ ରବି
ର୍ନଶୁଭଗଦିତା ଯୋଗାଯାପ୍ୟା ଭବନ୍ତି ଶୁଭେକ୍ଷିତାଃ ।୨୦।

ରବି ଓ ଚନ୍ଦ୍ର ସିଂହ ଲଗ୍ନରେ ଥିବେ, ମଙ୍ଗଳ ଓ ଶନି ତାଙ୍କୁ ଦେଖୁଥିବେ, ତେବେ ଗର୍ଭସ୍ଥ ସନ୍ତାନର ଚକ୍ଷୁନାଶ କହିବେ । କେବଳ ରବି ସିଂହ

ଲଗ୍ନରେ ଥିବେ, ମଙ୍ଗଳ ଓ ଶନି ତାଙ୍କୁ ଦେଖିଲେ ଦକ୍ଷିଣନେତ୍ର ହାନି; କେବଳ ଚନ୍ଦ୍ର ଲଗ୍ନସ୍ଥ ହୋଇ ଏମାନଙ୍କ ଦୃଷ୍ଟିରେ ଥିଲେ ବାମନେତ୍ର ହାନି କହିବେ ରବି ଓ ଚନ୍ଦ୍ର ସିଂହଲଗ୍ନରେ ଥାଇ ମଙ୍ଗଳ ଓ ଶନି ତଥା ଅନ୍ୟାନ୍ୟ ଶୁଭଗ୍ରହ ମାନଙ୍କ ଦ୍ୱାରା ଦୃଷ୍ଟହେଲେ ଚକ୍ଷୁରେ ଫୁଲ ପଡ଼ିଥାଏ ବା ଚକ୍ଷୁରୋଗ ତଥା ଅସମାନ ଚକ୍ଷୁ ଇତ୍ୟାଦି ହୁଏ ।

ସିଂହ ଲଗ୍ନସ୍ଥ ରବିଙ୍କୁ ଶୁଭାଶୁଭ ଉଭୟ ପ୍ରକାର ଗ୍ରହ ଦେଖିଲେ ଦକ୍ଷିଣ ନେତ୍ର ରୋଗଯୁକ୍ତ ହୁଏ । ସେହିପରି ସିଂହଲଗ୍ନସ୍ଥ ଚନ୍ଦ୍ରଙ୍କୁ ଶୁଭାଶୁଭ ଗ୍ରହ ଦେଖିଲେ ବାମନେତ୍ର ରୋଗଯୁକ୍ତ କହିବେ ।

ଗର୍ଭାଧାନଲଗ୍ନ ବା ଜନ୍ମଲଗ୍ନର ଦ୍ୱାଦଶରେ ଚନ୍ଦ୍ର ଥିଲେ ବାମନେତ୍ର, ରବି ଥିଲେ ଦକ୍ଷିଣ ନେତ୍ର ନାଶ କରେ ।

ଶୁଭଗ୍ରହର ଦୃଷ୍ଟି ବା ଶୁଭଗ୍ରହ ସହିତ ଥିଲେ ପୂର୍ବକଥିତ ଦୋଷ ଫଳ ଗୁଡ଼ିକ କମିଯାଏ ।୨୦।

ଦ୍ରଷ୍ଟବ୍ୟ:—ମହାମତି ବରାହ ଗର୍ଭାଧାନ ଲଗ୍ନକୁ ଧରି ଜୀବର ବିଶିଷ୍ଟଫଳ ନିର୍ଣ୍ଣୟ କରିବା ସୂଚନାଦେଇ ମାନବର ମହୋପକାର ସାଧନ କରିଛନ୍ତି ।

ଏହି ପ୍ରସଙ୍ଗରେ ଏଠାରେ ଗର୍ଭାଧାନ ମୁହୂର୍ତ୍ତି ଉଲ୍ଲେଖ କରିବା ସମୀଚୀନ ମନେକରେ । ପ୍ରାଚୀନମାନେ ଏହି ଗୁଡ଼ିକ ପାଳନ କରି ଦୀର୍ଘାୟୁ ହେଉଥିଲେ ଓ ସ୍ତ୍ରୀ ପୁରୁଷ ବହୁକାଳ ନୀରୋଗ ରହି ଯୌବନ ସୁଖ ଉପଭୋଗ କରୁଥିଲେ । ଅଜି ଯଥେଚ୍ଛା ବିହାର ଫଳରେ ମାନବ ସମାଜର ଭୀଷଣ ଦୁର୍ଗତି ଉପସ୍ଥିତ ହେଲଣି । ଅତଏବ ସଙ୍ଗମରେ ସଂଯମ ରକ୍ଷାକରି ମୁନିଋଷି ପ୍ରଣୀତ ଏହି ନିୟମ ସମସ୍ତେ ମାନିବା ଉଚିତ ।

ମୁହୂର୍ତ୍ତି ଚିନ୍ତାମଣି କହେ:—

ଗଣ୍ଡାନ୍ତଂ ତ୍ରିବିଧଂ ତ୍ୟଜେନ୍ନିଧନଜନ୍ମର୍କ୍ଷେ ଚ ମୂଲାନ୍ତକଂ
ଦାସ୍ରଂ ପୌଷ୍ଣମଥୋପରାଗଦିବସଂ ପାତଂ ତଥା ବୈଧୃତମ୍ ।
ପିତ୍ରୋଃ ଶ୍ରାଦ୍ଧଦିନଂ ଦିବାଚ ପରିଘାଦ୍ୟର୍ଦ୍ଧଂ ସ୍ୱପତ୍ନୀଗମେ
ଭାନ୍ୟୁତ୍ପାତହତାନି ମୃତ୍ୟୁଭବନଂ ଜନ୍ମର୍କ୍ଷତଃ ପାପଭମ୍ ॥

ଭଦ୍ରାଷଷ୍ଠୀ ପର୍ବ ରିକ୍ତାଚସନ୍ଧ୍ୟା
ଭୌମାର୍କାର୍କିନାଦ୍ୟ ରାତ୍ରିଶ୍ଚତସ୍ରଃ ।

ଗର୍ଭାଧାନଂ ନ୍ୟୁତ୍ତରେନ୍ଦ୍ୱର୍କମୈବ
ବ୍ରହ୍ମାସ୍ୱାତୀ ବସ୍ତ୍ରୁବସ୍ୱମ୍ବୁପେସତ୍ତ ॥

କେନ୍ଦ୍ରତ୍ରିକୋଣେଷୁଶୁଭୈଷ୍ଟ ପାପୈସ୍ତ୍ୟାୟାରିଗେ ପୁଂଗ୍ରହଦୃଷ୍ଟଲଗ୍ନେ
ଓଜାଂଶକେଽବ୍ଜେପିଚ ଯୁଗ୍ମରାତ୍ରୌଚିତ୍ରା ଦିତୀଜ୍ୟାଶ୍ୱିଷୁ ମଧ୍ୟମଂ ତତ୍ତ ॥

ତିନି ପ୍ରକାର ଗଣ୍ଡାନ୍ତ, ଜନ୍ମନକ୍ଷତ୍ର, ସପ୍ତମ ନକ୍ଷତ୍ର (ବଧତାରା) ଷୋଡଶ ନକ୍ଷତ୍ର ଓ ପଞ୍ଚବିଂଶତି ନକ୍ଷତ୍ର, ମୂଳା, ଚିତ୍ରା, ଅଶ୍ୱିନୀ, ରେବତୀ, ଗ୍ରହଣକାଳ, ବ୍ୟତିପାତ, ବୈଧୃତି ଯୋଗ, ପିତା-ତଥା ମାତାଙ୍କର ଶ୍ରାଦ୍ଧ ଦିବସ, ଦିବାଭାଗ, ପରିଘଯୋଗର ପ୍ରଥମଭାଗ, ଉତ୍ପାତାଦିରେ ହତନକ୍ଷତ୍ର ଅର୍ଥାତ୍ ଯେଉଁନକ୍ଷତ୍ରରେ ଧୂମକେତୁ ଉଦୟ ହୋଇଥିବ, ଅଷ୍ଟମଚନ୍ଦ୍ର, ପାପଗ୍ରହ-ଯୁକ୍ତ ନକ୍ଷତ୍ର ତଥାଲଗ୍ନରେ କଦାପି ସ୍ତ୍ରୀ ସଙ୍ଗମ କରିବ ନାହିଁ । ଭଦ୍ରାତିଥି (ଦ୍ୱିତୀୟା, ସପ୍ତମୀ, ଦ୍ୱାଦଶୀ) ତଥା ଷଷ୍ଠୀତିଥି; ପର୍ବତିଥି (ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା, ପୂର୍ଣ୍ଣିମା ଓ ସଂକ୍ରାନ୍ତି) ରିକ୍ତାତିଥି (ଚତୁର୍ଥୀ, ନବମୀ, ଚତୁର୍ଦ୍ଦଶୀ) ପ୍ରାତଃକାଳ ଓ ସନ୍ଧ୍ୟାକାଳ, ମଙ୍ଗଳ, ରବି, ଶନିବାର ଏବଂ ରଜୋଦର୍ଶନ ଠାରୁ ଚାରିଦିନ ଏସମସ୍ତ ସ୍ତ୍ରୀ ସଙ୍ଗମରେ ଦୋଷପ୍ରଦ ।

ରଜୋଦର୍ଶନ ଠାରୁ ଷୋଡଶରାତ୍ରି ମଧ୍ୟରେ ପଞ୍ଚମ, ସପ୍ତମ, ନବମ, ଏକାଦଶ, ତ୍ରୟୋଦଶ ତଥା ପଞ୍ଚଦଶ ରାତ୍ରି ସଙ୍ଗମ ପକ୍ଷରେ ଦୋଷଯୁକ୍ତ । ଉତ୍ତରାଫାଲ୍‌ଗୁନୀ, ଉତ୍ତରା ଷାଢ଼ା, ଉତ୍ତର ଭାଦ୍ରପଦ, ମୃଗଶିରା, ହସ୍ତା, ଅନୁରାଧା ରୋହିଣୀ, ସ୍ୱାତୀ, ଶ୍ରବଣା, ଧନିଷ୍ଠା ଓ ଶତଭିଷାରେ ଯୁଗ୍ମନିଶା (୬, ୮, ୧୦, ୧୨, ୧୪, ୧୬ ଦିନର ରାତ୍ରି) ରେ ସଙ୍ଗମ କରିବା ଉପଯୁକ୍ତ ।

କେନ୍ଦ୍ର ତଥା ତ୍ରିକୋଣରେ (ଗର୍ଭାଧାନ ବା ସଙ୍ଗମ ଲଗ୍ନର) ଶୁଭଗ୍ରହ ଥିବେ, ତୃତୀୟ, ଷଷ୍ଠ, ଏକାଦଶରେ ପାପଗ୍ରହ ଥିବେ, ପୁରୁଷଗ୍ରହ ଲଗ୍ନକୁ ଦେଖୁଥିଲେ, ବିଷମରାଶିର ନବାଂଶରେ ଚନ୍ଦ୍ର ତଥା ଲଗ୍ନ ଥିଲେ, ଯୁଗ୍ମରାତ୍ରିରେ ଗର୍ଭାଧାନ ପ୍ରଶସ୍ତ । ଚିତ୍ରା, ପୁନର୍ବସୁ, ପୁଷ୍ୟା ଓ ଅଶ୍ୱିନୀ ନକ୍ଷତ୍ର ଏବିଷୟରେ ମଧ୍ୟମ ।

## ଆଧାନଲଗ୍ନରୁ ପ୍ରସବକାଳ ଆନୟନ

ତତ୍କାଳମିନ୍ଦୁସହିତୋ ଦ୍ୱିରସାଂଶକୋ ଯ-
ସ୍ତତ୍ତୁଲ୍ୟରାଶିସହିତେ ପୁରତଃ ଶଶାଙ୍କେ ।
ଯାବାନୁଦେତି ଦିନରାତ୍ରିସମାନଭାଗ
ସ୍ତାବଦ୍‌ଗତେ ଦିନନିଶୋଃ ପ୍ରବଦନ୍ତିଜନ୍ମ ।୨୧।

ଗର୍ଭାଧାନ କାଳରେ ଚନ୍ଦ୍ର ସେ ଥିବା ରାଶିର ଯେତିକ ଦ୍ୱାଦଶାଂଶ ଗତ କରିଥିବ, ସେତିକ ସଂଖ୍ୟା ମେଷାଦିରୁ ଗଣି ନେଲେ ଯେ ରାଶିହେବ, ଦଶମ ମାସରେ ଚନ୍ଦ୍ର ସେହି ରାଶିକୁ ଆସିଲେ ଜନ୍ମହେବ । ଏହା ସର୍ବସମ୍ମତ ନୁହେ ।

ପ୍ରକୃତ ମତ ଏହିଯେ ଯେ ଦ୍ୱାଦଶାଂଶରେ ଚନ୍ଦ୍ର ଅଛି ତାହା ଚନ୍ଦ୍ରଥିବା ରାଶିଠାରୁ ଗଣିଲେ ଯେତେ ହେବ, ଆଗକୁ ସେତିକ ରାଶି ଗଣିଲେ ଯେ ରାଶି ହେବ, ଦଶମ ମାସରେ ଚନ୍ଦ୍ର ସେହି ରାଶିକୁ ଆସିଲେ ପ୍ରସବ ହେବ, ଏହି ମତଟି ଗ୍ରାହ୍ୟ ।

ଗର୍ଭାଧାନ ଲଗ୍ନ ଦିବା ସଂଜ୍ଞକ ହେଲେ ଦିନରେ, ରାତ୍ରିସଂଜ୍ଞକ ହେଲେ ରାତିରେ ଓ ଲଗ୍ନର ଭୋଗାନୁସାରେ ଦିନ ବା ରାତିର ସେତିକ ଭୋଗ ସମୟରେ ଜନ୍ମହେବା କହିବେ ।୨୧।

## ପ୍ରଥମଠାରୁ ପରଗର୍ଭସ୍ଥିତରେ ପ୍ରଭେଦ କାଳ ନିର୍ଣ୍ଣୟ

ଉଦୟତି ମୃଦୁଭାଂଶେ ସପ୍ତମସ୍ଥେ ଚମନ୍ଦେ
ଯଦଭବତି ନିଷେକଃ ସୂତିରବ୍ଦତ୍ରୟେଣ ।
ଶଶିନିତୁ ବିଧିରେଷ ଦ୍ୱାଦଶେଽବ୍ଦେ ପ୍ରକୁର୍ଯ୍ୟା-
ନ୍ନିଗଦିତମିହଚନ୍ଦ୍ରଂ ସୂତିକାଳେପି ଯୁକ୍ତ୍ୟା ।୨୨।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ନିଷେକାଧ୍ୟାୟଶ୍ଚତୁର୍ଥଃ ।
ଗର୍ଭାଧାନକାଳୀନ ଲଗ୍ନରେ ଶନିର ନବାଂଶ ହୋଇଥିବ, ଲଗ୍ନର ସପ୍ତମରେ ଶନିଥିବ ତେବେ ବର୍ତ୍ତମାନର ଗର୍ଭାଧାନ ଠାରୁ ପରଗର୍ଭାଧାନ ତିନି ବର୍ଷ ବିତିଯିବ ।

ଲଗ୍ନରେ ଚନ୍ଦ୍ର ନବାଂଶ ଓ ସପ୍ତମରେ ଚନ୍ଦ୍ର ଥିଲେ ପୁନଶ୍ଚ ଗର୍ଭାଧାନ-ଦ୍ୱାଦଶ ବର୍ଷ ଗଡ଼ିଯିବ ।

ଏହି ଅଧ୍ୟାୟରେ କେବଳ ଗର୍ଭାଧାନ କାଳ ତଥା ପ୍ରଶ୍ନକାଳକୁ ନେଇ ଫଳ କୁହାଯାଇ ଅଛି । ଯେଉଁ ଯେଉଁ ପ୍ରମାଣ ଜନ୍ମ ଲଗ୍ନକୁ ଧରି ଚିନ୍ତା କରିବା ସମ୍ଭବ ତାହା ମଧ୍ୟ କରାଯାଇ ଫଳ କଳ୍ପନା କରାଯିବ । ଜନ୍ମ ସମୟରେ ମୂକ ଯୋଗ, ଅନ୍ଧ ଯୋଗ ସମ୍ଭବ ହେଲେ ଫଳ ମଧ୍ୟ ସେପରି ହେବ ।୨୨।

ଏଠାରେ ବୃହଜ୍ଜାତକର ନିଷେକ ନାମକ ଚତୁର୍ଥ ଅଧ୍ୟାୟର
ସୁବୋଧିନୀ ଭାଷା ଟୀକା ଶେଷ ହେଲା ।

—o—

# ସୂତିକାଧ୍ୟାୟଃ ପଞ୍ଚମଃ

## ପିତାର ପରୋକ୍ଷରେ ଜନ୍ମ ନିର୍ଣ୍ଣୟ

ପିତୁର୍ଜାତଃ ପରୋକ୍ଷସ୍ୟ ଲଗ୍ନମିନ୍ଦାବପଶ୍ୟତି ।
ବିଦେଶସ୍ଥସ୍ୟ ଚରଭେ ମଧ୍ୟାଦ୍ ଭ୍ରଷ୍ଟେ ଦିବାକରେ ।୧।

ଜନ୍ମ କାଳରେ ଚନ୍ଦ୍ର ଯଦି ଲଗ୍ନକୁ ନ ଦେଖେ ତେବେ ପିତାର ପରୋକ୍ଷରେ ଜନ୍ମ କହିବେ ।

ଚନ୍ଦ୍ର ଲଗ୍ନକୁ ଦେଖୁନଥିବେ, ରବି ଦଶମରେ ନଥାଇ ଅଷ୍ଟମ, ନବମ, ଏକାଦଶ ବା ଦ୍ୱାଦଶ ସ୍ଥାନରେ ଥାଇ ଚରରାଶିରେ ଥିବେ ତେବେ ପିତା ବିଦେଶରେ ଥିବା ସମୟରେ ଜନ୍ମ ବୋଲି କହିବେ । ଏହିଭଳି ଅବସ୍ଥାରେ ରବି ସ୍ଥିର ରାଶିରେ ଥିଲେ ପିତା ସ୍ୱଦେଶରେ ଥିବେ କିନ୍ତୁ ଶିଶୁ ଜନ୍ମବେଳେ ଗୃହରେ ନଥିବେ, ଏଭଳି ସ୍ଥିତିରେ ରବି ଦ୍ୱିସ୍ୱଭାବ ରାଶିରେ ଥିଲେ ଗମନ କାଳରେ ଶିଶୁର ଜନ୍ମ ଓ ପିତାର ପରୋକ୍ଷରେ ତାହା ଘଟିବା ସ୍ଥିର କରିବେ ।

ଉଦୟସ୍ଥେଽପି ବା ମନ୍ଦେ କୁଜେ ବାସ୍ତଂ ସମାଗତେ
ସ୍ଥିତେ ବାନ୍ତଃ କ୍ଷପାନାଥେ ଶଶାଙ୍କସୁତଶୁକ୍ରୟୋଃ ।୨।

ଲଗ୍ନରେ ଶନିଥିବେ, ଚନ୍ଦ୍ର ଲଗ୍ନକୁ ଦେଖୁ ନ ଥିଲେ ପିତାର ପରୋକ୍ଷରେ ଜନ୍ମ ଜାଣିବେ ।

ମଙ୍ଗଳ ସପ୍ତମରେ ଥିବେ, ଚନ୍ଦ୍ର ଲଗ୍ନକୁ ନ ଦେଖିଲେ ବିଦେଶରେ ଥିବା ପିତାର ପରୋକ୍ଷରେ ଜନ୍ମ କହିବେ ।

ଚନ୍ଦ୍ର, ବୁଧ ଓ ଶୁକ୍ରଙ୍କ ମଧ୍ୟରେ ରହି ଲଗ୍ନକୁ ନଦେଖିଲେ ବିଦେଶସ୍ଥ ପିତାର ପରୋକ୍ଷରେ ଜନ୍ମ କହିବେ ।୨।

## ସର୍ପ, କୋଶ ତଥା ନାଡ଼ ବେଷ୍ଟିତ ଜନ୍ମ

ଶଶାଙ୍କେ ପାପଲଗ୍ନେ ବା ବୃଶ୍ଚିକେଶତ୍ରିଭାଗଗେ
ଶୁଭୈଃସ୍ୱାୟତ୍ରିକୋଣସ୍ଥୈର୍ଜାତଃ ସର୍ପସ୍ତଦ୍‌ବେଷ୍ଟିତୋଽପିବା ।୩।

ଚନ୍ଦ୍ର ବୃଶ୍ଚିକେଶ (ମଙ୍ଗଳ)ର ଦ୍ରେକ୍କାଣରେ ଥିଲେ ଅର୍ଥାତ୍ ମେଷର ପ୍ରଥମ, କର୍କଟର ଦ୍ୱିତୀୟ, ସିଂହର ତୃତୀୟ, ବୃଶ୍ଚିକର ପ୍ରଥମ, ଧନୁର ଦ୍ୱିତୀୟ, ମୀନର ତୃତୀୟ ଦ୍ରେକ୍କାଣରେ ଚନ୍ଦ୍ର ଥିବେ, ଦ୍ୱିତୀୟ ତଥା ଏକାଦଶରେ ଶୁଭ ଗ୍ରହଥିଲେ ସର୍ପଜାତ ହୁଏ । ଏହି ପ୍ରମାଣର ଅନ୍ୟ ଅର୍ଥହୋଇ ପାରେ ।

ଯଥା:-ପାପ ଗ୍ରହମାନଙ୍କ ଗୃହ ଲଗ୍ନ ହୋଇଥିବ, ଚନ୍ଦ୍ର ପୂର୍ବୋକ୍ତ କୌଣସି ଦ୍ରେକ୍କାଣରେ ଥିଲେ, ଦ୍ୱିତୀୟ ଓ ଏକାଦଶରେ ଶୁଭଗ୍ରହ ଥିଲେ ସର୍ପବେଷ୍ଟିତ (ସାପ ଗୁଡ଼ାଇ ହୋଇଥିବା ଭଳି ନାଡ଼ୀ ବେଷ୍ଟିତ) ବା ସର୍ପ ପ୍ରସବ ହୁଏ ।୩।

ଚତୁଷ୍ପାଦଗତେ ଭାନୌ ଶେଷୈର୍ବୀର୍ଯ୍ୟ ସମନ୍ୱିତୈଃ
ଦ୍ୱିତନୁସ୍ଥୈଶ୍ଚ ଯମଳୌଭବତଃ କୋଶବେଷ୍ଟିତୌ ।୪।

ଚତୁଷ୍ପଦରାଶିରେ (ମେଷ, ବୃଷ, ସିଂହ, ଧନୁର ପ୍ରଥମ ୧୫ ଅଂଶ ଓ ମକରର ଶେଷ ୧୫ ଅଂଶ) ରବି ଥିଲେ, ଅନ୍ୟ ଗ୍ରହମାନେ ବଳବାନ ହୋଇ ଦ୍ୱିସ୍ୱଭାବ ରାଶିରେ ଥିଲେ ଗୋଟିଏ ଜରାୟୁ ମଧ୍ୟରେ ଦୁଇଟି ପିଲା ଥାଇ ପ୍ରସବ ହେବ ।୪।

ଛାଗେ ସିଂହେ ବୃଷେ ଲଗ୍ନେ ତତ୍ସ୍ଥେ ସୌରେଽଥବାକୁଜେ
ରାଶ୍ୟଂଶସଦୃଶେ ଗାତ୍ରେ ଜାୟତେ ନାଳବେଷ୍ଟିତଃ ।୫।

ମେଷ, ସିଂହ ବା ବୃଷ ରାଶିରେ ଲଗ୍ନ ହୋଇଥିବ, ସେଥିରେ ଶନି ବା ମଙ୍ଗଳ ଥିଲେ ଜାତକ ନାଡ଼ ବେଷ୍ଟିତ ହୋଇ ଜନ୍ମିବ । ଏହି ନାଡ଼ କେଉଁ ଅଙ୍ଗରେ ଥିବ ତାହା ଜାଣିବା ଉପାୟ ଏହି ଯେ ଲଗ୍ନରେ ଯେଉଁ ନବାଂଶ ଅଛି ସେହି ନବାଂଶ ରାଶିର ଯେ ଅଙ୍ଗ ସେହି ଅଙ୍ଗ ନାଡ଼ ବେଷ୍ଟିତ ବୋଲି ସ୍ଥିର କରାଯିବ ।୫।

## ଜାରଜଯୋଗ

ନଲଗ୍ନମିନ୍ଦୁଞ୍ଚ ଗୁରୁର୍ନିରୀକ୍ଷତେ ନ ବା ଶଶାଂଙ୍କ ରବିଣା ସମାଗତମ୍
ସପାପକୋର୍କେଣ ଯୁତୋଽଥବା ଶଶୀ ପରେଣ ଜାତଂ ପ୍ରବଦନ୍ତି ନିଶ୍ଚୟାତ୍ ।୬।

ଲଗ୍ନ ଏବଂ ଚନ୍ଦ୍ରଙ୍କୁ ଗୁରୁ ନଦେଖିଲେ ଜାରଜ ବୋଲି କହିବେ । ରବି ଚନ୍ଦ୍ରଙ୍କ ସହିତ ଥିବେ ଗୁରୁ ନଦେଖିଲେ ଜାରଜ ଯାଣିବେ, ପାପଯୁତ ଚନ୍ଦ୍ର ରବି ସହିତ ଥାଇ ଗୁରୁର ଗୃହ ବା ତାହାର ଦ୍ରେକ୍କାଣରେ ବା ନବାଂଶରେ. ବା ତା ସଙ୍ଗରେ ନଥିଲେ ପରଜାତ କହିବେ ।

## ପିତାବନ୍ଧନରେ ଥିବା ଯୋଗ

କ୍ରୂରର୍କ୍ଷଗତାବଶୋଭନୌ ସୂର୍ଯ୍ୟାଦ୍ଦ୍ୟୂନନବାତ୍ମଜସ୍ଥିତୌ
ବଦ୍ଧସ୍ତୁ ପିତା ବଦେଶଗଃ ସ୍ୱେ ବା ରାଶିବଶାଦ୍‌ଥୋ ପଥି ।୭।

ଦୁଇଟି ପାପଗ୍ରହ (ଶନି ଓ ମଙ୍ଗଳ) ପାପଗ୍ରହର ଗୃହରେ ଥାଇ , ରବିଠାରୁ ସପ୍ତମ, ନବମ ବା ପଞ୍ଚମରେ ଥିଲେ ପିତା ବନ୍ଧନରେ ଥିବା କଥା କହିବେ ।

ପୂର୍ବୋକ୍ତ ଯୋଗରେ ରବି ଚର ରାଶିରେ ଥିଲେ ପିତା ବିଦେଶରେ ବନ୍ଧନଯୁକ୍ତ, ସ୍ଥିର ରାଶିରେ ଥିଲେ ସ୍ୱଦେଶରେ ବନ୍ଧନଯୁକ୍ତ ଓ ଦ୍ୱିସ୍ୱଭାବ ରାଶିରେ ଥିଲେ ରାସ୍ତାରେ ବନ୍ଧନ ଯୁକ୍ତ ବୋଲି କହିବେ ।

## ନୌକାରେ ଜନ୍ମଯୋଗ

ପୂର୍ଣ୍ଣେ ଶଶିନି ସ୍ୱରାଶିଗେ ସୌମ୍ୟେ ଲଗ୍ନଗତେ, ଶୁଭେ ସୁଖେ
ଲଗ୍ନେ ଜଳଜେଽସ୍ତଗେଽପି ବା ଚନ୍ଦ୍ରେ ପୋତଗତା ପ୍ରସୂୟତେ ।୮।

ପୂର୍ଣ୍ଣଚନ୍ଦ୍ର କର୍କଟରେ ଥିବେ, ବୁଧ ଲଗ୍ନରେ ଥିବେ, ବୃହସ୍ପତି ଚତୁର୍ଥରେ ଥିଲେ ନୌକା ବା ଜାହାଜରେ ପ୍ରସବ ହେବା କହିବେ ।

ଜଳଚର ରାଶିରେ ଲଗ୍ନଥାଇ ସପ୍ତମ ସ୍ଥାନରେ ଚନ୍ଦ୍ର ଥିଲେ ନୌକାରେ ପ୍ରସବ କହିବେ ।

## ଜଳନିକଟରେ ଜନ୍ମନିର୍ଣ୍ଣୟ

ଆପ୍ୟୋଦୟମାପ୍ୟଗଃ ଶଶୀ ସଂପୂର୍ଣ୍ଣଃ ସମବେକ୍ଷତେଽଥବା
ମେଷୂରଣବନ୍ଧୁଲଗ୍ନଗଃ ସ୍ୟାତ୍ ସୂତିଃ ସଲିଲେ ନ ସଂଶୟଃ ।୯।

ଜଳଚର ରାଶି ଲଗ୍ନହେବ ଓ ଚନ୍ଦ୍ର ମଧ୍ୟ ଜଳଚର ରାଶିରେ ରହିଥିବେ ତେବେ ଜଳ ନିକଟରେ ପ୍ରସବ କହିବେ ।

ଜଳଚର ରାଶି ଲଗ୍ନହେବ ଏହାକୁ ପୂର୍ଣ୍ଣଚନ୍ଦ୍ର ଦେଖିଲେ ଜଳ ସମୀପ ପ୍ରସବ କହିବେ ।

ଜଳଚର ରାଶିରେ ଥିବା ଚନ୍ଦ୍ର ଦଶମ, ଚତୁର୍ଥ ବା ଲଗ୍ନରେ ଥିଲେ ଜଳ ସମୀପରେ ଜନ୍ମ କହିବେ ।

## କାରାଗାର ତଥା ଗର୍ତ୍ତାଦିରେ ଜନ୍ମ

ଉଦୟୋଡୁପୟୋର୍ବ୍ୟୟସ୍ଥିତେ ଗୁପ୍ତ୍ୟାଂ ପାପନିରୀକ୍ଷିତେ ଯମେ
ଅଳିକର୍କିଯୁତେ ବିଲଗ୍ନଗେ ସୌରେ ଶୀତକରେକ୍ଷିତେଽବଟେ ।୧୦।

ଲଗ୍ନ ଓ ଚନ୍ଦ୍ର ଏକତ୍ରଥିଲେ, ଦ୍ୱାଦଶରେ ଶନିଥାଇ ପାପଗ୍ରହ ଦ୍ୱାରା ଦୃଷ୍ଟ ହେଲେ ବନ୍ଧନାଗାରରେ ଜନ୍ମ କହିବେ ।

ଶନି ବୃଶ୍ଚିକ ବା କର୍କଟ ଲଗ୍ନରେ ଥିବେ, ଚନ୍ଦ୍ର ଏହାକୁ ଦେଖିଲେ 'ଖାଇ' ଗଡ଼ି ବା କୂପ ନିକଟରେ ଜନ୍ମ କହିବେ ।

## କ୍ରୀଡ଼ାସ୍ଥଳ, ଦେବାଗାର ଓ ଉଷର ଭୂମିରେ ଜନ୍ମଯୋଗ

ମନ୍ଦେଽବ୍ଜଗେତେ ବଲଗ୍ନଗେ ବୁଧସୂର୍ୟ୍ୟେନ୍ଦୁନିରୀକ୍ଷିତେ କ୍ରମାତ୍
କ୍ରୀଡାଭବନେ ସୁରାଲୟେ ସୋଷରଭୂମିଷୁଚପ୍ରସୂୟତେ ।୧୧।

ଶନି ଜଳରାଶିରେ ଥାଇ ଲଗ୍ନସ୍ଥହେଲେ, ଏହାଙ୍କୁ ବୁଧ ଦେଖିଲେ କ୍ରୀଡ଼ାଭବନ (ବିହାର ଗୃହ) ରେ ପ୍ରସବ ହେବ; ରବି ଦେଖିଲେ ଦେବାଳୟରେ ଜନ୍ମ ହେବ ଓ ଚନ୍ଦ୍ର ଦେଖିଲେ ଊଷର ଭୂମି (ଝାଙ୍ଗରା) ରେ ପ୍ରସବ କହିବେ ।

## ଶ୍ମଶାନ, ଦେବାଳୟ, ରାଜଗୃହ, ଅଗ୍ନିଶାଳା ତଥା ଶିଳ୍ପଶାଳାରେ ଜନ୍ମଯୋଗ

ନୃଲଗ୍ନଗଂ ପ୍ରେକ୍ଷ୍ୟ କୁଜଃ ଶ୍ମଶାନେ ରମ୍ୟେ ସିତେନ୍ଦୁ ଗୁରୁ ରଗ୍ନିହୋତ୍ରେ
ରବିର୍ନରେନ୍ଦ୍ରାମରଗୋକୁଳେଷୁ ଶିଳ୍ପାଳୟେ ଜ୍ଞଃ ପ୍ରସବଂ କରୋତି ।୧୨।

ମନୁଷ୍ୟରାଶି (ମିଥୁନ, କନ୍ୟା, ତୁଳା, ଧନୁର ପୂର୍ବାର୍ଦ୍ଧ ଓ କୁମ୍ଭ) ଲଗ୍ନ ହୋଇଥିବ, ଶନି ତହିଁରେ ଥିବ, ମଙ୍ଗଳର ଦୃଷ୍ଟି ରହିଥିବ ତେବେ ଶିଶୁ ଶ୍ମଶାନରେ ପ୍ରସବ ହେବ ।

ଏହି ମନୁଷ୍ୟ ରାଶି ଲଗ୍ନରେ ଶନିଥାଇ ଚନ୍ଦ୍ର ଓ ଶୁକ୍ରଙ୍କ ଦ୍ୱାରା ଦୃଷ୍ଟହେଲେ ସୁନ୍ଦର ସ୍ଥାନରେ ପ୍ରସବ ହୋଇଥିବ ।

ଏହି ଭଳି ଥିବା ଶନି ଗୁରୁଦ୍ୱାରା ଦୃଷ୍ଟ ହେଲେ ଅଗ୍ନିଶାଳାରେ ଜନ୍ମ କହିବେ । ରବିଦ୍ୱାରା ଦୃଷ୍ଟହେଲେ ରାଜାର ଗୃହ ଅଥବା ଦେବାଳୟ କିମ୍ବା ଗୋଶାଳାରେ ଜନ୍ମ କହିବେ । ବୁଧ ଏଭଳି ଥିବା ଶନିଙ୍କୁ ଦେଖୁଥିଲେ ଶିଳ୍ପଶାଳାରେ ପ୍ରସବ କହିବେ ।

## ସ୍ୱଗୃହାଦସ୍ଥାନ ନିର୍ଣ୍ଣୟ

ରାଶ୍ୟଂଶସମାନଗୋଚରେ ମାର୍ଗେ ଜନ୍ମଚରେ ସ୍ଥିରେ ଗୃହେ
ସ୍ୱର୍କ୍ଷାଂଶଗତେ ସ୍ୱମନ୍ଦିରେ ବଲଯୋଗାତ୍ଫଲମଂଶକର୍କ୍ଷୟୋଃ ।୧୩।

ଜନ୍ମଲଗ୍ନର ସମାନ ରାଶି ବା ନବାଂଶରାଶି ସମାନ ଭୂମିରେ ପ୍ରାଣୀ ଜନ୍ମଲାଭ କରେ ।

ଚର ଲଗ୍ନ ବା ଚର ନବାଂଶ ହେଲେ ପଥରେ, ସ୍ଥିର ଲଗ୍ନ ବା ସ୍ଥିର ନବାଂଶ ହେଲେ ନିଜଘରେ, ଦ୍ୱିସ୍ୱଭାବ ହେଲେ ଗୃହର ବାହାରେ ପ୍ରସବ ହେବା କଥା କହିବେ ।

ଯେ କୌଣସି ଲଗ୍ନହେଉ ତାହାର ନିଜର ନବାଂଶରେ ହେଲେ ସ୍ୱଗୃହରେ ଜନ୍ମ କହିବେ । ଲଗ୍ନର ଫଳଠାରୁ ନବାଂଶର ଫଳ ଭିନ୍ନ ହେଲେ ଯେ ବଳିଷ୍ଠ ତାହାର ଫଳ ଗ୍ରହଣ କରିବେ ।

## ମାତୃତ୍ୟକ୍ତ ଜ୍ଞାନ

ଆରାର୍କଜୟୋସ୍ତ୍ରିକୋଣଗେ ଚନ୍ଦ୍ରେଽସ୍ତେ ଚ ବିସୃଜ୍ୟତେଽମ୍ବୟା
ଦୃଷ୍ଟେଽମରରାଜମନ୍ତ୍ରିଣା ଦୀର୍ଘାୟୁଃ ସୁଖଭାକ୍‌ଚ ସ ସ୍ମୃତଃ ।୧୪।

ମଙ୍ଗଳ ଏବଂ ଶନି ଏକ ରାଶିରେ ଥିବେ, ଏହି ରାଶିର ପଞ୍ଚମ, ନବମ ବା ସପ୍ତମ ସ୍ଥାନରେ ଚନ୍ଦ୍ର ଥିବେ ତେବେ ଜାତକର ମା ତାକୁ ତ୍ୟାଗ କରିଦେବ । ଯଦି ବୃହସ୍ପତିର ଦୃଷ୍ଟି ଚନ୍ଦ୍ର ପ୍ରତି ଥିବ ତେବେ ମାତା ତ୍ୟାଗ କରି ପଳାଇଲେ ସୁଦ୍ଧା ଶିଶୁ ଅନ୍ୟଦ୍ୱାରା ପାଳିତ ହୋଇ ସୁଖଭୋଗ କରିବ ଓ ଦୀର୍ଘାୟୁ ହେବ ।

ପାପେକ୍ଷିତେ ତୁହିନଗା-ବୁଦୟେ କୁଜେଽସ୍ତେ
ତ୍ୟକ୍ତୋ ବିନଶ୍ୟତି କୁଜାର୍କଜୟୋସ୍ତଥା ଯେ ।
ସୌମ୍ୟେଽପି ପଶ୍ୟତି ତଥାବିଧହସ୍ତମେତି
ସୌମ୍ୟେତରେଷୁ ପରହସ୍ତଗତୋଽପ୍ୟନାୟୁଃ ।୧୫।

ଚନ୍ଦ୍ର ଲଗ୍ନରେ ଥାଇ ପାପଗ୍ରହଦ୍ୱାରା ଦୃଷ୍ଟ ହେବ ଏବଂ ମଙ୍ଗଳ ସପ୍ତମରେ ଥିବ ତେବେ ମାତୃତ୍ୟକ୍ତ ସନ୍ତାନ ବଞ୍ଚିବ ନାହିଁ । ଲଗ୍ନସ୍ଥ ଚନ୍ଦ୍ର ପାପଦୃଷ୍ଟ ହେବ, ଏକାଦଶରେ ମଙ୍ଗଳ ଓ ଶନି ଥିଲେ ତ୍ୟକ୍ତ ସନ୍ତାନ ବଞ୍ଚିବନାହିଁ । ପାପଦୃଷ୍ଟ ଲଗ୍ନସ୍ଥ ଚନ୍ଦ୍ର ଶୁଭଗ୍ରହ ଦ୍ୱାରା ଦୃଷ୍ଟହେଲେ ଶୁଭାଶୁଭ ଗ୍ରହମଧ୍ୟରୁ ଯେ ଗ୍ରହ ବଳିଷ୍ଠ ସେହି ଗ୍ରହର ଜାତିତୁଲ୍ୟ ଜାତୀୟ ବ୍ୟକ୍ତି ଦ୍ୱାରା ତ୍ୟକ୍ତ ସନ୍ତାନ ପ୍ରତିପାଳିତ ହେବ । ଏହିଭଳି ଚନ୍ଦ୍ରକୁ ଶୁକ୍ର ଓ ବୁଧ ଦେଖିବେ କିନ୍ତୁ ଗୁରୁ ଯଦି ନ ଦେଖିବେ ତେବେ ପରହସ୍ତଗତ ଏହି ଶିଶୁ ବଞ୍ଚିବ ନାହିଁ ।

## —ବିଭିନ୍ନ ସ୍ଥାନରେ ଜନ୍ମଯୋଗ—

ପିତୃମାତୃଗୃହେଷୁ ତଦ୍‌ବଲାତ୍ତରୁଶାଲାଦିଷୁ ନୀଚଗୈଃ ଶୁଭୈଃ
ଯଦି ନୈକଗତୈସ୍ତୁ ବୀକ୍ଷିତୌ ଲଗ୍ନେନ୍ଦୁ ବିଜନେ ପ୍ରସୂୟତେ ।୧୬।

ଜନ୍ମକାଳରେ ପିତୃସଂଜ୍ଞକ ଗ୍ରହ ବଳବାନ୍ ହେଲେ ପିତୃଗୃହରେ ମାତୃସଂଜ୍ଞକ ଗ୍ରହ ବଳବାନ୍ ହେଲେ ମାତୁଳ ଗୃହରେ ପିତୃବ୍ୟସଂଜ୍ଞକ ଗ୍ରହ ବଳବାନ୍ ହେଲେ ପିତୃବ୍ୟ ଗୃହରେ ଓ ମାତୃବ୍ୟ (ମାଉସୀ–ମାତୃଷ୍ୱସା) ଗ୍ରହ ବଳିଷ୍ଠ ହେଲେ ମାଉସୀ ଘରେ ପ୍ରସବ କହିବେ ।

ଏହି ଏହି ସଂକ୍ଷକ ଗ୍ରହ କଏ କଏ ହେବେ ତାହା ଚତୁର୍ଥ ଅଧ୍ୟାୟର ପଞ୍ଚମ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି ।

## ଅନ୍ଧକାର ତଥା ଦୀପାଲୋକରେ ଜନ୍ମ

ମନ୍ଦର୍କ୍ଷାଂଶେ ଶଶିନି ହିବୁକେ ମନ୍ଦଦୃଷ୍ଟେଽବ୍ଜଗେ ବା
ତଦ୍‌ଯୁକ୍ତେବା ତମସିଶୟନଂ ନୀଚସଂସ୍ଥୈଶ୍ଚ ଭୂମୌ ।
ଯଦ୍‌ବଦ୍ରାଶିର୍ବ୍ରଜତିହରିଜଂ ଗର୍ଭମୋକ୍ଷସ୍ତୁତଦ୍‌ବ-
ତ୍ପାପୈଶ୍ଚନ୍ଦ୍ରେ ସ୍ମରସୁଖଗତୈଃ କ୍ଲେଶମାହୁର୍ଜନନ୍ୟାଃ ।୧୭।

ଚନ୍ଦ୍ର ଶନିର ନବାଂଶରେ ଥିଲେ ଅନ୍ଧକାରରେ ଜନ୍ମ କହିବେ । ଚନ୍ଦ୍ର ଲଗ୍ନର ଚତୁର୍ଥ ସ୍ଥାନରେ ଥିଲେ ଅନ୍ଧକାରରେ ଜନ୍ମ କହିବେ । ଚନ୍ଦ୍ରଙ୍କୁ ଶନି ଦେଖିଲେ କିମ୍ବା ଚନ୍ଦ୍ର ଜଳଚର ରାଶି ନବାଂଶରେ ଥିଲେ ଅନ୍ଧକାରରେ ଜନ୍ମ କହିବେ । ଚନ୍ଦ୍ର ଶନିଙ୍କ ସହିତ ଥିଲେ ଅନ୍ଧକାରରେ ଓ ରବିଙ୍କ ଦୃଷ୍ଟିରେ ଥିଲେ ଅଲୋକରେ ପ୍ରସବ କହିବେ ।

ପ୍ରସବର ଏହି ଲକ୍ଷଣ ଗର୍ଭାଧାନ ଲଗ୍ନରେ ମଧ୍ୟ ପ୍ରଯୋଜ୍ୟ । ଗର୍ଭାଧାନ କାଳ ଅନ୍ଧକାର ବା ଅଲୋକରେ ଘଟିଛି ଏହି ନିୟମରେ ଜଣାଯାଏ । ତିନୋଟି ବା ତହିଁରୁ ଅଧିକ ଗ୍ରହ ନିଜ ନିଜ ନୀଚସ୍ଥାନରେ ଥିଲେ ଭୂମି ଉପରେ (ତୃଣାଚ୍ଛାଦିତ ଭୂମି) ପ୍ରସବ ଘଟେ ।

କୌଣସି କୌଣସି ଆଚାର୍ଯ୍ୟ କହନ୍ତି ଚନ୍ଦ୍ର ନୀଚରେ ଥାଇ ଲଗ୍ନର ଚତୁର୍ଥ ବା ଲଗ୍ନରେ ଥିଲେ ଭୂମି ଉପରେ ପ୍ରସବ ବୋଲି କହିବେ ।

ଲଗ୍ନରେ ଯେ ରାଶିଥିବ, ତାହାର ଉଦୟକାଳ ଯେତକ ବାକିଥିବ ଗର୍ଭର ମୋଚନ ସେତକ ସମୟ ଲଗିଥିବା ଜଣାଯାଏ । ମନେକର ଜନ୍ମଲଗ୍ନ କନ୍ୟାର ଦୁଇଦଣ୍ଡ ଜନ୍ମ ସମୟକୁ ବାକିଅଛି । ଜଣାଗଲା ଯେ ଦୁଇଦଣ୍ଡ ସମୟ ମାତ୍ର ଗର୍ଭମୋଚନ ପାଇଁ ଲଗିଛି ।

ଶୀର୍ଷୋଦୟରାଶି ଲଗ୍ନହେଲେ ଉପର ମୁହଁ ହୋଇ, ପୃଷ୍ଠୋଦୟ ଲଗ୍ନ ହେଲେ ନିମ୍ନମୁଖ, ମୀନଲଗ୍ନ ହୋଇଲେ ପାର୍ଶ୍ୱଦେଶ ନିମ୍ନକୁ ରହି ଜାତକ ଜନ୍ମଲାଭ କରିଥାଏ ।

ଚନ୍ଦ୍ରର ସପ୍ତମ ବା ଚତୁର୍ଥରେ ପାପଗ୍ରହ ଥିଲେ ପ୍ରସବ କାଳରେ ମାତୃକଷ୍ଟ କହିବେ ।

## ଦୀପ ଓ ଗୃହଦ୍ୱାରଜ୍ଞାନ

ସ୍ନେହଃ ଶଶାଙ୍କାଦୁଦୟାଚ୍ଚ ବର୍ତ୍ତିର୍ଦ୍ଦୀପୋର୍କଯୁକ୍ତର୍କ୍ଷବଶାଚ୍ଚରାଦ୍ୟୈଃ
ଦ୍ୱାରଂ ଚ ତଦ୍‌ବାସ୍ତୁନିକେନ୍ଦ୍ରସଂସ୍ଥୈର୍ଜ୍ଞେୟଂ ଗ୍ରହୈର୍ବୀର୍ଯ୍ୟସମନ୍ୱିତୈର୍ବା ।୧୮।

ଜନ୍ମକାଳୀନ ଚନ୍ଦ୍ର ରାଶିର ଆରମ୍ଭରେ ଥିଲେ ତୈଳ ପୂର୍ଣ୍ଣ ପ୍ରଦୀପ କହିବେ, ମଧ୍ୟରେ ଥିଲେ ମଧ୍ୟମ ତୈଳ ତଥା ରାଶିଭୋଗାନୁସାରେ ତୈଳ ଭାଗ କହିବେ । ରାଶିର ଅଂଶଭୋଗକୁ ଧରି ତୈଳର ଅନୁପାତ ହିସାବ କରିବେ ।

ଲଗ୍ନର ଆରମ୍ଭ ହେଲେ ବତୀକୁ ନୂଆ ବୋଲି କହିବେ । ଲଗ୍ନର ଭୋଗାନୁସାରେ ବଳିତା କ୍ରମଶଃ ଶେଷ ହୋଇଯାଏ । ଲଗ୍ନର ଭୋଗାଂଶକୁ ନେଇ ବତୀ ବା ବଳିତା ସରିଯାଇ ଥିବା ସ୍ଥିର କରିବେ । ରବି ଚରରାଶିରେ ଥିଲେ ଦୀପ ଏଠାକୁ ସେଠାକୁ ବୁଲିଯାଉଥିବ । ରବି ସ୍ଥିରରାଶିରେ ଥିଲେ ଦୀପ ଗୋଟିଏ ସ୍ଥାନରେ ଥୁଆ ହୋଇଥିବ । ରବି ଦ୍ୱିସ୍ୱଭାବ ରାଶିରେ ଥିଲେ ଦୀପ ଗୋଟିଏ ଥୁଆ ହୋଇଥିବ, ଓ ତାକୁ ଏଣେ ତେଣେ ନିଆଅଣା କରାଯାଉଥିବ ।

ରବି ଯେ ରାଶିରେ ଥିବେ ଦୀପ ସେହି ରାଶିର ଦିଗରେ ରହିବା କହିବେ । କେନ୍ଦ୍ରରେ ଥିବା ଗ୍ରହତୁଲ୍ୟ ସୂତିକା ଗୃହର ଦ୍ୱାରସ୍ଥିର କରିବେ । ରବି କେନ୍ଦ୍ରରେ ଥିଲେ ପୂର୍ବଦିଗ, ଶୁକ୍ର କେନ୍ଦ୍ରରେ ଥିଲେ ଅଗ୍ନିକୋଣ, ମଙ୍ଗଳ କେନ୍ଦ୍ରରେ ଥିଲେ ଦକ୍ଷିଣ ଦିଗ, ଏହିପରି ରାହୁ ଥିଲେ ନୈଋତ, ଶନିଥିଲେ ପଶ୍ଚିମ, ଚନ୍ଦ୍ରଥିଲେ ବାୟବ୍ୟ, ବୁଧଥିଲେ ଉତ୍ତର ଓ ବୃହସ୍ପତି କେନ୍ଦ୍ରରେ ଥିଲେ ଐଶାନ୍ୟ ଦିଗରେ ଦ୍ୱାରଥିବା କହିବେ ।

କେନ୍ଦ୍ରରେ ବହୁତ ଗ୍ରହଥିଲେ ଯେ ଗ୍ରହ ବଳବାନ୍ ତାହାର ଦିଗରେ ଦ୍ୱାର କହିବେ । କେନ୍ଦ୍ରରେ ଗ୍ରହ ନଥିଲେ ଲଗ୍ନର ଯେ ଦିଗ ସେ ଦିଗରେ ଦ୍ୱାରଥିବା କଥା କହିବେ ।୧୮।

## ସୂତିକା ଗୃହର ବର୍ଣ୍ଣନା

ଜୀର୍ଣ୍ଣଂ ସଂସ୍କୃତମର୍କଜେ କ୍ଷିତିସୁତେ ଦଗ୍ଧଂ ନବଂ ଶୀତଗୌ
କାଷ୍ଠାଢ୍ୟଂ ନଦୃଢଂ ରବୌ ଶଶିସୁତେ ତନ୍ନୈକଶିଳ୍ପ୍ୟୁଦ୍ଭବମ୍
ରମ୍ୟଂ ଚିତ୍ରଯୁତଂ ନବଞ୍ଚ ଭୃଗୁଜେ ଜୀବେ ଦୃଢଂ ମନ୍ଦିରଂ
ଚକ୍ରସ୍ଥୈଶ୍ଚ ଯଥୋପଦେଶରଚନାଂ ସାମନ୍ତପୂର୍ବାଂ ବଦେତ୍ ।୧୯।

ଶନି ସମସ୍ତ ଗ୍ରହମାନଙ୍କ ମଧ୍ୟରେ ବଳବାନ୍ ହେଲେ ମରାମତ ହୋଇ-ଥିବା ପୁରୁଣା ଗୃହରେ ଜନ୍ମସ୍ଥିର କହିବେ । ମଙ୍ଗଳ ବଳବାନ୍ ହେଲେ ପୋଡ଼ି ଯାଇଥିବା ଗୃହରେ, ଚନ୍ଦ୍ର ବଳବାନ୍ ହେଲେ ନୂତନ ଗୃହରେ ପ୍ରସବ ହୋଇଥିବ ।

ରବି ବଳିଷ୍ଠ ହୋଇଥିଲେ କାଠଅଧିକ ଅଦୃଢ଼ ଘରେ ଜନ୍ମ ହେବ । ବୁଧ ବଳବାନ୍ ହୋଇଥିଲେ ନାନାପ୍ରକାର ଚିତ୍ରଯୁକ୍ତ ଗୃହ, ଶୁକ୍ର ବଳବାନ୍ ହେଲେ ସୁନ୍ଦର ନୂତନ ଏବଂ ଚିତ୍ରିତ ଗୃହ, ବୃହସ୍ପତି ବଳବାନ୍ ହେଲେ ଦୃଢ଼ (ପକ୍କା) ଗୃହରେ ପ୍ରସବ ହେବ ।

ଏହି ବଳବାନ୍ ଗ୍ରହର ଆଗ ତଥା ପଛରେ ଓ ସଙ୍ଗରେ ଅନ୍ୟ ଯେ ଗ୍ରହ ଥିବେ ସେମାନଙ୍କର ଅନୁରୂପ ଗୃହ ସେ ଘରର ଆଗେପଛେ ଥିବା କଥା କହିବେ ।୧୯।

## ସମଗ୍ର ବାସ୍ତୁମଧ୍ୟରେ ସୂତିକା ଗୃହର ଦିଗ୍‌ନିର୍ଣ୍ଣୟ

ମେଷକୁଳୀରତୁଲାଳିଘଟୈଃ ପ୍ରାଗୁତ୍ତରତୋ ଗୁରୁସୌମ୍ୟଗୃହେଷୁ
ପଶ୍ଚିମତଶ୍ଚ ବୃଷେଣ ନିବାସୋ ଦକ୍ଷିଣଭାଗକରୌ ମୃଗସିଂହୌ ।୨୦।

ମେଷ, କର୍କଟ, ତୁଳା, ବୃଶ୍ଚିକ ଏବଂ କୁମ୍ଭ ଜନ୍ମଲଗ୍ନହେଲେ, ନବାଂଶ ହେଲେ ବାସ୍ତୁର ପୂର୍ବଭାଗରେ ସୂତିକାଗୃହ କହିବେ । ଧନୁ, ମୀନ, ମିଥୁନ, ଓ କନ୍ୟା ଜନ୍ମଲଗ୍ନ ହେଲେ ବା ନବାଂଶ ହେଲେ ଉତ୍ତର ଭାଗରେ ସୂତିକା ଗୃହହେବ । ବୃଷରାଶି ବା ତାହାର ନବାଂଶ ଲଗ୍ନଗତ ହେଲେ ପଶ୍ଚିମରେ ଗୃହହୁଏ । ମକର ବା ସିଂହ ଲଗ୍ନ ତଥା ନବାଂଶରେ ଜନ୍ମହେଲେ ଦକ୍ଷିଣ ଅଡ଼େ ସୂତିକା ଗୃହଥାଏ ।୨୦।

## ସୂତିକାର ଶୟନ ସ୍ଥାନ ଓ ଶଯ୍ୟା ବିଚାର

ପ୍ରାଚ୍ୟାଦିଗୃହେ କ୍ରିୟାଦୟୋ ଦ୍ୱୌ ଦ୍ୱୌ କୋଣଗତାଦ୍ୱିମୂର୍ତ୍ତୟଃ
ଶଯ୍ୟାସ୍ୱପି ବାସ୍ତୁବଦ୍‌ବଦେତ୍ପାଦୈଃ ଷଟ୍‌ତ୍ରିନବାନ୍ତ୍ୟସଂସ୍ଥିତୈଃ ।୨୧।

ସୂତିକା ଗୃହର କେଉଁ ସ୍ଥାନରେ ଶୋଇଥିବ ତାହା କୁହାଯାଉଅଛି । ମେଷ ବା ବୃଷଲଗ୍ନ ହେଲେ ଘରର ପୂର୍ବଭାଗରେ, ମିଥୁନ ଲଗ୍ନରେ ଆଗ୍ନେୟ କୋଣ, କର୍କଟ ଓ ସିଂହ ଲଗ୍ନରେ ଦକ୍ଷିଣରେ, କନ୍ୟା ଲଗ୍ନରେ ନୈଋତ କୋଣରେ, ତୁଳା ଓ ବିଛାଲଗ୍ନରେ ପଶ୍ଚିମରେ, ଧନୁଲଗ୍ନରେ ବାୟବ୍ୟ

କୋଣରେ, ମକର ଓ କୁମ୍ଭଲଗ୍ନରେ ଉତ୍ତରରେ, ମୀନଲଗ୍ନ ହେଲେ ଈଶାନ୍ୟ କୋଣରେ ସୂତିକା ଶୟନ କରିଥାଏ ।

ତୃତୀୟ, ଷଷ୍ଠଭାବ ଦକ୍ଷିଣପାଦ, ନବମ, ଦ୍ୱାଦଶ ବାମପାଦ; ଲଗ୍ନ ଓ ଦ୍ୱିତୀୟ ଶିର, ଚତୁର୍ଥ ପଞ୍ଚମ ଦକ୍ଷିଣ ଭାଗ, ସପ୍ତମ ଅଷ୍ଟମ ମଧ୍ୟ ଭାଗ; ଦଶମ ଓ ଏକାଦଶ ବାମଭାଗ ରୂପେ ଶଯ୍ୟାକୁ କଳ୍ପନା କରିବ । ଯେ ଭାବରେ ଯେ ଗ୍ରହଥିବ ତାହାର ଲକ୍ଷଣାନୁରୂପ ଶଯ୍ୟାର ବର୍ଣ୍ଣ ଲକ୍ଷଣାଦି କହିବେ ।୨୧

## ଉପସୂତକା ସଂଖ୍ୟା ନିର୍ଣ୍ଣୟ

ଚନ୍ଦ୍ରଲଗ୍ନାନ୍ତରଗତୈର୍ଗ୍ରହୈଃ ସ୍ୟୁରୁପସୂତକାଃ
ବହିରନ୍ତଶ୍ଚ ଚକ୍ରାର୍ଦ୍ଧେ ଦୃଶ୍ୟାଦୃଶ୍ୟେଽନ୍ୟଥାପରେ ।୨୨।

ଚନ୍ଦ୍ର ଓ ଲଗ୍ନ ମଧ୍ୟରେ ଅର୍ଥାତ୍ ଲଗ୍ନଠାରୁ ଚନ୍ଦ୍ରଥିବା ସ୍ଥାନ ମଧ୍ୟରେ ଯେତକି ଗ୍ରହଥିବେ ସେତକ ସ୍ତ୍ରୀ (ଉପସୂତିକା) ପ୍ରସବ କାଳରେ ମା ପାଖରେ ଥିବେ ।

ଏହି ଉପସୂତିକା ମାନଙ୍କର ବସ୍ତ୍ର, ଆଭରଣ, ବର୍ଣ୍ଣ ଲକ୍ଷଣାଦି ଏହି ଏହି ଗ୍ରହମାନଙ୍କ ଅନୁରୂପ ହେବ, ଅପର ମତ ଏହି ଯେ ଦୃଶ୍ୟ ଚକ୍ରାର୍ଦ୍ଧ ଅର୍ଥାତ୍ ସପ୍ତମ ଭାବର ସ୍ଫୁଟ ଠାରୁ ଆରମ୍ଭ କରି ଲଗ୍ନସ୍ଫୁଟ ପର୍ଯ୍ୟନ୍ତ ଯେତକି ଗ୍ରହ ଥିବେ ସେତକି ସ୍ତ୍ରୀ ସୂତିକାଗୃହର ବାହାରେ ଥିବେ । ଅଦୃଶ୍ୟ ଚକ୍ରାର୍ଦ୍ଧ ଅର୍ଥାତ୍ ଲଗ୍ନସ୍ଫୁଟ ଠାରୁ ସପ୍ତମ ସ୍ଫୁଟ ମଧ୍ୟରେ ଯେତେ ଗ୍ରହଥିବେ ସେତକି ସ୍ତ୍ରୀ ଘର ଭିତରେ ଥିବା କହିବେ ।

କେହି୨ ଆଚାର୍ଯ୍ୟ (ଜୀବଶର୍ମାଦି) ଉପର୍ଯ୍ୟୁକ୍ତ ମତର ବିପରୀତ କହନ୍ତି । ସେମାନଙ୍କ ମତରେ ଦୃଶ୍ୟ ଚକ୍ରାର୍ଦ୍ଧ ମଧ୍ୟସ୍ଥ ଗ୍ରହସଂଖ୍ୟା ସମାନ ଉପସୂତିକା ପ୍ରସବଗୃହ ମଧ୍ୟରେ ଓ ଅଦୃଶ୍ୟ ଚକ୍ରାର୍ଦ୍ଧ ଗତ ଗ୍ରହ ପ୍ରସବ ଗୃହ ବାହାରେ ଥିବା କଥା କହିବେ ।୨୨।

## ଶିଶୁର ସ୍ୱରୂପ ନିରୂପଣ

ଲଗ୍ନନବାଂଶପତୁଲ୍ୟ ତନୁଃ ସ୍ୟାଦ୍‌ବୀର୍ଯ୍ୟଯୁତ ଗ୍ରହତୁଲ୍ୟ ତନୁର୍ବା ।
ଚନ୍ଦ୍ରସମେତନବାଂଶପବର୍ଣ୍ଣଃ କାଦିବଲଗ୍ନବିଭକ୍ତବିଭାଗାଃ ।୨୩।

ଜନ୍ମଲଗ୍ନର ନବାଂଶାଧିପତି ବଳବାନ୍ ହୋଇଥିଲେ ସେହିଗ୍ରହର ଅନୁରୂପ ଶିଶୁର ଶରୀର ହୁଏ । ଏହି ଗ୍ରହ ବଳବାନ୍ ହୋଇନଥିଲେ

ଗ୍ରହମାନଙ୍କ ମଧ୍ୟରେ ଯେ ଗ୍ରହ ସମସ୍ତଙ୍କ ଠାରୁ ଅଧିକ ବଳଯୁକ୍ତ ତଦନୁରୂପ ଶରୀର ହୁଏ ।

ଅଥବା ଚନ୍ଦ୍ର ଯେ ଗ୍ରହର ନବାଂଶରେ ଥାଏ ସେହି ଗ୍ରହାନୁରୂପ ରୂପ ହୋଇଥାଏ ।

ଲଗ୍ନ ମସ୍ତକ, ଦ୍ୱିତୀୟ ମୁଖ, ତୃତୀୟ ଗଳା, ଚତୁର୍ଥ ହୃଦୟ, ପଞ୍ଚମ ଜଠର, ଷଷ୍ଠ କଟି, ସପ୍ତମ ନାଭିର ନିମ୍ନସ୍ଥାନ, ଅଷ୍ଟମ ଲିଙ୍ଗସ୍ଥାନ, ନବମ ଊରୁ, ଦଶମ ଜଂଘ, ଏକାଦଶ ଜାନୁ, ଦ୍ୱାଦଶ ପାଦ କଳ୍ପନା କରି ଯେ ଅଙ୍ଗରେ ରାଶି ପଡ଼ିଲ ସେ ରାଶିର ରାଶିମାନ (ଉଦୟକାଳ) ବେଶୀ ହେଲେ ଦୀର୍ଘାଙ୍ଗ, ଅଳ୍ପ ହେଲେ ହ୍ରସ୍ୱାଙ୍ଗ ସ୍ଥିର କରିବେ ।

## ଦ୍ରେଷ୍କାଣାନୁରୂପ ଅଙ୍ଗବିଭାଗ

କଂଦୃକ୍ ଶ୍ରୋତ୍ରନସାକପୋଲହନବୋ ବକ୍ତ୍ରଞ୍ଚ ହୋରାଦୟ—
ସ୍ତେକଣ୍ଠାଂଶକ ବାହୁପାର୍ଶ୍ୱ ହୃଦୟକ୍ରୋଡ଼ାନିନାଭିସ୍ତତଃ ।
ବସ୍ତିଃ ଶିଶ୍ନଗୁଦେ ତତଶ୍ଚ ବୃଷଣାବୂରୁତତୋ ଜାନୁନୀ
ଜଂଘାଂଘ୍ରି ତ୍ୟୁଭୟତ୍ର ବାମମୁଦିତୈର୍ଦ୍ରେଷ୍କାଣଭାଗୈସ୍ତ୍ରିଧା ।୨୪।

ଲଗ୍ନର ପ୍ରଥମ ଦ୍ରେଷ୍କାଣରେ ଜନ୍ମହେଲେ ଲଗ୍ନଭାବ ମସ୍ତକ, ଦ୍ୱିତୀୟ ଦକ୍ଷିଣ ଚକ୍ଷୁ, ଦ୍ୱାଦଶ ବାମଚକ୍ଷୁ, ତୃତୀୟ ଦକ୍ଷିଣକର୍ଣ୍ଣ, ଏକାଦଶ ବାମକର୍ଣ୍ଣ ଚତୁର୍ଥ ଦକ୍ଷିଣ ନାସାପୁଡ଼ା, ଦଶମ ବାମ ନାସାପୁଡ଼ା, ପଞ୍ଚମ ଦକ୍ଷିଣ କପୋଳ (ଗାଲ) ନବମ ବାମ କପୋଳ, ଷଷ୍ଠ ଦକ୍ଷିଣ ହନୁ (ଥୋଡ଼ି), ଅଷ୍ଟମ ବାମ ହନୁ ଓ ସପ୍ତମ ମୁଖ କଳ୍ପନା କରିବେ ।

ଲଗ୍ନର ଦ୍ୱିତୀୟ ଦ୍ରେଷ୍କାଣରେ ଜନ୍ମହେଲେ ଲଗ୍ନଭାବ କଣ୍ଠ, ଦ୍ୱିତୀୟ ଦକ୍ଷିଣ ସ୍କନ୍ଧ, ଦ୍ୱାଦଶ ବାମ ସ୍କନ୍ଧ, ତୃତୀୟ ଦକ୍ଷିଣ ଭୁଜ, ଏକାଦଶ ବାମଭୁଜ, ଚତୁର୍ଥ ଦକ୍ଷିଣ ପାର୍ଶ୍ୱ, ଦଶମ ବାମ ପାର୍ଶ୍ୱ, ପଞ୍ଚମ ହୃଦୟର ଦକ୍ଷିଣ ଭାଗ, ନବମ ହୃଦୟର ବାମଭାଗ, ଷଷ୍ଠ ପେଟର ଦକ୍ଷିଣ ଭାଗ, ଅଷ୍ଟମ ପେଟର ବାମଭାଗ, ସପ୍ତମ ଭାବ ନାଭିବୋଲି କଳ୍ପନା କରିବେ ।

ଲଗ୍ନର ତୃତୀୟ ଦ୍ରେଷ୍କାଣରେ ଜନ୍ମହେଲେ ଲଗ୍ନଭାବ ବସ୍ତି (ନାଭି ଓ ଲିଙ୍ଗର ମଧ୍ୟସ୍ଥାନ) ଦ୍ୱିତୀୟ ଭାବ ଲିଙ୍ଗ ଓ ଗୁହ୍ୟ ପ୍ରଦେଶର ଦକ୍ଷିଣ ଭାଗ, ଦ୍ୱାଦଶ ଲିଙ୍ଗ ଓ ଗୁହ୍ୟ ପ୍ରଦେଶରେ ବାମ ଭାଗ, ତୃତୀୟ ଅଣ୍ଡକୋଷର ଦକ୍ଷିଣ ଭାଗ, ଏକାଦଶ ବାମ ଭାଗ, ଚତୁର୍ଥ ଭାବ ଦକ୍ଷିଣ ଊରୁ, ଦଶମ ବାମଊରୁ,

ପଞ୍ଚମ ଦକ୍ଷିଣ ଜାନୁ, ନବମ ବାମ ଜାନୁ; ଷଷ୍ଠ ଦକ୍ଷିଣ ଜଂଘ, ଅଷ୍ଟମ ବାମ ଜଂଘ, ସପ୍ତମ ଭାବ ପାଦଦ୍ୱୟ କଳ୍ପନା କରିବେ ।୨୪।

## ଜାତକର ଅଙ୍ଗରେ ଥିବା ଚିହ୍ନ ଜାଣିବା ଉପାୟ

ତସ୍ମିନ୍ ପାପଯୁତେ ବ୍ରଣଂ ଶୁଭଯୁତେ ଦୃଷ୍ଟେ ଚ ଲକ୍ଷ୍ମାଦିଶେତ୍
ସ୍ୱର୍କ୍ଷାଂଶେ ସ୍ଥିରଭଯୁତେଷୁ ସହଜଃ ସ୍ୟାଦନ୍ୟଥାଗନ୍ତୁକଃ ।
ମନ୍ଦେଶ୍ମାନିଲଜୋଗ୍ନିଶସ୍ତ୍ରବିଷଜୋ ଭୌମେ ବୁଧେ ଭୂଭବଃ
ସୂର୍ଯ୍ୟେ କାଷ୍ଠଚତୁଷ୍ପଦେନ ହିମଗୌ ଶୃଙ୍ଗ୍ୟବ୍ଜଜୋଽନ୍ୟୈଃ ଶୁଭମ୍ ।୨୫।

ଯେ ଯେଉଁ ଦ୍ରେଷ୍କାଣରେ ଜନ୍ମ ତାହାର ଲଗ୍ନାଦି ଭାବ କ୍ରମରେ ଯେ ଭାବରେ ପାପଗ୍ରହ ଯୁକ୍ତ ହୋଇଥିବ ସେହି ଅଙ୍ଗରେ ବ୍ରଣ ଚିହ୍ନାଦି ଥିବ, ଶୁଭଗ୍ରହ ଥିଲେ ତିଳ ଚିହ୍ନାଦି ଥିବ (ଯାହାକୁ କଳାଜାଇ କହନ୍ତି) ।

ଏହି ଗ୍ରହ ନିଜ ରାଶିର ନବାଂଶରେ ବା ସ୍ଥିରରାଶିର ନବାଂଶରେ ଥିଲେ ଏହି ଚିହ୍ନ ଜନ୍ମକାଳରୁ ରହିଥିବ, ଅନ୍ୟଥା ଅନ୍ୟ ସମୟରେ ଜାତ ହେବ ।

ପାପଗ୍ରହ ଯୁକ୍ତ ହେଲେ ବ୍ରଣ ଜାତ ହେବା କଥା ଆଗରୁ କୁହାଯାଇଅଛି । କିଏ କିଭଳି ବ୍ରଣ କରାଇବ ତାହା ଉଲ୍ଲେଖ କରାଗଲା । ଶନି ଥିବା ସ୍ଥାନରେ ଯେ ଆଗନ୍ତୁକ ବ୍ରଣ ହେବ ତାହା ପଥରର ଅଘାତରୁ ବା ବାତବ୍ୟାଧି ହେତୁ, ମଙ୍ଗଳ ଏହି ବ୍ରଣ କାରକ ହେଲେ ଅଗ୍ନି ଅଥବା ବିଷ ହେତୁ, ବୁଧ ହେଲେ ଭୂମିରେ ପଡ଼ିବା ହେତୁ, ରବି ଏହାର କାରକ ହେଲେ କାଷ୍ଠର ଅଘାତରୁ କିମ୍ବା ଚତୁଷ୍ପଦ ଜୀବ ହେତୁ, ଚନ୍ଦ୍ର ହେଲେ ଶୃଙ୍ଗଥିବା ଜନ୍ତୁ ଅଥବା ଜଳଜନ୍ତୁର ହେତୁ ଏହି ବ୍ରଣ ଜାତ ହେବ ।

ଶୁଭଗ୍ରହମାନେ ଥିଲେ ଶୁଭଲକ୍ଷଣ ଯୁକ୍ତ ଚିହ୍ନମାନ ଜାତ ହେବ ।୨୫।

ସମନୁପତିତା ଯସ୍ମିନ୍ ଭାଗେ ତ୍ରୟଃ ସବୁଧାଗ୍ରହା
ଭବନ୍ତି ନିୟମାତ୍ତସ୍ୟାବାପ୍ତିଃ ଶୁଭେଷ୍ୱଶୁଭେଷୁ ବା ।
ବ୍ରଣକୃଦଶୁଭଃ ଷଷ୍ଠେ ଦେହେ ତନୋର୍ଭସମାଶ୍ରିତେ
ତିଳକମଶକୃଦ୍ଦୃଷ୍ଟଃ ସୌମ୍ୟୈର୍ୟୁତଶ୍ଚ ସଲକ୍ଷ୍ମବାନ୍ ।୨୬।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ସୂତିକାଧ୍ୟାୟଃ ପଞ୍ଚମଃ—

ବୁଧଯୁକ୍ତ ତିନୋଟି ଶୁଭଗ୍ରହ ଅଥବା ପାପଗ୍ରହ ଯେଉଁ ରାଶିରେ ଥିବେ ସେହି ରାଶିର ଅଙ୍ଗରେ ବ୍ରଣାଦି ଚିହ୍ନଥିବ । ଅଥବା ଏ ଗ୍ରହଟି ଗ୍ରହମାନଙ୍କ

ମଧ୍ୟରୁ ଯେ ଅଧିକ ବଳବାନ୍ ସେହିଗ୍ରହର ଦଶାଭୋଗ କାଳରେ ବ୍ରଣ ଜାତ ହେବ ।

ପାପଗ୍ରହ ଲଗ୍ନର ଷଷ୍ଠରେ ଥିଲେ ସେ ରାଶିର ଯେ ଅଙ୍ଗ ସେଥିରେ ବ୍ରଣ ଜାତ ହେବ । ଏହି ଷଷ୍ଠସ୍ଥ ପାପଗ୍ରହଙ୍କୁ ଶୁଭଗ୍ରହ ଦେଖୁଥିଲେ ସେହି ରାଶିର ଅଙ୍ଗରେ ତିଳାଦି ଶୁଭ ଚିହ୍ନ ରହିବ ।

ଶୁଭଗ୍ରହ ଓ ପାପଗ୍ରହ ମିଶି ଷଷ୍ଠରେ ଥିଲେ ଶୁଭଚିହ୍ନ (ତିଳ, ମଶକାଦି) ମାତ୍ର ରହିବ ।୨୬।

ବୃହଜ୍ଜାତକର ସୂତିକାଧ୍ୟାୟ ନାମକ ପଞ୍ଚମ ଅଧ୍ୟାୟର
ସୁବୋଧିନୀ ଭାଷାଟୀକା ଶେଷ ହେଲା ।

——o——

# ରିଷ୍ଟାଧ୍ୟାୟଃ ଷଷ୍ଠଃ

## ଅରିଷ୍ଟଯୋଗ ସମୂହ

ସନ୍ଧ୍ୟାୟାଂ ହିମଦୀଧିତି ହୋରାପାପୈର୍ଭାନ୍ତଗୈର୍ନିଧନାୟ ।
ପ୍ରତ୍ୟେକଂଶଶିପାପସମେତୈଃକେନ୍ଦ୍ରୈର୍ବା ସ୍ୱବିନାଶମୁପୈତି ।୧।

ସନ୍ଧ୍ୟା ସମୟରେ ଚନ୍ଦ୍ରହୋରାରେ ଜନ୍ମ ହୋଇଥିଲେ, ପାପଗ୍ରହ ଶେଷ ନବାଂଶରେ ଥିଲେ ମୃତ୍ୟୁ ଘଟେ । ଲଗ୍ନ, ଚତୁର୍ଥ, ସପ୍ତମ, ଦଶମ ଏ ଚାରିଟି ଯାକ ସ୍ଥାନରେ ଚନ୍ଦ୍ର, ରବି, ମଙ୍ଗଳ, ଶନି ରହିଥିଲେ ମୃତ୍ୟୁ ଘଟେ ।୧।

ଚକ୍ରସ୍ୟ ପୂର୍ବାପରଭାଗଗେଷୁ କ୍ରୂରେଷୁ ସୌମ୍ୟେଷୁ ଚ କୀଟଲଗ୍ନେ ।
କ୍ଷିପ୍ରଂ ବିନାଶଂ ସମୁପୈତିଜାତଃ ପାପଂ ବିଲଗ୍ନାସ୍ତମୟାଭିତଷ୍ଟ ।୨।

ଚକ୍ରର ପୂର୍ବାର୍ଦ୍ଧ ଅର୍ଥାତ୍ ଚତୁର୍ଥ ଭାବସ୍ଫୁଟ ଠାରୁ ଦଶମ ଭାବସ୍ଫୁଟ ମଧ୍ୟରେ ପାପଗ୍ରହ, ପରାର୍ଦ୍ଧ ମଧ୍ୟରେ ଶୁଭଗ୍ରହ ଥିଲେ, କର୍କଟ ବା ବିଛା ଲଗ୍ନରେ ଜନ୍ମ ହୋଇଥିଲେ ମୃତ୍ୟୁ ଘଟେ ।

ପାପଗ୍ରହମାନେ (୧) ଷଷ୍ଠ ଓ ଅଷ୍ଟମ (୨) ଦ୍ୱିତୀୟ ଓ ଦ୍ୱାଦଶ ସ୍ଥାନରେ ଥିଲେ ମୃତ୍ୟୁ ଘଟାନ୍ତି । ଏଦୁଇଟି ଶିଶୁରିଷ୍ଟ ଯୋଗ ।୨।

ପାପାବୁଦୟାସ୍ତଗତୌ କ୍ରୂରେଣ ଯୁତଶ୍ଚ ଶଶୀ ।
ଦୃଷ୍ଟଶ୍ଚଶୁଭୈର୍ନଯଦା ମୃତ୍ୟୁଶ୍ଚ ଭବେଦଚିରାତ୍ ।୩।

ଲଗ୍ନ ଏବଂ ସପ୍ତମରେ ପାପଗ୍ରହ ଥିବେ, ପାପଯୁକ୍ତ ଚନ୍ଦ୍ର ଶୁଭଗ୍ରହ ଦ୍ୱାରା ଦୃଷ୍ଟ ହୋଇ ନଥିଲେ ଶୀଘ୍ର ମୃତ୍ୟୁ ଘଟିଥାଏ ।୩।

କ୍ଷୀଣେ ହିମଗୌ ବ୍ୟୟଗେ ପାପୈରୁଦୟାଷ୍ଟମଗୈଃ ।
କେନ୍ଦ୍ରେଷୁ ଶୁଭାସ୍ତ ନ ଚେତ୍କ୍ଷିପ୍ରଂ ନିଧନଂ ପ୍ରବଦେତ୍ ।୪।

ଲଗ୍ନର ଦ୍ୱାଦଶରେ କ୍ଷୀଣଚନ୍ଦ୍ର ଥିବେ, ପାପଗ୍ରହମାନେ ଲଗ୍ନ ଏବଂ ଅଷ୍ଟମରେ ଥିଲେ, କେନ୍ଦ୍ରରେ ଶୁଭ ଗ୍ରହ ନଥିଲେ ଶୀଘ୍ର ମୃତ୍ୟୁ ଘଟେ ।୪।

କ୍ରୂରେଣସଂଯୁତଃ ଶଶୀ ସ୍ମରାନ୍ତ୍ୟମୃତ୍ୟୁଲଗ୍ନଗଃ ।
କଣ୍ଟକାଦ୍‌ବହିଃଶୁଭୈରବୀକ୍ଷିତଶ୍ଚ ମୃତ୍ୟୁଦଃ ।୫।

ପାପଯୁକ୍ତ ଚନ୍ଦ୍ର ସପ୍ତମ, ଦ୍ୱାଦଶ, ଅଷ୍ଟମ ବା ଲଗ୍ନରେ ଥିଲେ ଓ ଶୁଭଗ୍ରହ ଦେଖୁ ନଥିଲେ ଏବଂ କେନ୍ଦ୍ରରେ କୌଣସି ଶୁଭଗ୍ରହ ନଥିଲେ ଶିଶୁର ମରଣ ଘଟିଥାଏ ।୫।

ଶଶିନ୍ୟରିବିନାଶଗେ ନିଧନମାଶୁପାପେକ୍ଷିତେ
ଶୁଭୈରଥ ସମାଷ୍ଟକଂ ଦଲମତଶ୍ଚମିଶ୍ରୈଃସ୍ଥିତିଃ ।
ଅସଦ୍ଭିରବଲୋକିତେ ବଲିଭିରତ୍ରମାସଂଶୁଭେ
କଲତ୍ରସହିତେ ଚ ପାପବିଜିତେ ବିଲଗ୍ନାଧିପେ ।୬।

ଚନ୍ଦ୍ର ଲଗ୍ନର ଷଷ୍ଠ ଅଥବା ଅଷ୍ଟମରେ ଥିଲେ ଓ କେବଳ ପାପଦୃଷ୍ଟ ହେଉଥିଲେ ଶୀଘ୍ର ମୃତ୍ୟୁ ଘଟେ । ଏହି ଚନ୍ଦ୍ର କେବଳ ଶୁଭ ଦୃଷ୍ଟ ହେଉଥିଲେ ଜାତକ ଅଠବର୍ଷ ବଞ୍ଚିଥାଏ । ଏହି ଚନ୍ଦ୍ର ଶୁଭ ତଥା ପାପ ଉଭୟଙ୍କ ଦ୍ୱାରା ଦୃଷ୍ଟହେଲେ ଶିଶୁ ଚାରିବର୍ଷ ବଞ୍ଚେ । ଷଷ୍ଠାଷ୍ଟମସ୍ଥ ଚନ୍ଦ୍ରକୁ ପାପଗ୍ରହ କିମ୍ବା ଶୁଭ-ଗ୍ରହ କେହି ନଦେଖିଲେ ମୃତ୍ୟୁ ନଘଟି କେବଳ ମାରାତ୍ମକ ପୀଡ଼ା ହୁଏ । ଏହି ଚନ୍ଦ୍ର ଶୁଭଗ୍ରହର ଗୃହରେ ବା ଶୁଭଗ୍ରହ ସହିତରେ ଥିଲେ ମଧ୍ୟ ଜାତକର ମୃତ୍ୟୁ ଘଟେ ନାହିଁ ।

ଷଷ୍ଠ ଅଥବା ଅଷ୍ଟମ ଭାବସ୍ଥିତ ଶୁଭଗ୍ରହ ପ୍ରତି ବଳବାନ୍ ପାପଗ୍ରହର ଦୃଷ୍ଟିଥିଲେ ଏକମାସ ମାତ୍ର ଆୟୁଷ ହୁଏ । ଏଥିରୁ ବୁଝିବାକୁ ହେବ ଯେ ଏହି ଏହି ସ୍ଥାନସ୍ଥ ଶୁଭଗ୍ରହକୁ ପାପଗ୍ରହ ନଦେଖିଲେ ରିଷ୍ଟ ସମ୍ଭବ ନୁହେ ।

ଲଗ୍ନାଧିପତି ଲଗ୍ନର ସପ୍ତମରେ ଥାଇ ପାପଗ୍ରହ ଯୁକ୍ତ ତଥା ପରାଜିତ (କିରଣ ହୀନ—ଦକ୍ଷିଣ ଦିଗସ୍ଥ) ହୋଇଥିଲେ ଶିଶୁ ଏକମାସ ମାତ୍ର ବଞ୍ଚିଥାଏ ।

ଲଗ୍ନେ କ୍ଷୀଣେ ଶଶିନି ନିଧନଂ ରନ୍ଧ୍ରକେନ୍ଦ୍ରେଷୁ ପାପୈଃ
ପାପାନ୍ତଃସ୍ଥେ ନିଧନ ହିବୁକଦ୍ୟୂନଯୁକ୍ତେ ଚ ଚନ୍ଦ୍ରେ ।
ଏବଂଲଗ୍ନେ ଭବତ ମଦନଚ୍ଛିଦ୍ରସଂସ୍ଥୈଶ୍ଚ ପାପୈ-
ର୍ମାତ୍ରା ସାର୍ଦ୍ଧଂ ଯଦି ଚ ନ ଶୁଭୈର୍ବୀକ୍ଷିତଃ ଶକ୍ତିଭୃଦ୍ଭିଃ ।୭।

ଲଗ୍ନରେ କ୍ଷୀଣଚନ୍ଦ୍ର, ଅଷ୍ଟମ ତଥା କେନ୍ଦ୍ରରେ ପାପଗ୍ରହ ଥିଲେ ଜାତକର ମୃତ୍ୟୁ ଘଟେ । ଚନ୍ଦ୍ର ପାପଗ୍ରହର ମଧ୍ୟରେ ଥାଇ ଅଷ୍ଟମ, ଚତୁର୍ଥ ବା ସପ୍ତମରେ ଥିଲେ ଜାତକର ମୃତ୍ୟୁ ଘଟେ ।

ପାପଗ୍ରହମାନଙ୍କ ମଧ୍ୟରେ ଥିବା ଚନ୍ଦ୍ର ଲଗ୍ନରେ ଥିଲେ ଏବଂ ପାପଗ୍ରହ-ମାନେ ସପ୍ତମ ବା ଅଷ୍ଟମରେ ଥିଲେ ଶିଶୁ ଓ ତାର ମା ଉଭୟେ ମରିଯାନ୍ତି । କୌଣସି ଶୁଭଗ୍ରହ ଚନ୍ଦ୍ରଙ୍କୁ ଦେଖୁଥିଲେ କେବଳ ଶିଶୁ ମରିବ ।୭।

ରାଶ୍ୟନ୍ତଗେ ସଦ୍ଭିରବୀକ୍ଷ୍ୟମାଣେ ଚନ୍ଦ୍ରେ ତ୍ରିକୋଣୋପଗତୈଶ୍ଚ ପାପୈଃ ।
ପ୍ରାଣୈଃପ୍ରଯୁାତ୍ୟାଶୁ ଶିଶୁର୍ବିୟୋଗମସ୍ତେ ଚ ପାପୈସ୍ତୁହିନାଂଶୁଲଗ୍ନେ ।୮।

ଚନ୍ଦ୍ର ରାଶିର ଶେଷ ନବାଂଶରେ ଥିବେ ଶୁଭଗ୍ରହ ଏମାନଙ୍କୁ ଦେଖୁ-ନଥିବେ, ପାପଗ୍ରହମାନେ ପଞ୍ଚମ ଓ ନବମରେ ଥିଲେ ଶିଶୁର ଶୀଘ୍ର ମରଣ ଘଟେ ।

ଲଗ୍ନରେ ଚନ୍ଦ୍ର ଓ ସପ୍ତମରେ ପାପଗ୍ରହ ଥିଲେ ମଧ୍ୟ ଶୀଘ୍ର ମୃତ୍ୟୁ ଘଟେ ।

ଅଶୁଭସହିତେ ଗ୍ରସ୍ତେ ଚନ୍ଦ୍ରେ କୁଜେ ନିଧନାଶ୍ରିତେ
ଜନନିସୁତୟୋର୍ମୃତ୍ୟୁର୍ଲଗ୍ନେ ରବୌ ତୁ ସଶସ୍ତ୍ରଜଃ ।
ଉଦୟତି ରବୌ ଶୀତାଂଶୌବା ତ୍ରିକୋଣବିନାଶଗୈ-
ର୍ନିଧନମଶୁଭୈର୍ବୀର୍ଯ୍ୟୋପେତୈଃ ଶୁଭୈର୍ନ ଯୁତେକ୍ଷିତେ ।୯।

ଶନି ଓ ରାହୁଯୁକ୍ତ ଚନ୍ଦ୍ର ଲଗ୍ନରେ ଥିଲେ ଓ ଅଷ୍ଟମରେ ମଙ୍ଗଳ ଥିଲେ ମାତା ସହିତ ଶିଶୁର ମୃତ୍ୟୁ ଘଟେ । ଶନି, ରାହୁ ଓ ବୁଧଯୁକ୍ତ ରବି ଲଗ୍ନରେ ଥିଲେ କିମ୍ବା ମଙ୍ଗଳ ଅଷ୍ଟମସ୍ଥାନରେ ଥିଲେ ଶସ୍ତ୍ର ଉପଘାତ ଦ୍ୱାରା ଶିଶୁ ଓ ତାର ମା ମରିଯିବେ । ରବି କିମ୍ବା ଚନ୍ଦ୍ର ଲଗ୍ନରେ ଥିବେ, ପାପଗ୍ରହମାନେ ପଞ୍ଚମ, ନବମ ଓ ଅଷ୍ଟମସ୍ଥାନରେ ଥିବେ, ବଳବାନ୍ ଶୁଭଗ୍ରହର ଦୃଷ୍ଟି ରବି ବା ଚନ୍ଦ୍ର ତାହା ଉପରେ ନଥିବ ତେବେ ଜାତକର ମୃତ୍ୟୁ ଘଟିବ ।୯।

ଅସିତରବିଶଶାଙ୍କ ଭୂମିଜୈ ର୍ବ୍ୟୟନବମୋଦୟନୈଧନାଶ୍ରିତୈଃ
ଭବତି ମରଣମାଶୁ ଦେହିନାଂ ଯଦି ବଲିନା ଗୁରୁଣାନ ବୀକ୍ଷିତାଃ ।୧୦।

ଦ୍ୱାଦଶରେ ଶନି, ନବମରେ ରବି, ଲଗ୍ନରେ ଚନ୍ଦ୍ର ଓ ଅଷ୍ଟମରେ ମଙ୍ଗଳ ଥିଲେ, ବଳବାନ୍ ବୃହସ୍ପତି ଏମାନଙ୍କୁ ଦେଖୁନଥିଲେ ମୃତ୍ୟୁଘଟେ ।୧୦।

ସୁତମଦନନବାନ୍ତ୍ୟଲଗ୍ନରନ୍ଧ୍ରେଷ୍ୱଶୁଭଯୁତୋ ମରଣାୟ ଶୀତରଶ୍ମିଃ
ଭୃଗୁସୁତଶଶିପୁତ୍ରଦେବପୂଜ୍ୟୈର୍ଯଦି ବଳିଭିର୍ନ ଯୁତୋଽବଲୋକିତୋ ବା ।୧୧।

ପାପଗ୍ରହ ଯୁକ୍ତ ଚନ୍ଦ୍ର ପଞ୍ଚମ, ସପ୍ତମ, ନବମ, ଦ୍ୱାଦଶ, ଲଗ୍ନ ଓ ଅଷ୍ଟମ ସ୍ଥାନରେ ଥିବେ, ବଳବାନ୍ ଶୁକ୍ର, ବୁଧ ତଥା ଗୁରୁ ଚନ୍ଦ୍ରଙ୍କୁ ଦେଖୁନଥିଲେ ବା ଚନ୍ଦ୍ର ସହିତ ନଥିଲେ ମୃତ୍ୟୁଘଟେ ।୧୧।

ଯୋଗେ ସ୍ଥାନଂ ଗତବତି ବଳିନଶ୍ଚନ୍ଦ୍ରେ ସ୍ୱଂ ବା ତନୁଗୃହମଥବା
ପାପୈର୍ଦୃଷ୍ଟେ ବଳବତି ମରଣଂ ବର୍ଷସ୍ୟାନ୍ତଃ କିଲ ମୁନିଗଦିତମ୍ ।୧୨।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେଽରିଷ୍ଟାଧ୍ୟାୟଃ ।

ପୂର୍ବୋକ୍ତ ଋଷ୍ଟପ୍ରମାଣରେ କାଳ ନିରୂପଣ ନଥିବାରୁ ଏଠାରେ ସେହି କାଳ ନିର୍ଣ୍ଣୟ ଲେଖା ଯାଉଅଛି । ଋଷ୍ଟକର୍ତ୍ତା ଗ୍ରହମାନଙ୍କ ମଧ୍ୟରେ ସବୁଠାରୁ ଯେ ଦୋଷଯୁକ୍ତ ତାହାର ଗୃହକୁ ଚନ୍ଦ୍ର ଆସିବା ସମୟରେ ଋଷ୍ଟଘଟେ । କିମ୍ବା ଜନ୍ମ କାଳରେ ଚନ୍ଦ୍ର ଯେ ରାଶିରେ ଥିଲେ ସେଠାକୁ ଆସିବା ବେଳେ ମଧ୍ୟ ଋଷ୍ଟହୁଏ, ଜନ୍ମଲଗ୍ନର ଯେ ରାଶି ଚନ୍ଦ୍ର ସେଥିରେ ଉପସ୍ଥିତ ହେଲେ ମୃତ୍ୟୁ ଘଟାଏ । ଯେଉଁ ଯେଉଁ ସ୍ଥାନରେ ଗ୍ରହ ରହିବା ଫଳରେ ଋଷ୍ଟ, ସେଥି ମଧ୍ୟରୁ ଯେ ସ୍ଥାନକୁ ଗଲେ ଚନ୍ଦ୍ର ବଳଯୁକ୍ତ ହେବା ଧରାଯିବ, ସେପରି ସ୍ଥାନରେ ଚନ୍ଦ୍ର ଥିବା ବେଳେ ଋଷ୍ଟହେବ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଅରିଷ୍ଟାଧ୍ୟାୟ ନାମକ
ଷଷ୍ଠ ଅଧ୍ୟାୟର "ସୁବୋଧିନୀ" ଭାଷା ଟୀକା ସମାପ୍ତ ହେଲ ।

---

# ଆୟୁର୍ଦ୍ଦାୟାଧ୍ୟାୟଃ ସପ୍ତମଃ

## ବିଭିନ୍ନ ଆଚାର୍ଯ୍ୟଙ୍କ ମତରେ ଆୟୁର୍ଦ୍ଦାୟ

ମୟଯବନମଣିତ୍ଥଶକ୍ତିପୂର୍ବୈର୍ଦିବସକରାଦିଷୁ ବତ୍ସରାଃ ପ୍ରଦିଷ୍ଟାଃ ।
ନବତିଥିବିଷୟାଶ୍ୱିଭୂତରୁଦ୍ରଦଶସହିତା ଦଶଭିଃ ସ୍ୱତୁଙ୍ଗଭେଷୁ ।୧।

ଜ୍ୟୋତିଃଶାସ୍ତ୍ର ପାରଙ୍ଗମ ମୟ, ଯବନେଶ୍ୱର, ମଣିତ୍ଥାଦି ଆଚାର୍ଯ୍ୟ, ପରାଶର ମୁନି ଆଦି ପ୍ରାଚୀନ ମହର୍ଷିମାନେ ରବ୍ୟାଦିଗ୍ରହ ଉଚ୍ଚରେ (ନିଜ ଉଚ୍ଚରାଶିର ଠିକ୍-

ଉଚ୍ଚ ଅଂଶରେ) ଥିଲେ ଯଥାକ୍ରମେ ୧୯, ୨୫, ୧୫, ୧୨, ୧୫, ୨୧ ଓ ୨୦ ବର୍ଷ ଆୟୁଃପ୍ରଦ ହେବେ, ଅର୍ଥାତ୍ ରବି ଊଣିଶି ବର୍ଷ, ଚନ୍ଦ୍ର ପଚିଶ ବର୍ଷ, ମଙ୍ଗଳ ପନ୍ଦର ବର୍ଷ, ବୁଧ ବାରବର୍ଷ, ଗୁରୁ ପନ୍ଦର ବର୍ଷ, ଶୁକ୍ର ଏକୋଇଶି ବର୍ଷ, ଶନି କୋଡ଼ିଏ ବର୍ଷ ଆୟୁଃପ୍ରଦ ହେବେ ।୧। କୋଲ୍‌କ୍ରିସ୍ଟାନ୍ତି,।୧।

## ସ୍ଥାନହେତୁ ଗ୍ରହମାନଙ୍କର ଦତ୍ତାୟୁର ନ୍ୟୂନାଧିକ୍ୟ ବିଚାର

ନୀଚେଽତୋଽର୍ଦ୍ଧଂ ହ୍ରସତି ହି ତତଶ୍ଚାନ୍ତରସ୍ଥେଽନୁପାତୋ ।
ହୋରାତ୍ୱଂଶପ୍ରତିମମପରେ ରାଶିତୁଲ୍ୟଂ ବଦନ୍ତି ।
ହିତ୍ୱା ବକ୍ରଂ ରିପୁଗୃହଗତୈର୍ହୀୟତେ ସ୍ୱତ୍ରିଭାଗଃ
ସୂର୍ଯ୍ୟୋଚ୍ଛିନ୍ନଦ୍ୟୁତଷୁଚଦଳଂ ପ୍ରୋଜ୍‌ଝ୍ୟ ଶୁକ୍ରାର୍କପୁତ୍ରୌ । ୨।

ରବି ଆଦି ସମସ୍ତ ଗ୍ରହ ନୀଚରେ (ନୀଚରାଶିର ନୀଚ୍ଚାଂଶରେ) ଥିଲେ ପୂର୍ବକଥିତ ପରମାୟୁର ଅର୍ଦ୍ଧହାନି କରିବେ, ରବି ମେଷରାଶିର ୧୦ ଅଂଶରେ ଥିଲେ ଊଣିଶିବର୍ଷ ଆୟୁର ଅର୍ଦ୍ଧେକ ଅର୍ଥାତ୍ ବ ୯।୬।୦ ମାନ ତୁଳାରାଶିର ୧୦ ଅଂଶରେ ଥିଲେ ହାନି ଘଟାଇବ ଅର୍ଥାତ୍ ବ ୯।୬।୦ ମାନ ଆୟୁଃପ୍ରଦହେବ । ଗ୍ରହ ଉଚ୍ଚାଂଶ ତଥା ନୀଚ୍ଚାଂଶରେ ନଥିଲେ ଅନୁପାତ କ୍ରମରେ ଆୟୁର ହ୍ରାସ ବୃଦ୍ଧି କହିବେ ।

ଲଗ୍ନ ନବାଂଶ ତୁଲ୍ୟ ଆୟୁର୍ଦାୟ ଦାନ କରେ । ଅର୍ଥାତ୍ ଯେତକି ନବାଂଶ ଭୋଗ ହୋଇଗଲାଣି ସେତକି ବର୍ଷ ଆୟୁ ମିଳେ । ଅବଶିଷ୍ଟ ଅଂଶକୁ ଅନୁପାତରେ ମାସାଦି ଆଣିବେ ।

ଅନ୍ୟ କେହି କେହି ଆଚାର୍ଯ୍ୟ କହନ୍ତି ମେଷରାଶିଠାରୁ ଆରମ୍ଭ କରି ଲଗ୍ନ ଯେତକି ରାଶି ଅତିକ୍ରମ କରିଅଛି ତାହାର ଅନୁପାତରେ ବର୍ଷାଦି ପ୍ରଦାୟୀ ଆୟୁ ଲଗ୍ନ ନବାଂଶତୁଲ୍ୟ ଆୟୁର୍ଦାୟ ଦାନକରେ । ଅର୍ଥାତ୍ ଲଗ୍ନର ଯେତକି ନବାଂଶ ଭୋଗ ହୋଇଥିବ, ସେତକି ବର୍ଷ ଆୟୁ ଓ ଅବଶିଷ୍ଟ କଳାକୁ ଅନୁପାତରେ ଯାହାହେବ ଆଣିବେ ।' ଅନ୍ୟ କେହି କେହି ଆଚାର୍ଯ୍ୟ ମେଷରାଶି କ୍ରମରେ ଲଗ୍ନର ଯେତେ ରାଶି ସେତକି ବର୍ଷ ଓ ଅଂଶର ଅନୁପାତରେ ମାସାଦି ସ୍ଥିର କରନ୍ତି ।

ଗ୍ରହର ଦତ୍ତାୟୁ ଆଣିବା ପରେ ଦେଖିବାକୁ ହେବ ଯେ ସେ ଗ୍ରହ ଶତ୍ରୁ ଗୃହରେ ଅଛି କି ନା । ଯଦି ଶତ୍ରୁ ଗୃହରେ ଥାଏ ଓ ବକ୍ର ହୋଇ ନଥାଏ ତେବେ ସେ ଦତ୍ତାୟୁର ଏକ ତୃତୀୟାଂଶ ହାନିକରେ । ବକ୍ର ହୋଇଥିବା ଗ୍ରହ

ଶତ୍ରୁଗୃହରେ ଥିଲେହେଁ ତାହାର ଦତ୍ତାୟୁର ହାନି ଘଟାଏ ନାହିଁ । ଏଠାରେ ମତ ବିରୋଧ ଦେଖାଯାଏ । 'ବକ୍ର' ଶବ୍ଦକୁ ଧରି କେହି କେହି ଆଚାର୍ଯ୍ୟ ମଙ୍ଗଳ ବୋଲି ଅର୍ଥକରି କହନ୍ତି ଯେ ସବୁ ଗ୍ରହମାନେ ଶତ୍ରୁଗୃହରେ ଥିଲେ ଏକ ତୃତୀୟାଂଶ ହାନି କରିବେ କିନ୍ତୁ ଶତ୍ରୁଗୃହସ୍ଥ ମଙ୍ଗଳ ଠାରେ ଏହା ଘଟିବ ନାହିଁ ।

ଟୀକାକାର ଉତ୍ପଳ କହନ୍ତି ବରାହମିହିର 'ବକ୍ର' ଗ୍ରହକୁ ମାତ୍ର ଗ୍ରହଣ କରାଯିବା ଅଭିପ୍ରାୟ ରଖିଥିବା ହେତୁ "ହିତ୍ୱାବକ୍ରଂ" ବୋଲି ଶବ୍ଦ ଲେଖିଲେ, ମଙ୍ଗଳ ହୋଇଥିଲେ "ହିତ୍ୱାଭୌମଂ" ବୋଲି ଲେଖିଥାଆନ୍ତେ । ତେଣୁ ଏଠାରେ ବକ୍ରୀ ଗ୍ରହକୁ ଗ୍ରହଣ କରାଯିବା ଉଚିତ ।

ରବି ଓ ଚନ୍ଦ୍ର ତ ବକ୍ର ହେବେ ନାହିଁ ତେଣୁ ଏ ପ୍ରମାଣ ସେମାନଙ୍କୁ ଖଟୁନାହିଁ । ଦୁଇଟି ମୁଖ୍ୟଗ୍ରହଙ୍କୁ ପ୍ରମାଣରୁ ଛାଡ଼ିଦେବା ଅପେକ୍ଷା କେବଳ ମଙ୍ଗଳକୁ ଅର୍ଥକଲେ ସମୀଚୀନ ହେବ ବୋଲି ମୋରମତ ।

ବକ୍ରଗ୍ରହ ପକ୍ଷରେ ଅନ୍ୟ ଗ୍ରନ୍ଥର ପ୍ରମାଣ ଏହି ଯେ "ବକ୍ରଗୃହଂ ବିନା ତ୍ର୍ୟଂଶଂ ଶତ୍ରୁରାଶୌ ହରେଦ୍ ଗ୍ରହଃ ॥ କିନ୍ତୁ ମହର୍ଷି ବାଦରାୟଣଙ୍କ ମତରେ ମଙ୍ଗଳ ଗ୍ରହ ବୋଲି ସ୍ପଷ୍ଟ ଜଣାଯାଏ । ପ୍ରମାଣ:— "ଭୂମ୍ୟାଃ ସୁତଂ ବର୍ଜୟିତ୍ୱାରିଭସ୍ଥା ହନ୍ୟୁଃ ସ୍ୱାତ୍ସ୍ୱାଦାୟୁଷସ୍ତ୍ରୈବିଭାଗମ୍ ॥

ରବିଙ୍କ କିରଣରେ ବିନଷ୍ଟ ହୋଇଥିବା ଅର୍ଥାତ୍ ଅସ୍ତ ହୋଇଥିବା ଗ୍ରହମାନେ ସେମାନଙ୍କର ଦତ୍ତାୟୁର ଅର୍ଦ୍ଧହାନି କରିଥାନ୍ତି କିନ୍ତୁ ଅସ୍ତ ହୋଇଥିବା ଶୁକ୍ର ଓ ଶନି ଆୟୁହାନି କରନ୍ତି ନାହିଁ ।

ଚନ୍ଦ୍ର ରବିର ଉଭୟ ପାର୍ଶ୍ୱରେ ୧୨ ଅଂଶ ମଧ୍ୟରେ ଥିଲେ ଅସ୍ତ ହୁଏ । ସେହିପରି ମଙ୍ଗଳ ୧୭ ଅଂଶ, ବୁଧ ୧୪ ଅଂଶ ବକ୍ରୀ ହୋଇଥିଲେ ୧୨ ଅଂଶ, ଗୁରୁ ୧୧ ଅଂଶ, ଶୁକ୍ର ୧୦ ଅଂଶ, ବକ୍ରୀ ଶୁକ୍ର ୮ ଅଂଶ ଏବଂ ଶନି ସୂର୍ଯ୍ୟର ଉଭୟ ପାର୍ଶ୍ୱର ୧୫ ଅଂଶ ମଧ୍ୟରେ ଥିଲେ ଅସ୍ତ ହୁଏ । ଏହାର ନାମ କାଳାଂଶ

ପ୍ରମାଣ:— ଧିଷ୍ଣ୍ୟେନ୍ଦବଃ ଶୈଳଭୁବଶ୍ଚକାରୁଦ୍ରାଃଖଚନ୍ଦ୍ରାସ୍ତିଥୟକ୍ରମେଣ
ଚନ୍ଦ୍ରାଦିତଃ କାଳଲବାନବୁକ୍ତାଙ୍କ ଶୁକ୍ରଯୋର୍ବକ୍ରଗତ ଦ୍ୱିହୀନା ॥

ସର୍ବାର୍ଦ୍ଧବିଚରଣପଞ୍ଚଷଷ୍ଠଭାଗାଃ
କ୍ଷୀୟନ୍ତେ ବ୍ୟୟଭବନାଦସତ୍ସୁବାମମ୍
ସତ୍ସ୍ୱର୍ଦ୍ଧଂ ହ୍ରସତି ତଥୈକରାଶିଗାନା
ମେକୋଂଶେ ହରତି ବଲୀ ତଥାହ ସତ୍ୟଃ ॥୩॥

ଦ୍ୱାଦଶସ୍ଥାନରେ ଥିବା ପାପଗ୍ରହ ତାହାର ଦତ୍ତାୟୁ ସଂପୂର୍ଣ୍ଣ ହାନି କରେ । ଏକାଦଶରେ ଥିବା ପାପଗ୍ରହ ଅର୍ଦ୍ଧଦତ୍ତାୟୁ ହାନିକରେ । ଦଶମରେ ଥିବା ପାପଗ୍ରହ ଦତ୍ତାୟୁର ଏକ ତୃତୀୟାଂଶ ହାନିକରେ । ନବମରେ ଥିବା ପାପଗ୍ରହ ଏକ ଚତୁର୍ଥାଂଶ ହାନି କରଥାଏ, ଅଷ୍ଟମରେ ଥିଲେ ଏକ ପଞ୍ଚମାଂଶ ଓ ସପ୍ତମରେ ପାପଗ୍ରହ ଥିଲେ ଏକଷଷ୍ଠାଂଶ ଦତ୍ତାୟୁ ହାନିକରେ ।

ଶୁଭଗ୍ରହ ଦ୍ୱାଦଶରେ ଥିଲେ ଦତ୍ତାୟୁର ଅର୍ଦ୍ଧ, ଏକାଦଶରେ ଥିଲେ ଏକ ଚତୁର୍ଥାଂଶ, ଦଶମରେ ଥିଲେ ଛଭାଗରୁ ଭାଗେ, ନବମରେ ଥିଲେ ଆଠଭାଗରୁ ଭାଗେ, ଅଷ୍ଟମରେ ଥିଲେ ଦଶଭାଗରୁ ଭାଗେ, ସପ୍ତମରେ ଥିଲେ ବାରଭାଗରୁ ଭାଗେ ତାହାର ଦତ୍ତାୟୁର ହାନି କରଏ । ଏହି ଏହି ସ୍ଥାନ ମାନଙ୍କରେ ଏକାଧିକ ଗ୍ରହଥିଲେ ସେମାନଙ୍କ ମଧ୍ୟରେ ଯେ ବଳବାନ୍ ସେହିଗ୍ରହର ଦତ୍ତାୟୁ ମାତ୍ର କଥିତ ପରମାଣରେ ହ୍ରାସହୁଏ, ଅନ୍ୟମାନଙ୍କର କିଛି ହାନି ହୁଏ ନାହିଁ ।୩।

## ଆୟୁର୍ଦ୍ଦାୟର ବିଶେଷ ସଂସ୍କାର

ସାର୍ଦ୍ଧୋଦିତୋଦିତନବାଂଶହତାତ୍ସମସ୍ତା—
ଭାଗୋଷ୍ଟୟୁକ୍ତଶତସଂଖ୍ୟମୁପୈତିନାଶମ୍
କ୍ରୂରେ ବିଲଗ୍ନସହିତେ ବିଧିନା ତ୍ୱନେନ
ସୌମ୍ୟେକ୍ଷିତେ ଦଳମତଃ ପ୍ରଳୟଂପ୍ରୟାତି ।୪।

ପାପଗ୍ରହ ଲଗ୍ନରେ ଥିଲେ ଲଗ୍ନର ଯେତେ ନବାଂଶ ଭୋଗ ହୋଇଅଛି ଓ ଯେଉଁ ନବାଂଶରେ ଜନ୍ମ ତାହାର ଯେତେକଳା ଭୋଗ ହେଲଣି ତାହାକୁ କଳାରେ ପରିଣତ କରି ସମଗ୍ର ଆୟୁକୁ ଗୁଣି ୨୧୬୦୦ କଳା (ରାଶିଚକ୍ର ୩୬୦ ଅଂଶ, ସମଗ୍ର ରାଶିଚକ୍ର ୩୬୦ ଅଂଶ ବା ୨୧୬୦୦ କଳା) ରେ ହରଣ କରିବେ, ଫଳଯାହା ଆସିବ ତାହା ସମଗ୍ର ଆୟୁରୁ କାଟିଦେବେ, ପାପଗ୍ରହ ଲଗ୍ନରେ ଥାଇ ଶୁଭଗ୍ରହ ତାକୁ ଦେଖୁଥିଲେ ଏହି ଆଗତ ସମୟର ଅର୍ଦ୍ଧେକ ମାତ୍ର ମୋଟ ଆୟୁରୁ କାଟିବେ ।

## ଆୟୁର୍ଦ୍ଦାୟ ସାଧନାର ଉଦାହରଣ

### ଗୋଟିଏ ଆଦର୍ଶ ଜାତକ

ଜନ୍ମଶକାବ୍ଦାଃ ୧୮୪୦।୨।୨୫।୧ । ସୂର୍ଯ୍ୟୋଦୟାଦ୍ ୧ ଦଣ୍ଡ । ମିଥୁନ ଲଗ୍ନ ଭୋଗ ଦ ୫।୩ ।

**ଭାବସ୍ଫୁଟଃ**-ଲଗ୍ନଭାବ ରା ୨।୨୭।୩୮ । ଦ୍ୱିତୀୟ ଭାବ ରା ୩।୨୨।୩୬। ତୃତୀୟ ଭାବ ରା ୪।୨୫।୩୬ । ଚତୁର୍ଥ ଭାବ ରା ୫।୨୪।୫୦ । ପଞ୍ଚମ ଭାବ-ରା ୬।୨୫।୪୬ । ଷଷ୍ଠ ଭାବ ରା ୭।୨୬।୩୨ । ସପ୍ତମ ଭାବ ରା ୮।୨୭।୩୮। ଅଷ୍ଟମ ଭାବ ରା ୯।୨୨।୩୬ । ନବମ ଭାବ ରା ୧୦।୨୫।୩୬ । ଦଶମ ଭାବ ରା ୧୧।୨୪।୫୦ । ଏକାଦଶ ଭାବସ୍ଫୁଟ ରା ୦।୨୫।୪୬ । ଦ୍ୱାଦଶ ଭାବସ୍ଫୁଟ ରା ୧।୨୬।୩୨ ।

**ଗ୍ରହସ୍ଫୁଟଃ**—ରବି ରା ୨।୨୨।୧୧ । ଚନ୍ଦ୍ର ରା ୨।୧୮।୨ । ମଙ୍ଗଳ ରା ୫।୧୩।୨୬ । ବୁଧ ରା ୩।୪।୪୭ । ବୃହସ୍ପତି ରା ୨।୬।୧୧ । ଶୁକ୍ର ରା ୧।୧୭।୨ । ଶନି ରା ୩।୨୧।୧୦ । ରାହୁ ରା ୭।୨୮।୧୫ । କେତୁ ରା ୧।୨୮।୧୫ ଅୟନାଂଶ ୨୨।୫୯।୮।୨୨ ।

(୧) ରାଶିଚକ୍ରଃ—




(୨) ଭାବଚକ୍ରଃ—




## ୧. ରବିର ପ୍ରଦତ୍ତ ଆୟୁଃ—

ରବିର ଉଚ୍ଚସ୍ଥାନ ରା ୦।୧୦।୦ । ବର୍ତ୍ତମାନସ୍ଥିତ ସ୍ଥାନ ରା ୨।୨୨।୧୧ । ପ୍ରଭେଦ ରା ୨।୧୨।୧ । ଅର୍ଥାତ୍ ୭୨ ଅଂଶ ୧ କଳା ବା ୪୩୨୧ କଳା ।

ନୀଚାଂଶ ତଥା ଉଚ୍ଚାଂଶର ପ୍ରଭେଦ କଳା
=(ରାଶି ୬×୩୦×୬୦)=୧୦୮୦୦ କଳା ।

ପ୍ରଭେଦ ୧୦୮୦୦ କଳାରେ ଆୟୁ ପ୍ରଭେଦ ବ ୯।୬।୦ । ପ୍ରଭେଦ ୪୩୨୧ କଳାରେ ଆୟୁ ପ୍ରଭେଦ $= \frac{\text{ବ ୯।୬।୦} \times \text{୪୩୨୧}}{\text{୧୦୮୦୦}} = \frac{\text{ବ ୪୦୯୯୯।୬।୦}}{\text{୧୦୮୦୦}}$

= ବ ୩।୯।୧୮।୧୯ ।

ପୂର୍ଣ୍ଣାୟୁ ବ ୧୯ ବର୍ଷ—ଏଥିରୁ ନୀଚାଭିମୁଖୀ ଗ୍ରହ ହେତୁ ହାନିହେଲ ବ ୩।୯।୧୮।୧୯ ତେଣୁ ରବିର ଦତ୍ତାୟୁ ହେଲ

= ବ ୧୯ — ବ ୩।୯।୧୮।୧୯ = ବ ୧୫।୨।୧୧।୪୧ ।

୨. ଚନ୍ଦ୍ରର ପ୍ରଦତ୍ତ ଆୟୁଃ—

ଚନ୍ଦ୍ରସ୍ଫୁଟ—ରା ୨।୧୮।୨ । ଉଚ୍ଚ ସ୍ପଶ୍ୟାଦ ରା ୧।୩।୦ ।

ପ୍ରଭେଦ ରା ୨।୧୮।୨ — ରା ୧।୩।୦ = ୧।୧୫।୨ = ୨୭୦୨ କଳା ।

ଉଚ୍ଚ ନୀଚ ପ୍ରଭେଦ ୧୦୮୦୦ କଳାରେ ଆୟୁହାନି ୧୨।୬।୦ ତେଣୁ ୨୭୦୨ କଳାରେ ଆୟୁ ହାନି $= \frac{\text{୨୭୦୨} \times \text{ବ ୧୨।୬।୦}}{\text{୧୦୮୦୦}}$ = ବ ୩।୧।୧୫।୫୦

ଚନ୍ଦ୍ରର ପୂର୍ଣ୍ଣାୟୁ ୨୫ ବର୍ଷ, ଏଥିରୁ ହାନି ହେବ ବ ୩।୧।୧୫।୫୦ ଅତଏବ ଅବଶିଷ୍ଟ ଚନ୍ଦ୍ରର ଦତ୍ତାୟୁ ବ ୨୧।୧୦।୧୪।୧୦ ।

୩. ମଙ୍ଗଳର ପ୍ରଦତ୍ତ ଆୟୁଃ—

ମଙ୍ଗଳର ଉଚ୍ଚ ସ୍ପଶ୍ୟାଦ ରା ୯।୨୮।୦।୦ । ବର୍ତ୍ତମାନ ସ୍ଥିତ ସ୍ପଶ୍ୟାଦ ରା ୫।୧୩।୨୬ ନୀଚସ୍ଥାନରୁ ଏହା ଉଚ୍ଚ ଅଭିମୁଖେ ଗତି କରୁଛି । ତେଣୁ ନୀଚସ୍ଥାନ ରା ୩।୨୮।୦।୦ ରୁ ଏହାର ପ୍ରଭେଦ ରା ୫।୧୩।୨୬ — ରା ୩।୨୮।୦

= ୧।୧୫।୨୬ = ୨୭୨୬ କଳା ।

ନୀଚରୁ ଉଚ୍ଚ ପ୍ରଭେଦ ୧୦୮୦୦ କଳାକୁ ଆୟୁ ବ ୭।୬।୦

∴ ୨୭୨୬ କଳାକୁ ଆୟୁ $= \frac{\text{୨୭୨୬} \times \text{୭।୬।୦}}{\text{୧୦୮୦୦}}$ ବର୍ଷାଦି

= ବ ୧।୧୦।୨୧।୩୦ ।

ନୀଚସ୍ଥ ଆୟୁ ବ ୭।୬।୦ ରେ ଏହା ମିଶାଯିବ ଫଳରେ ମଙ୍ଗଳର ଦତ୍ତାୟୁ = ବ ୭।୬।୦ + ୧।୧୦।୨୧।୩୦ = ବ ୯।୪।୨୧।୩୦ ।

### ୪. ବୁଧର ପ୍ରଦତ୍ତ ଆୟୁ :—

ବୁଧର ଉଚ୍ଚ ସ୍ଥାନ ରା ୫।୧୫।୦ । ବୁଧ ସ୍ଫୁଟ ରା ୩।୪।୪୭ ।

ବୁଧ ଉଚ୍ଚାଭିମୁଖୀ ହେତୁ ତାହାର ନୀଚସ୍ଥାନ ରା ୧୧।୧୫ ସ୍ଫୁଟରୁ ବାଦ୍ ଦେବା ସୁବିଧା ।

ତେଣୁ ପ୍ରଭେଦ ହେଲା ।

ରା ୩।୪।୪୭ —ରା ୧୧।୧୫।୦ = ( ନ୍ୟୂନହେତୁ ୧୨ ମିଶାଇବାକୁ ହେବ )=ରା ୩।୧୯।୪୭ = ୬୫୮୭ କଳା ।

ନୀଚସ୍ଥାନରୁ ଉଚ୍ଚସ୍ଥାନର ପ୍ରଭେଦ ୧୦୮୦୦
୧୦୮୦୦ କଳାରେ ଆୟୁ ୬ ବର୍ଷ

ତେଣୁ ୬୫୮୭ କଳାରେ ଆୟୁ = $\frac{୬୫୮୭ \times ୬}{୧୦୮୦୦}$ = ବ ୪।୭।୨୭।୨୪ ।

ବୁଧର ନୀଚସ୍ଥ ଆୟୁ = ବ ୬।୦।୦ ବୃଦ୍ଧି ବ ୪।୭।୨୭।୨୪
ମୋଟ = ବ ୧୦।୭।୨୭।୨୪ ।

ବୁଧର ପ୍ରଦତ୍ତ ଆୟୁ ବ ୧୦।୭।୨୭।୨୪ ।

### ୫. ବୃହସ୍ପତିର ପ୍ରଦତ୍ତ ଆୟୁଃ—

ବୃହସ୍ପତିର ଉଚ୍ଚସ୍ଥାନ ରା ୩।୫।୦।୦
ବୃହସ୍ପତି ସ୍ଫୁଟ ରା ୨।୬।୧୧।୦

ନୀଚରୁ ଉଚ୍ଚାଭିମୁଖୀ ହେତୁ ନୀଚସ୍ଥାନ ରା ୯।୫।୦ ସ୍ଫୁଟରୁ ବାଦ ଦେବା ଉଚିତ । ବାଦ୍‌ଦେଲେ ରା ୨।୬।୧୧।୦—ରା ୯।୫।୦ = ରା ୫।୧।୧୧ ବା ୯୦୭୧ କଳା ରହିଲା ।

୧୦୮୦୦ କଳାରେ (ନୀଚସ୍ଥାନ ଓ ଉଚ୍ଚସ୍ଥାନର ପ୍ରଭେଦ) ଆୟୁ ବ ୭।୬

ତେଣୁ ୯୦୭୧ କଳାକୁ = $\frac{୯୦୭୧ \times ବ ୭।୬}{୧୦୮୦୦}$ = ବ ୬।୩।୧୭।୪୮ ।

ନୀଚସ୍ଥାନର ଆୟୁ ବ ୭।୬।୦ ଅର୍ଜିତ ଆୟୁ ବ ୬।୩।୧୭।୦୪

ବୃହସ୍ପତିର ମୋଟ ଦତ୍ତାୟୁ ବ ୧୩।୯।୧୭।୪୮ ।

### ୬. ଶୁକ୍ରର ପ୍ରଦତ୍ତ ଆୟୁଃ—

ଶୁକ୍ରର ଉଚ୍ଚସ୍ଥାନ ରା ୧୧।୨୭।୦
ଶୁକ୍ରସ୍ଫୁଟ ରା ୧।୧୭।୨

ଶୁକ୍ର ଉଚ୍ଚରୁ ନୀଚ ଅର୍ଦ୍ଧେ ଗତ କରୁଥିବାରୁ ଶୁକ୍ରର ଉଚ୍ଚ ରାଶ୍ୟାଦି ଶୁକ୍ରସ୍ଫୁଟରୁ ବାଦ୍‌ଦେଲେ ଅବଶିଷ୍ଟ ରହିଲ ରା ୧।୧୭।୨ — ରା ୧୧।୨୭।୦

= ୧।୨୦।୨ ବା ୩୦୦୨ କଳା ।

ଉଚ୍ଚ ଓ ନୀଚର ପ୍ରଭେଦ ୧୦୮୦୦ କଳାକୁ ଆୟୁ ବ ୧୦।୬।୦

ତେବେ = $\frac{୩୦୦୨ \times ବ\ ୧୦।୬}{୧୦୮୦୦}$ ଫଳ ବ ୨।୧୧।୦।୪୩।୨୦ ।

ଶୁକ୍ରର ପୂର୍ଣ୍ଣାୟୁ ୨୧ ବର୍ଷରୁ ଏହା ବାଦ୍ ଦେଲେ

ଅବଶିଷ୍ଟ ରହିଲ ବ ୧୮।୦।୨୯।୧୬।୪୦

ତେଣୁ ଶୁକ୍ରର ଦତ୍ତ ଆୟୁ ବ ୧୮।୦।୨୯।୧୬।୪୦ ।

୭. ଶନିର ସ୍ଫୁଟଃ—ରା ୩।୨୧।୧୦

ଶନି ନୀଚରୁ ଉଚ୍ଚଅର୍ଦ୍ଧେ ଗତ କରୁଅଛି ।

ଶନିର ନୀଚସ୍ଥାନ ରା ୦।୨୦।୦

ପ୍ରଭେଦ ରା ୩।୨୧।୧୦ — ରା ୦।୨୦।୦ = ରା ୩।୧।୧୦

ବା ୫୪୭୦ କଳା ।

୧୦୮୦୦ କଳାକୁ ଆୟୁ ୧୦ ବର୍ଷ ।

ତେଣୁ ୫୪୭୦ କଳାକୁ ଆୟୁ = $\frac{୫୪୭୦ \times ୧୦}{୧୦୮୦୦}$ = ବ ୫।୦।୨୩।୨୦ ।

ନୀଚସ୍ଥ ଆୟୁ ବ ୧୦ ବର୍ଷରେ ଏହା ମିଶାଇ ଦେବାରୁ ହେଲା

ବ ୧୫।୦।୨୩।୨୦ ତେଣୁ ଶନିର ଦତ୍ତାୟୁ ବ ୧୫।୦।୨୩।୨୦ ।

୮. ଲଗ୍ନାୟୁଃ—

ଲଗ୍ନସ୍ଫୁଟ ରା ୨।୨୭।୩୮ ।

ଲଗ୍ନର ୮ ନବାଂଶ ଭୋଗଙ୍କର ନବମ ନବାଂଶର ୨ ଅଂଶ ୧୮ କଳା ଭୋଗ କରୁଅଛି ।

ଏକ ନବାଂଶ ୨୦୦ କଳାକୁ ଆୟୁ ୧ ବର୍ଷ ୧୩୮ କଳାକୁ ଆୟୁ

= $\frac{୧୩୮ \times ୧}{୨୦୦}$ = ବ ୦।୮।୮।୨୪ ।

ନବାଂଶ କ୍ରମେ ୮ ନବାଂଶର ୮ ବର୍ଷ

ଅବଶିଷ୍ଟ ର ୨।୧୮ କଳାର ବ ୦।୮।୮।୨୪

ମୋଟ ଲଗ୍ନାୟୁ ହେଲ ବ ୮।୮।୮।୨୪

( ରାଶି କ୍ରମରେ ସ୍ଥିତି ନେଇ ନବାଂଶ ଅଯୁ ଅଣିବା ଠିକ୍ ନୁହେଁ )
ବର୍ତ୍ତମାନ ଅଗତ ଅଯୁର 'ଶୋଧନ' ଆବଶ୍ୟକ ।

୧. ରବି—ନିଜର ଶତ୍ରୁ ଗୃହରେ ନଥିବାରୁ ଆୟୁହାନି ନାହିଁ ।

ତେଣୁ ରବିର ଆୟୁ

ପୂର୍ବ ପ୍ରକାରେ ବ ୧୫—୨—୧୧—୪୧ ରହିବ ।

ଗ୍ରହସ୍ଫୁଟକୁ ଧରି ଭାବ କଳିତ ଚକ୍ର ପ୍ରକାରେ ଅୟୁ ହାନି ହେବା କଥା ମୂଳ ପ୍ରମାଣ ବା ଟୀକାରେ ନାହିଁ । ତେଣୁ ଏଠାରେ ରାଶି-ଚକ୍ରରେ ଲଗ୍ନସ୍ଥାନଠାରୁ ଗ୍ରହସ୍ଥିତି ରାଶି ମାନ ଗଣନାରେ ଆସିବ । ଯେପରିକି ଉଦାହୃତ ଜାତକର ରବି ଲଗ୍ନରାଶିରେ ଥିଲେହେଁ ଭାବରେ ଦ୍ୱାଦଶ ଭାବସ୍ଫୁଟ ମଧ୍ୟରେ ରହୁଛି, ତଥାପି ଏଠାରେ ଲଗ୍ନସ୍ଥ ବୋଲି ଗ୍ରହଣ କରାଯିବ ।

୨. ଚନ୍ଦ୍ର—ମିଥୁନରେ ଅଛି । ଏହା ନିଜର ଅସ୍ତାଂଶ ମଧ୍ୟରେ ଅଛି । ତେଣୁ ସେ ଅର୍ଦ୍ଧ ଆୟୁ ହାନି କରିବ । ଫଳରେ ଦତ୍ତାୟୁ ବ ୨୧|୧୦|୧୪|୧୦ ସ୍ଥଳେ ବ ୧୦|୧୧|୭|୫ ମାତ୍ର ରହିବ ।

୩. ମଙ୍ଗଳ—କନ୍ୟାରେ ଅଛି । ଶତ୍ରୁଗୃହରେ ଥିଲେ ମଧ୍ୟ ସେ ଆୟୁହାନି କରିବ ନାହିଁ । ତେଣୁ ତାହାର ଦତ୍ତାୟୁ ବ ୯|୪|୨୧|୩୦ ଠିକ୍ ରହିବ ।

୪. ବୁଧ—ରବି ସହିତ ଥିଲେ ମଧ୍ୟ ଅସ୍ତାଂଶରେ ନାହିଁ । କିନ୍ତୁ ସେ ଶତ୍ରୁ-ଗୃହରେ ଅଛି । ଅତଏବ ତିନି ଭାଗରୁ ଭାଗେ ଅୟୁ ହାନି ହେବ । ଫଳରେ ବ ୧୦|୭|୨୭|୨୪ ସ୍ଥଳେ ବ ୩|୬|୧୯|୮ କଟିଯାଇ ବାକି ରହିବ ବ ୭|୧|୮|୧୬ ।

୫. ବୃହସ୍ପତି—ମିଥୁନରେ ଅଛି । ବୁଧ ତାହାର ଶତ୍ରୁଗ୍ରହ । ତେଣୁ ସେ ତିନି-ଭାଗରୁ ଭାଗେ ଆୟୁ ହାନି କରିବ । ଫଳରେ ତାହାର ଅୟୁରୁ ବ ୪|୭|୬|୫୪|୪୦ କଟିଯାଇ ଅବଶିଷ୍ଟ ରହିଲ

ବ ୯|୨|୧୧|୪୯|୨୦ ।

୬. ଶୁକ୍ର—ଦ୍ୱାଦଶରେ ସ୍ୱଗୃହରେ ଅଛି । ସ୍ୱଗୃହରେ ରହିବା ଅୟୁ ହାନିକାରକ ନୁହେ । ସେ ଶୁଭଗ୍ରହ 'ଦ୍ୱାଦଶରେ ଥିବା ହେତୁ ଆୟୁର ଅର୍ଦ୍ଧହାନି କରିବ । ଫଳରେ ବ ୧୮|୦|୨୯|୧୬|୪୦ ସ୍ଥଳରେ ଶୋଧିତ ଅୟୁ ରହିବ ବ ୯|୦|୧୪|୩୮|୨୦ ।

୭. ଶନି—ଶତ୍ରୁଗୃହରେ ଅଛି । ଫଳରେ ସେ ଏକ ତୃତୀୟାଂଶ ହାନି କରିବ । ତେଣୁ ତାହାର ଦତ୍ତାୟୁରୁ ବ ୫।୦।୭।୪୬।୪୦ ହାନି ଘଟିବ । ଫଳରେ ବ ୧୫।୦।୨୩।୨୦ ରୁ ଏହି ବ ୫।୦।୭।୪୬।୪୦ କଟିଯାଇ ଶନିର ଶୋଧିତ ଆୟୁ ରହିବ ବ ୧୦।୦।୧୫।୩୩।୨୦ ।

୮. ଲଗ୍ନର—ସ୍ଫୁଟାୟୁରେ ପରିବର୍ତ୍ତନ ଆବଶ୍ୟକ ପଡୁନଥିବା ହେତୁ — ଲଗ୍ନାୟୁ ବ ୮।୮।୮।୨୪ ରହିବ ।

ଅତଏବ ଉଦାହୃତ ଜାତକର ମୋଟ ଆୟୁଃ—

| | | | | | | | |
|---|---|---|---|---|---|---|---|
| ରବିର | ସ୍ଫୁଟାୟୁ | ବ | ୧୫— | ୨— | ୧୧— | ୪୧— | ୦ |
| ଚନ୍ଦ୍ରର | ସ୍ଫୁଟାୟୁ | ବ | ୧୦— | ୧୧— | ୭— | ୫— | ୦ |
| ମଙ୍ଗଳର | ସ୍ଫୁଟାୟୁ | ବ | ୯— | ୪— | ୨୧— | ୩୦— | ୦ |
| ବୁଧର | ସ୍ଫୁଟାୟୁ | ବ | ୭— | ୧— | ୮— | ୧୬— | ୦ |
| ବୃହସ୍ପତିର | ସ୍ଫୁଟାୟୁ | ବ | ୯— | ୨— | ୧୧— | ୪୯— | ୨୦ |
| ଶୁକ୍ରର | ସ୍ଫୁଟାୟୁ | ବ | ୯— | ୦— | ୦— | ୩୮— | ୨୦ |
| ଶନିର | ସ୍ଫୁଟାୟୁ | ବ | ୧୦— | ୦— | ୧୫— | ୩୩— | ୨୦ |
| ଲଗ୍ନର | ସ୍ଫୁଟାୟୁ | ବ | ୮— | ୮— | ୮— | ୨୪— | ୦ |
| ମୋଟ | ସ୍ଫୁଟାୟୁ | ବ | ୭୯— | ୭— | ୯— | ୩୭— | ୦ |

## ମନୁଷ୍ୟାଦିଙ୍କର ପରମାୟୁ କଥନ

ସମାଃ ଷଷ୍ଟିର୍ଦ୍ୱିଘ୍ନା ମନୁଜକରିଣାଂ ପଞ୍ଚ ଚ ନିଶା
ହୟାନାଂ ଦ୍ୱାବିଂଶତ୍ ଖରକରଭୟୋଃ ପଞ୍ଚକକୃତିଃ ।
ବିରୂପା ସାପ୍ୟାୟୁର୍ବୃଷମହିଷୟୋର୍ଦ୍ୱାଦଶ ଶୁନାଂ
ସ୍ମୃତଂ ଛାଗାଦୀନାଂ ଦଶକସହିତାଃ ଷଟ୍ ଚ ପରମମ୍ ।୫।

ମନୁଷ୍ୟ ତଥା ହସ୍ତୀର ଆୟୁ ବ ୧୨୦।୦।୫ ଦିନ, ଘୋଡ଼ାର ୩୨ ବର୍ଷ, ଗଧ ଓ ଓଟର ୨୫ ବର୍ଷ, ବଳଦ ଓ ମହିଷର ୨୪ ବର୍ଷ, କୁକୁରର ୧୨ ବର୍ଷ, ମେଣ୍ଢାଆଦିଙ୍କର ଆୟୁ ୧୬ ବର୍ଷ ଅଟେ ।

ବି: ଦ୍ର:— ମନୁଷ୍ୟେତର ଜୀବମାନଙ୍କର ଆୟୁ ଜାଣିବା ଆବଶ୍ୟକ ହେଲେ ସେହି ଜୀବର ଲଗ୍ନକୁ ମନୁଷ୍ୟ ଜନ୍ମବୋଲି ଧରିନେଇ ଆୟୁ ହିସାବ

କର ଆଣିବେ । ଯାହା ଆସିଲ ତାକୁ ସେହି ଜୀବର ପରମାୟୁ ବର୍ଷରେ ଗୁଣି ମନୁଷ୍ୟର ପରମାୟୁ (ବ ୧୨୦।୦।୫) ରେ ହରଣ କଲେ ଯାହା ଲବ୍ଧ ଅସିବ ତାହା ସେହି ଜୀବର ଆୟୁର୍ଦାୟ ବୋଲି ବୁଝିବେ ।୫।

### ପରମାୟୁଷ ଲାଭପାଇଁ ଆବଶ୍ୟକ ଗ୍ରହସ୍ଥିତ

ଅନିମିଷପରମାଂଶକେ ବିଲଗ୍ନେ ଶଶିତନଯେ ଗବେ ପଞ୍ଚବର୍ଗଲିପ୍ତେ
ଭବତିହି ପରମାୟୁଷଃ ପ୍ରମାଣଂ ଯଦି ସକଳାଃ ସହିତାଃ ସ୍ୱତୁଙ୍ଗଭେଷୁ ।୬।

ମୀନ ଲଗ୍ନର ଶେଷ ନବାଂଶରେ ଜନ୍ମହେଲେ, ବୁଧ ବୃଷର ପଚିଶି କଳାରେ ଥିଲେ, ଅନ୍ୟାନ୍ୟ ଗ୍ରହ ସମସ୍ତେ ନିଜ ନିଜର ଉଚ୍ଚ ସ୍ଥାନରେ ରହିଥିଲେ ବ ୧୨୦।୦।୫ ପରମାୟୁ ମିଳେ ।୬।

ଆୟୁର୍ଦାୟଂ ବିଷ୍ଣୁଗୁପ୍ତୋଽପି ଚୈବଂ ଦେବସ୍ୱାମୀ ସିଦ୍ଧସେନଶ୍ଚ ଚକ୍ରେ
ଦୋଷସ୍ତେଷାଂ ଜାୟତେଽଷ୍ଟାବରିଷ୍ଟଂ ହିତ୍ୱା ନାୟୁର୍ବିଂଶତେଃ ସ୍ୟାଦଧସ୍ତାତ୍ ।୭।

ଆୟୁର୍ଦାୟ ବିଷୟରେ ବିଷ୍ଣୁଗୁପ୍ତ, ଦେବସ୍ୱାମୀ ଓ ସିଦ୍ଧସେନ ଯାହା କହିଛନ୍ତି ସେ ସମସ୍ତ ପ୍ରମାଣରେ ଭୁଲ ରହିଥିବା ହେତୁ ଗ୍ରାହ୍ୟନୁହେ । ସେମାନଙ୍କର ପ୍ରମାଣରେ ଆଠବର୍ଷ ଯାଏ ବାଳାରିଷ୍ଟ ଓ କୋଡିଏ ବର୍ଷରୁ ଅୟୁ ନ୍ୟୂନ ନ ହେବା ରହିଛି, ଏହା ଅସିଦ୍ଧ ଅଟେ ।୭।

ଯସ୍ମିନ୍ ଯୋଗେ ପୂର୍ଣ୍ଣମାୟୁଃ ପ୍ରଦିଷ୍ଟଂ ତସ୍ମିନ୍ ପ୍ରୋକ୍ତଂ ଚକ୍ରବର୍ତ୍ତିତ୍ୱମନ୍ୟୈଃ
ପ୍ରତ୍ୟକ୍ଷୋଽୟଂ ତେଷୁ ଦୋଷଃ ପରେଽପି ଜୀବନ୍ତ୍ୟାୟୁଃ ପୂର୍ଣ୍ଣମର୍ଥୈର୍ବିନାପି ।୮।

ଯେଉଁ ଯୋଗରେ ପୂର୍ଣ୍ଣାୟୁ ହେବା ଲେଖାଗଲା (ଗ୍ରହମାନେ ଉଚ୍ଚରେ ଥିବେ–ଷଷ୍ଠଶ୍ଳୋକ ଦେଖନ୍ତୁ) ସେହି ଯୋଗରେ ମଧ୍ୟ ଚକ୍ରବର୍ତ୍ତିତ୍ୱ ଯୋଗ ହେବା କୌଣସି କୌଣସି ଆଚାର୍ଯ୍ୟ କହିଛନ୍ତି । କିନ୍ତୁ ସେପରି ବାସ୍ତବରେ ହୁଏ ନାହିଁ । କାରଣ ବହୁ ଦରିଦ୍ର ତଥା ସାଧାରଣ ବ୍ୟକ୍ତି ପୂର୍ଣ୍ଣାୟୁ ଲାଭ କରିଥାନ୍ତି ଓ ବହୁ ରାଜା ପୂର୍ଣ୍ଣାୟୁ ଲାଭ କରିପାରନ୍ତି ନାହିଁ, ତେଣୁ ଏହି ପୂର୍ଣ୍ଣାୟୁ ଯୋଗ ଓ ଚକ୍ରବର୍ତ୍ତିତ୍ୱ ଯୋଗ ଏକତ୍ର ଯୋଡିବା ଉଚିତ ନୁହେ ।୮।

ସ୍ୱମତେନ କିଲାହ ଜୀବଶର୍ମା ଗ୍ରହଦାୟଂ ପରମାୟୁଷଃ ସ୍ୱରାଂଶମ୍
ଗ୍ରହଭୁକ୍ତନବାଂଶରାଶିତୁଲ୍ୟଂ ବହୁସାମ୍ୟଂ ସମୁପୈତି ସତ୍ୟବାକ୍ୟମ୍ ।୯।

ଜୀବଶର୍ମା ନାମକ ଆଚାର୍ଯ୍ୟ କହନ୍ତି ଯେ ପରମାୟୁ ବ ୧୨୦।୦।୫ ର ସପ୍ତମାଂଶ ସପ୍ତଗ୍ରହ ସମାନ ଭାବରେ ପ୍ରଦାନ କରନ୍ତି । ଅର୍ଥାତ୍ ପ୍ରତ୍ୟେକ ଗ୍ରହ

ସ୍ୱର୍କ୍ଷଇସ୍ଥାନରେ ଥିଲେ ବ ୧୭।୧।୨୨।୮।୩୪।୧୭ ପରମାୟୁ ପ୍ରଦାନ କରନ୍ତି । ଏହିମତ ବହୁସମ୍ମତ ନୁହେ । ଗ୍ରହ ଭୋଗକରିଥିବା ନବାଂଶ ଅନୁପାତରେ ଆୟୁ ଆନୟନ କରିବା ଉଚିତ ବୋଲି ସତ୍ୟାଚାର୍ଯ୍ୟ ଯାହା କହିଛନ୍ତି ତାହା ବହୁ ଆଚାର୍ଯ୍ୟଙ୍କ ଦ୍ୱାରା ସମର୍ଥିତ ହୋଇଅଛି ।

## ସତ୍ୟାଚାର୍ଯ୍ୟଙ୍କର ମତରେ ଆୟୁର୍ବିଚାର

ସତ୍ୟୋକ୍ତେ ଗ୍ରହମିଷ୍ଟଂ ଲିପ୍ତୀକୃତ୍ୱା ଶତଦ୍ୱୟେନାପ୍ତମ୍
ମଣ୍ଡଳଭାଗବିଶୁଦ୍ଧେଽବ୍ଦାଃ ସ୍ୟୁଃଶେଷାତ୍ତୁ ମାସାଦ୍ୟାଃ ।୧୦।

ଗ୍ରହସ୍ଫୁଟକୁ କଳାରେ ପରିଣତକର, ତାକୁ ନବାଂଶର କଳା ( ୩ ଅଂଶ ୨୦ କଳ = ୨୦୦ କଳା) ୨୦୦ ରେ ହରଣ କଲେ ଯାହାଲବ୍ଧ ଆସିବ ତାହା ଭୁକ୍ତ ନବାଂଶ । ଏହାକୁ ୧୨ ରେ ହରଣ କର । ଅବଶିଷ୍ଟ ନବାଂଶ ଆୟୁ ବର୍ଷ ପୂର୍ବର ଅବଶେଷକୁ ୧୨ ରେ ଗୁଣି ୨୦୦ ରେ ହରଣ କଲେ ଲବ୍ଧ ମାସ ଓ ଶେଷକୁ ୩୦ ରେ ଗୁଣି ୨୦୦ ରେ ହରିଲେ ଦିନ ଓ ଶେଷକୁ ୬୦ ରେ ଗୁଣି ୨୦୦ ରେ ହରଣ କଲେ ଲବ୍ଧ ଦଣ୍ଡ ଏହି କ୍ରମରେ ଆଣିବେ ।

ଉଦାହରଣ:—ମନେକର ରବିସ୍ଫୁଟ ର ୮।୧୨।୩୫ ।ରାଶି ୮ ଅଂଶ ୧୨ କଳା ୩୫ କୁ କଳାରେ ପରିଣତ କଲେ ହେଲ ୧୫୧୫୫ ଏହାକୁ ୨୦୦ ରେ ହରଣ କଲେ ଲବ୍ଧ ଆସିଲ ୭୫ ।। ଅବଶିଷ୍ଟ ୧୫୫ ଲବ୍ଧକୁ ୧୨ ରେ ହରଣ କରିବାରୁ ଲବ୍ଧ ୬ ଅବଶେଷ ୩ ବର୍ଷ । ପୂର୍ବର ଅବଶିଷ୍ଟ ୧୫୫ କୁ ୧୨ ରେ ଗୁଣିଲେ ୧୮୬୦ ମାସ । ଏହାକୁ ୨୦୦ ରେ ହରଣ କଲେ ଲବ୍ଧ ଆସିଲା ୯ ମାସ ଅବଶିଷ୍ଟ ୬୦ ମାସକୁ ୩୦ ରେ ଗୁଣିଲେ ହେଲ ୧୮୦୦ ଦିନ । ଏହାକୁ ୨୦୦ରେ ହରିଦେଲେ ଲବ୍ଧ ଆସିଲା ୯ ଦିନ ମାତ୍ର । ରବିର ଦତ୍ତାୟୁ ୩ ବର୍ଷ ୯ ମାସ ୯ ଦିନ ମାତ୍ର ।

ସ୍ୱତୁଙ୍ଗବକ୍ରୋପଗତୈସ୍ତ୍ରିସଂଗୁଣଂ ଦ୍ୱିରୁତ୍ତମସ୍ୱାଂଶକଭତ୍ରିଭାଗଗୈଃ
ଇୟାନ୍ ବିଶେଷସ୍ତୁ ଭଦତ୍ତଭାଷିତେ ସମାନମନ୍ୟତ୍ପ୍ରଥମେଽପ୍ୟୁଦୀରିତମ୍ ।୧୧।

ଯେ ଗ୍ରହ ଉଚ୍ଚ ବା ବକ୍ରୀ ହୋଇଥିବ, ପୂର୍ବୋକ୍ତ ରୀତିରେ ଆନୀତ ଆୟୁକୁ ୩ ଗୁଣ କରାଯିବ । ଯେ ଗ୍ରହ ନିଜର ବର୍ଗୋତ୍ତମ ନବାଂଶରେ ବା ନିଜର ଦ୍ରେକ୍କାଣରେ ଥିବ ତାହାର ଦତ୍ତାୟୁ ଦୁଇଗୁଣ ହେବ । ଏହି ମତଟି ଅନ୍ୟାନ୍ୟ ଆଚାର୍ଯ୍ୟଙ୍କ ଠାରୁ ଭିନ୍ନଅଟେ । ଅନ୍ୟାନ୍ୟ ରୀତି ଗୁଡ଼ିକ ଅର୍ଥାତ୍ ଶତ୍ରୁ ଗୃହରେ ଥିବାଗ୍ରହ ତୃତୀୟାଂଶ ଆୟୁ ହାନିକରେ, ଅସ୍ତଗତ ଗ୍ରହ ଅର୍ଦ୍ଧହାନି, ନୀଚସ୍ଥ ଗ୍ରହ

ଅର୍ଦ୍ଧହାନି କରେ (ଏହି ଅଧ୍ୟାୟର ଦ୍ୱିତୀୟ ତଥା ତୃତୀୟ ଶ୍ଳୋକ ଦେଖ) ଇତ୍ୟାଦି ବିଷୟ ଅନ୍ୟାନ୍ୟ ଆଚାର୍ଯ୍ୟଙ୍କପରି ଅଟେ ।୧୧।

## ଲଗ୍ନାୟୁର୍ଦାୟରେ ବିଶେଷତ୍ୱ

କିନ୍ତ୍ୱଂଶପ୍ରତିମଂ ଦଦାତି ବୀର୍ଯ୍ୟାନ୍ୱିତା ରାଶିସମଂ ଚ ହୋରା
କ୍ରୂରୋଦୟେ ପୋପଚୟଃ ସ ନାନି କାର୍ଯ୍ୟଂ ଚ ନାନ୍ୟୈଃ ପ୍ରଥମୋପଦିଷ୍ଟୈଃ ।୧୨।

ମେଷାଦିରୁ ଆରମ୍ଭକରି ଲଗ୍ନର ଯେତିକି ନବାଂଶ ଭୋଗ ହୋଇଥିବ ସେତିକି ବର୍ଷ ଓ ଅବଶେଷରୁ କ୍ରମେ ମାସ ତଥା ଦିନ ସ୍ଥିର କରିବେ, ଏହା ଲଗ୍ନାୟୁର୍ଦାୟ ।

ଯଦି ଲଗ୍ନ ବଳଯୁକ୍ତ ଅର୍ଥାତ୍ ନିଜର ଅଧିପତି, ବୁଧ ବା ଗୁରୁ କାହାରିକି ଦୃଷ୍ଟ ବା ଯୁକ୍ତ ହୁଏ ତେବେ ଆନୀତ ଆୟୁ ଦୁଇଗୁଣ ହେବ ।

ପାପଗ୍ରହ ଲଗ୍ନରେ ଥିଲେ ଆୟୁହାନି ଘଟିବ । ଗ୍ରହାୟୁର୍ଦାୟରେ ଲଗ୍ନାୟୁ (ପ୍ରଥମ ଶ୍ଳୋକଦେଖ) ଉଲ୍ଲେଖ ନଥିବାରୁ ଅୟୁର୍ଦାୟ ହରଣର ଅନ୍ୟକୌଣସି ନିୟମ ଏଠାରେ ଖଟିବ ନାହିଁ ।

ସତ୍ୟୋପଦେଶୋ ବରମତ୍ର କିନ୍ତୁ କୁର୍ବନ୍ତ୍ୟ ଯୋଗ୍ୟଂ ବହୁବର୍ଗଣାଭିଃ
ଆଚାର୍ଯ୍ୟକତ୍ୱଂ ଚ ବହୁଘ୍ନତାୟାମେକଂତୁ ଯଦ୍ଭୂରି ତଦେବ କାର୍ଯ୍ୟମ୍ ।୧୩।

ସତ୍ୟାଚାର୍ଯ୍ୟଙ୍କ ମତ ଏବିଷୟରେ ସର୍ବଶ୍ରେଷ୍ଠ ଅଟେ, କିନ୍ତୁ କେତେକ ଏହାଙ୍କ ମତ ସହିତ ଅନ୍ୟମତକୁ ମିଶାଇ ଆୟୁଃସ୍ଥିର କରିଥାନ୍ତି, ଏହା ଉଚିତ ନୁହେ ।

ବହୁମତରେ ଗ୍ରାହ୍ୟ ରୀତିକୁ ଗ୍ରହଣ କରିବା ଉଚିତ । ସତ୍ୟାଚାର୍ଯ୍ୟ କହନ୍ତି ଉଚ୍ଚରେ ଥିବା ଗ୍ରହ ଯଦି ବକ୍ରି ହୋଇଥାଏ ତେବେ ଥରେମାତ୍ର ୩ ଗୁଣଆୟୁ (ଉଚ୍ଚସ୍ଥ ହେଲେ ୩ ଗୁଣ ଓ ବକ୍ରି ହେଲେ ୩ ଗୁଣ ବୃଦ୍ଧି ପାଇବା ନିୟମ) ବୃଦ୍ଧିପାଇବ, କିନ୍ତୁ ବୃଦ୍ଧିକାରଣ ପାଇଁ ଦୁଇଟି ଗୁଣ ଥିଲେ ମଧ୍ୟ (ଉଚ୍ଚ ଓ ବକ୍ରି) ଛଗୁଣ ଅୟୁବୃଦ୍ଧି ହେବନାହିଁ ।

ବହୁ ନିୟମରେ ବୃଦ୍ଧି ବା ହାନି ଘଟୁଥିଲେ ସର୍ବଶ୍ରେଷ୍ଠ ବୃଦ୍ଧି ଓ ସର୍ବଶ୍ରେଷ୍ଠ ହାନି ନିୟମ ମାନ ଗ୍ରହଣ କରିବେ । ଗୋଟିଏ ଗ୍ରହକୁ କୌଣସି ଦୁଇଟି ନିୟମରେ ପକାଇ ଆୟୁବଢ଼ାଇବା ବା କମାଇବା ଉଚିତ ନୁହେଁ ।

## ଅମିତାୟୁ ଯୋଗ

ଗୁରୁଶଶିସହିତେ କୁଳୀରଲଗ୍ନେ ଶଶିତନୟେ ଭୃଗୁଜେ ଚ କେନ୍ଦ୍ରଯାତେ ।
ଭବରିପୁସହଜୋପଗୈଃଶେଷୈରମିତମିହାୟୁରନୁକ୍ରମାଦ୍ୱିନାସ୍ୟାତ୍ । ୧୪ ।

ଇତିଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ଆୟୁର୍ଦାୟାଧ୍ୟାୟଃ ସପ୍ତମଃ ।

କର୍କଟ ଲଗ୍ନରେ ବୃହସ୍ପତି ଓ ଚନ୍ଦ୍ର ଥିବେ, ବୁଧ ଓ ଶୁକ୍ର କେନ୍ଦ୍ରସ୍ଥାନରେ ଥିବେ, ରବି, ମଙ୍ଗଳ ଓ ଶନି ଏକାଦଶ, ଷଷ୍ଠ ତଥା ତୃତୀୟରେ ଥିଲେ ଗଣିତାଗତ ଆୟୁ ନହୋଇ ଅମିତ ଆୟୁ ହୋଇଥାଏ । ଏହା ବିଶିଷ୍ଟ ଆୟୁ-ବୃଦ୍ଧିକର ଯୋଗଅଟେ ।୧୪।

ବୃହଜ୍ଜାତକର ଆୟୁର୍ଦାୟାଧ୍ୟାୟ ନାମକ ସପ୍ତମ ଅଧ୍ୟାୟର
ସୁବୋଧିନୀ ଭାଷାଟୀକା ସମାପ୍ତ ହେଲ ।

---

# ଦଶାନ୍ତର୍ଦଶାଧ୍ୟାୟୋଽଷ୍ଟମଃ

## ଲଗ୍ନ ତଥା ଗ୍ରହମାନଙ୍କର ଦଶାକ୍ରମ

ଉଦୟରବିଶଶାଙ୍କପ୍ରାଣିକେନ୍ଦ୍ରାଦିସଂସ୍ଥାଃ
ପ୍ରଥମବୟସି ମଧ୍ୟେଽନ୍ତ୍ୟେ ଚ ଦଦ୍ୟୁଃ ଫଲାନି ।
ନ ହି ନ ଫଲବିପାକଃ କେନ୍ଦ୍ରସଂସ୍ଥାଦ୍ୟଭାବେ
ଭବତିହି ଫଲପଙ୍କ୍ତି ପୂର୍ବମାପୋକ୍ଲିମେଽପି ।୧।

ଲଗ୍ନ, ରବି, ଚନ୍ଦ୍ର ଏହିମାନଙ୍କ ମଧ୍ୟରେ ଯେ ଅଧିକ ବଳବାନ୍ ପ୍ରଥମେ ତାହାର ଦଶା ଭୋଗ ହୁଏ । ତାପରେ କେନ୍ଦ୍ରସ୍ଥାନରେ ଥିବା ଗ୍ରହମାନଙ୍କ ମଧ୍ୟରେ ଯେ ବଳବାନ୍ ତାହାର ଦଶା ପ୍ରଥମେ ଭୋଗ ହେବ, ପରେ ଅନ୍ୟାନ୍ୟ-ମାନଙ୍କର ହେବ । ଏହାପରେ ପଣଫର ସ୍ଥାନସ୍ଥିତ ଗ୍ରହ ମଧ୍ୟରେ ଯେ ବଳବାନ ତାହାର ଦଶା, ପ୍ରଥମେ ହେବ ପରେ ଅନ୍ୟ ଗ୍ରହମାନଙ୍କର ହେବ । ତାପରେ ଆପୋକ୍ଲିମ ସ୍ଥାନସ୍ଥ ବଳବାନ୍ ଗ୍ରହର ଦଶା ପ୍ରଥମେ ଭୋଗ ହେବାପରେ ଅନ୍ୟ ଗ୍ରହର ହେବ । ଯଦି କେନ୍ଦ୍ର ତଥା ପଣଫର ଗ୍ରହହୀନ ହୋଇଥିବେ ତେବେ ଆପୋକ୍ଲିମ ଦଶା ଆଗେ ଭୋଗ ହେବ ।

ମନେକର କଣେ ଲୋକର ଜାତକରେ ରବି, ଚନ୍ଦ୍ର, ଲଗ୍ନ କ୍ରମରେ ବଳଯୁକ୍ତ ଅର୍ଥାତ୍ ରବି ସର୍ବାଧିକ ବଳଯୁକ୍ତ, ତେବେ ପ୍ରଥମେ ରବିଦଶା

ଭୋଗ ହେବ । ଏହାପରେ କେନ୍ଦ୍ର, ପଣଫର ତଥା ଅପୋକ୍ଲିମ ସ୍ଥାନରୁ ଗ୍ରହଦଶାର ବିଗ୍ରହ କରାଯିବ । ଶେଷରେ ଚନ୍ଦ୍ର ଓ ତାପରେ ଲଗ୍ନଦଶା ହେବ ।୧।

## ଦଶାବର୍ଷ ନିରୂପଣ

ଆୟୁଃ କୃତଂ ଯେନ ହି ଯତ୍ତଦେବ କଲ୍ପ୍ୟା ଦଶା ସା ପ୍ରବଲସ୍ୟ ପୂର୍ବମ୍ ।
ସାମ୍ୟେ ବହୂନାଂ ବହୁବର୍ଷଦସ୍ୟ ତେଷାଞ୍ଚସାମ୍ୟେପ୍ରଥମୋଦିତସ୍ୟ ।୨।

ଯେଉଁ ଗ୍ରହର ଦତ୍ତାୟୁ ଯେତେ ଆସିବ ତାହାର ଦଶା ବର୍ଷ କାଳ ସେତିକି ବୋଲି ଜାଣିବେ । ସବୁଠାରୁ ବଳିଷ୍ଠ ଗ୍ରହର ଦଶା ଆଗେ ହେବ । ସମାନ ବଳଯୁକ୍ତ ବହୁଗ୍ରହ ଥିଲେ ସେମାନଙ୍କ ମଧ୍ୟରେ ଯାହାର ଦତ୍ତାୟୁ ଅଧିକ ସେ ଦଶା ପ୍ରଥମ ହେବ । ଏକାଧିକ ଗ୍ରହଙ୍କର ଦତ୍ତାୟୁ ଯଦି ସମାନ ହେବ, ତେବେ ସେମାନଙ୍କ ମଧ୍ୟରୁ ଯେ ପ୍ରଥମେ ଉଦିତ ହୁଏ ଅର୍ଥାତ୍ ରବିଠାରୁ ଅସ୍ତାଂଶ ପାର ହୋଇଥାଏ ତାହାର ଦଶା ପ୍ରଥମେ ହେବ ।

ଆଗେ କହାଯାଇ ଅଛି ଯେ ରବି, ଚନ୍ଦ୍ର ଲଗ୍ନ କ୍ରମରେ ଦଶାଧିପ ହେବେ । ଦେଖିବାକୁ ହେବ ଯେ ଏମାନଙ୍କ ମଧ୍ୟରେ ଦତ୍ତାୟୁ ଯାହାର ବେଶୀ, ସେ ପ୍ରଥମ ଦଶା ହେବ, ତାପରେ ପୂର୍ବ ନିୟମ ଅନୁସାରେ ଦଶାମାନେ ଭୋଗ ହେବେ ।

## ଅନ୍ତର୍ଦଶା ନିରୂପଣ

ଏକର୍କ୍ଷଗୋର୍ଦ୍ଧମପହୃତ୍ୟ ଦଦାତି ତୁ ସ୍ବଂ ତ୍ର୍ୟଂଶଂ ତ୍ରିକୋଣଗୃହଗଃ ସ୍ମରଗଃସ୍ବସ୍ବାଂଶମ୍
ପାଦଂ ଫଲସ୍ୟ ଚତୁରସ୍ରଗତଃ ସହୋରାସ୍ତ୍ରେବ ପରସ୍ପରଗତାଃ ପରିପାଚୟନ୍ତି ।୩।

ଦଶାଧିପ ଯେ ହେବ ତାହା ସହିତ ଯେଉଁ ଗ୍ରହମାନେ ଥିବେ ସେମାନଙ୍କ ମଧ୍ୟରେ ଯେ ସର୍ବାଧିକ ବଳବାନ୍ ଗ୍ରହ ସେ ଗ୍ରହ ଦଶାନାଥର ପ୍ରଦତ୍ତ ଆୟୁର (ଦଶାକାଳର) ଅର୍ଦ୍ଧକାଳର ଅନ୍ତର୍ଦଶାଧିପତି ହୁଏ । ଏ ପ୍ରଥମ ଅନ୍ତର୍ଦଶା ।

ଏହାପରେ ନବମ, ପଞ୍ଚମ ଏହି ଦୁଇସ୍ଥାନରେ ଥିବା ଗ୍ରହମାନଙ୍କ ମଧ୍ୟରେ ଯେ ବଳବାନ୍ ସେ ଦଶାନାଥର ଏକ ତୃତୀୟାଂଶକାଳର ଅନ୍ତର୍ଦଶାଧିପତି ହୁଏ । ଏ ଦ୍ଵିତୀୟ ଅନ୍ତର୍ଦଶା ।

ଏହାପରେ ଦଶାର ସପ୍ତମ ସ୍ଥାନରେ ଥିବା ଗ୍ରହ ମଧ୍ୟରେ ବଳବାନ୍ ଗ୍ରହ ଦଶାନାଥର ଦଶାକାଳର ଏକ ସପ୍ତମାଂଶର ଅନ୍ତର୍ଦଶାଧିପତି ହୁଏ । ଏ ତୃତୀୟ ଅନ୍ତର୍ଦଶା ।

ଏହାପରେ ଚତୁର୍ଥ, ଅଷ୍ଟମ ଏହି ଦୁଇସ୍ଥାନରେ ଥିବାଗ୍ରହ ମଧ୍ୟରେ ଯେ ବଳବାନ୍ ସେ ଦଶାନାଥର ଏକ ଚତୁର୍ଥାଂଶ ସମୟର ଅନ୍ତର୍ଦଶାଧିପ ହେବ। ଏ ଚତୁର୍ଥ ଅନ୍ତର୍ଦଶା।

ପୂର୍ବ କଥିତ ସ୍ଥାନମାନଙ୍କରେ ଯଦି ଗ୍ରହ ନଥିବେ ତେବେ ପର ୨ ସ୍ଥାନ ଦେଖୁଥିବାକୁ ହେବ ।୩।

ସ୍ଥାନାନ୍ୟଥୈତାନି ସବର୍ଣ୍ଣୟିତ୍ୱା ସର୍ବାଣ୍ୟଧଶ୍ଛେଦବିବର୍ଜିତାନି
ଦଶାବ୍ଦପିଣ୍ଡେ ଗୁଣକା ଯଥାଂଶଂଚ୍ଛେଦସ୍ତଦୈକ୍ୟେନ ଦଶାପ୍ରଭେଦଃ ।୪।

ପୂର୍ବରୁ ଉଲ୍ଲେଖ କରାଯିବା ପ୍ରକାରେ ଅନ୍ତର୍ଦଶାର ଭୋଗକାଳ ସବର୍ଣ୍ଣନ (ଗଣିତାଗତ ସମଚ୍ଛେଦ) ଦ୍ୱାରାରେ ଏକ ଅଙ୍କକର ଆଣିବ। ଏହାକୁ ନିମ୍ନାଙ୍କରେ ହର ଉର୍ଦ୍ଧ୍ୱାଙ୍କରେ ଗୁଣି ଏକତ୍ର ମିଶାଇ ଦେବ। ପରେ ଉପରେ ଥିବା ଅଲଗା ଅଲଗା ଅଙ୍କକୁ ଗ୍ରହର ଦଶାବର୍ଷରେ ଗୁଣି ସମସ୍ତ ଅଙ୍କଯୋଗ ହୋଇଥିବା ସଂଖ୍ୟାକୁ ଭାଜକ କଳ୍ପନାକଲେ ଅନ୍ତର୍ଦଶା ସାଧିତ ହେବ।

ମନେକର ଦଶାଗ୍ରହ ୧୫ ବର୍ଷ ହେଲା। ଦଶାଗ୍ରହ ସହିତ ଗୋଟିଏ ଗ୍ରହ ଅଛି। ନବମରେ ଗ୍ରହଅଛି, ସପ୍ତମରେ ଗ୍ରହଅଛି ଓ ଚତୁର୍ଥରେ ଗ୍ରହଅଛି। ଅତଏବ $\frac{୧}{୧}+\frac{୧}{୨}+\frac{୧}{୩}+\frac{୧}{୭}+\frac{୧}{୪}=$

ପରସ୍ପର ଗୁଣନ କଲେ ହେଲା ୧୬୮ ତେଣୁ ନିମ୍ନାଙ୍କରେ ହର ଊର୍ଦ୍ଧ୍ୱାଙ୍କରେ ଗୁଣିବାରୁ ଫଳ ଆସିଲା

$$\frac{୧୬୮+୮୪+୫୬+୨୪+୪୨}{୧୬୮}=୩୭୪$$

ନିମ୍ନାଙ୍କ ତ୍ୟାଗକରି ଊର୍ଦ୍ଧ୍ୱସ୍ଥିତ ପ୍ରଥମ ସଂଖ୍ୟା ୧୬୮ କୁ ଦଶାବର୍ଷ ୧୫ ରେ ଗୁଣିବାରୁ ହେଲା ୨୫୨୦। ଏହାକୁ ପୂର୍ବୋକ୍ତ ସର୍ବମିଶ୍ରିତାଙ୍କ ୩୭୪ ରେ ହରିବାକୁ ହେବ। ୨୫୨୦ ÷ ୩୭୪ = ବ ୬।୮।୨୫।୪୦ ଏହା ଦଶାନାଥର ଅନ୍ତର୍ଦଶା।

ତାପରେ ଦ୍ୱିତୀୟ ଅଙ୍କଟି ହେଉଛି ୮୪। ଏହାକୁ ଦଶାବର୍ଷ ୧୫ ରେ ଗୁଣିଲେ ହେଲା ୮୪ × ୧୫ = ୧୨୬୦ ବର୍ଷ। ଏହାକୁ ପୂର୍ବୋକ୍ତ ସର୍ବମିଶ୍ରିତାଙ୍କ ୩୭୪ ରେ ହରିବାକୁ ହେବ।

$\frac{\text{୧୨୬୦ ବର୍ଷ}}{\text{୩୭୪}}$ = ବ ୩।୪।୧୨।୫। ଏହା ଦଶାନାଥର ସହିତ ଥିବା ଗ୍ରହର ଅନ୍ତର୍ଦଶା କାଳ ।

ତାପର ତୃତୀୟ ଅଙ୍କଟି ୫୬ ଏହାକୁ ଦଶାବର୍ଷ ୧୫ ରେ ଗୁଣିବାରୁ ହେଲା ୮୪୦ ବର୍ଷ । ଏହାକୁ ୩୭୪ ରେ ହରିଲେ ଫଳ ଆସିଲା ୮୪୦ ÷ ୩୭୪ = ବ ୨।୨।୨୮।୩୩ ଏହା ନବମସ୍ଥ ଗ୍ରହର ଅନ୍ତର୍ଦଶା କାଳ ।

ତାପର ଅଙ୍କ ୨୪ × ୧୫ = ଫଳ ହେଲା ୩୬୦ ବର୍ଷ । ଏହାକୁ ୩୭୪ରେ ହରିଲେ ଲବ୍ଧ ଆସିଲା ବ ୦।୧୧।୧୬।୩୧ । ଏହା ସପ୍ତମରେ ଥିବା ଗ୍ରହର ଅନ୍ତର୍ଦଶା କାଳ ।

ଚତୁର୍ଥ ଅଙ୍କଟି ୪୨ ଏହାକୁ ୧୫ ଦ୍ୱାରା ଗୁଣିବାରୁ ଫଳହେଲା ୬୩୦ ବର୍ଷ । ଏହାକୁ ୩୭୪ ରେ ହରିଲେ ଲବ୍ଧ ଆସିଲା ବ ୧।୮।୬।୨୫ ।

ଏହା ହେଉଛି ଚତୁର୍ଥ ସ୍ଥାନରେ ଥିବା ଗ୍ରହର ଅନ୍ତର୍ଦଶା କାଳ ।

ଅନ୍ତର୍ଦଶା କାଳର ହିସାବ ବର୍ଷ, ମାସ, ଦିନ, ଦଣ୍ଡ, ଇତ୍ୟାଦି ପର୍ଯ୍ୟନ୍ତ ମଧ୍ୟ ଜଣାଯାଇ ପାରେ ।୪।

## ସ୍ଥାନାଦିବଳ କ୍ରମ ହେତୁ ଦଶାଫଳ

ସମ୍ୟଗ୍‌ବଲିନଃ ସ୍ୱତୁଙ୍ଗଭାଗେ ସଂପୂର୍ଣ୍ଣବଲବର୍ଜିତସ୍ୟରିକ୍ତା
ନୀଚାଂଶଗତସ୍ୟ ଶତ୍ରୁଭାଗେ ଜ୍ଞେୟାନିଷ୍ଟଫଳା ଦଶାପ୍ରସୂତୌ ।୫।

ସ୍ଥାନାଦି ସମସ୍ତବଳ ଯୁକ୍ତହେଲେ ଓ ନିଜର ପରମୋଚ୍ଚ ସ୍ଥାନରେ ଥାଇଥିଲେ ଏଗ୍ରହ ଦଶାର ନାମ ସଂପୂର୍ଣ୍ଣା । ଏହିଦଶାର ଫଳ ସମସ୍ତ ବିଷୟରେ ଶ୍ରେଷ୍ଠ ଅଟେ ।

ଯେଉଁଗ୍ରହ ସ୍ଥାନାଦିବଳରେ ହୀନ, ନିଜର ପରମନୀଚ ସ୍ଥାନରେ ଅବସ୍ଥିତ, ଶତ୍ରୁଗ୍ରହ ବା ତାହାର ନବାଂଶରେ ଥିବ ତାହାର ନାମ "ରିକ୍ତା" । ଏଦଶା ସବୁ ବିଷୟରେ ଅଶୁଭ କରିବ ।୫।

ଭ୍ରଷ୍ଟସ୍ୟ ତୁଙ୍ଗାଦବରୋହିସଜ୍ଞ ମଧ୍ୟାଭବେତ୍ସା ସୁହୃଦୁଚ୍ଚଭାଗେ
ଆରୋହିଣୀ ନିମ୍ନପରିଚ୍ୟୁତସ୍ୟ ନୀଚାରିଭାଂଶେଷ୍ୱଧମା ଭବେତ୍ସା ।୬।

ଯେ ଗ୍ରହ ନିଜର ପରମୋଚ୍ଚ ସ୍ଥାନରୁ ଯାଇଥାଏ ଓ ପରମନୀଚ ହୋଇ-ନଥାଏ ସେ 'ଅବରୋହୀ' ହୁଏ । ଏହିଗ୍ରହ ଅଶୁଭଫଳ ଅନୁପାତରେ ପ୍ରଦାନ

କରେ । କିନ୍ତୁ ସେ ଯଦି ମିତ୍ର ଗୃହ, ମିତ୍ରନବାଂଶ ନିଜର ଉଚ୍ଚନବାଂଶରେ ଥାଏ ତେବେ ମଧ୍ୟମ ଫଳଦିଏ ।

ଗ୍ରହ ସ୍ୱନୀଚ ସ୍ଥାନରୁ ପାର ହୋଇଥାଏ ଓ ଉଚ୍ଚାଂଶରେ ଯଦି ନଥାଏ ତେବେ ସେ ଆରୋହଣୀ ବା 'ଆରୋହୀ' ଗ୍ରହହୁଏ । ଏହିଗ୍ରହ ଶୁଭଫଳ ଦିଏ । ଏହିଗ୍ରହ ଶତ୍ରୁଗୃହରେ ଥିଲେ, ଶତ୍ରୁଗ୍ରହର ନବାଂଶରେ ଥିଲେ ବା ନୀଚ ନବାଂଶରେ ଥିଲେ ସାମାନ୍ୟ ଶୁଭଫଳ ମାତ୍ର ଦିଏ ।୭।

ନୀଚୈରଭାଂଶେ ସ୍ୱମବସ୍ଥିତସ୍ୟ ଶସ୍ତେଗୃହେ ମିଶ୍ରଫଳା ପ୍ରଦଷ୍ଟା
ସଙ୍କାନୁରୂପାଣି ଫଳାନ୍ୟଥୈଷାଂ ଦଶାସୁ ବକ୍ଷାମି ଯଥୋପଯୋଗମ୍ ।୭।

ଯେଉଁଗ୍ରହ ଉଚ୍ଚସ୍ଥ, ମୂଳତ୍ରିକୋଣସ୍ଥ, ନିଜରଗୃହ, ମିତ୍ରଗୃହରେ ଥାଇ ଶତ୍ରୁ ଗ୍ରହର ନବାଂଶରେ ବା ନୀଚ ନବାଂଶରେ ଥାଏ ତାହାର "ମିଶ୍ରଫଳା" ଅର୍ଥାତ୍ ଏହିଗ୍ରହ ଶୁଭାଶୁଭ ମିଶ୍ରିତ ଫଳମାତ୍ର ଦିଏ ।୭।

### ଲଗ୍ନଦଶାର ଶୁଭାଶୁଭ ବିଚାର

ଉଭୟେଽଧମମଧ୍ୟପୂଜିତା ଦ୍ରେଷ୍କାଣୈଶ୍ଚରଭେଷ୍ୱତୋଽନ୍ୟଥା
ଅଶୁଭେଷ୍ଟସମାଃ ସ୍ଥିରେ କ୍ରମାଦ୍ଧୋରାଦ୍ୟାଃ ପରିକଳ୍ପିତା ଦଶା ।୮।

ଦ୍ୱିସ୍ୱଭାବ ରାଶି ଲଗ୍ନ ହେଲେ ଏହାର ପ୍ରଥମ ଦ୍ରେକ୍କାଣ ଅଧମ, ଦ୍ୱିତୀୟ ଦ୍ରେକ୍କାଣ ମଧ୍ୟମ ଓ ତୃତୀୟ ଦ୍ରେକ୍କାଣ ଉତ୍ତମ ଫଳଦାନକାରୀ ଅଟେ । ଚରରାଶି ଲଗ୍ନ ହେଲେ ପ୍ରଥମ ଦ୍ରେକ୍କାଣ ଉତ୍ତମ, ଦ୍ୱିତୀୟ ଦ୍ରେକ୍କାଣ ମଧ୍ୟମ ଓ ତୃତୀୟ ଦ୍ରେକ୍କାଣ ଅଧମ ଫଳ ଦିଏ । ସ୍ଥିରରାଶି ଲଗ୍ନହେଲେ ପ୍ରଥମ ଦ୍ରେକ୍କାଣ ଅଧମ, ଦ୍ୱିତୀୟ ଦ୍ରେକ୍କାଣ ଉତ୍ତମ ଏବଂ ତୃତୀୟ ଦ୍ରେକ୍କାଣ ମଧ୍ୟମ ଫଳ ଦିଏ ।୮।

### ସ୍ୱାଭାବିକ ଦଶାକାଳ

ଏକଂ ଦ୍ୱୌ ନବବିଂଶତିର୍ଧୃତିକୃତୀ ପଞ୍ଚାଶଦେଷାଂ କ୍ରମା-
ଚ୍ଚନ୍ଦ୍ରାରେନ୍ଦୁଜଶୁକ୍ରଜୀବଦିନକୃଦ୍ଦୈବା କରାଣାଂ ସମାଃ ।
ସ୍ୱୈଃସ୍ୱୈଃ ପୁଷ୍ଟଫଳାନିସର୍ଗଜନିତୈଃପକ୍ତିର୍ଦଶାଦ୍ୟାଃ କ୍ରମା-
ଦନ୍ତେ ଲଗ୍ନଦଶା ଶୁଭେତି ଯବନା ନେଚ୍ଛନ୍ତିକେଶତ୍ତଥା ।୯।

ଜନ୍ମାଦ୍ୟାରୁ ଏକବର୍ଷ ଚନ୍ଦ୍ରଦଶା, ତାପରେ ଦୁଇବର୍ଷ ମଙ୍ଗଳ, ତାପରେ ନ.ବର୍ଷ ବୁଧ, ତାପରେ କୋଡ଼ିଏ ବର୍ଷ ଶୁକ୍ର, ତାପରେ ଅଠରବର୍ଷ ଗୁରୁ, ତାପରେ କୋଡ଼ିଏ ବର୍ଷ ରବି ଓ ଶେଷରେ ପଞ୍ଚାଶ ବର୍ଷ ଶନିର ଦଶା ଭୋଗ

ହୁଏ । ମୋଟ ଦଶାକାଳ ଏକଶହ କୋଡ଼ିଏ ବର୍ଷ ହୁଏ । ଦଶାଗ୍ରହ ଶୁଭ ସ୍ଥାନରେ ଥିଲେ ଶୁଭଫଳ ଦିଏ ଅନ୍ୟଥା ଅଶୁଭଫଳ ଘଟେ ।

କେହି ୨ ଗ୍ରହଦଶା ୧୨୦ ବର୍ଷ ହେତୁ ଓ ଅଯୁର୍ଦାୟ ସେତିକି ହେତୁ ଲଗ୍ନଦଶାକୁ ଆୟୁର୍ଦାୟ ମଧ୍ୟରେ ଗଣନ୍ତି ନାହିଁ । କିନ୍ତୁ ଏହିମତକୁ ସତ୍ୟାଚାର୍ଯ୍ୟ ପ୍ରଭୃତି ମନୀଷୀ ମାନେ ଗ୍ରହଣ କରନ୍ତି ନାହିଁ । ସେମାନେ କହନ୍ତି ଏହି ପରମାୟୁ (୧୨୦ ବର୍ଷ) ର ବୃଦ୍ଧି ମଧ୍ୟ ବହୁତ ସ୍ଥାନରେ ଦେଖାଯାଏ । ତେଣୁ ଏମାନଙ୍କର ଲଗ୍ନଦଶା ମଧ୍ୟ ଶେଷ ଭାଗରେ ଭୋଗ ହୁଏ, ଯବନେଶ୍ବରଙ୍କର ଏହିମତ ।

ଗ୍ରହଦତ୍ତ ଆୟୁ ବୃଦ୍ଧିର ଯେଉଁସବୁ ନିୟମ ଦିଆଯାଇଅଛି ସେ ସମସ୍ତ ନିୟମ ଲଗାଇ ଏହି ବର୍ଷମାନଙ୍କୁ ମଧ୍ୟ ବୃଦ୍ଧି କରାଯାଇ ପାରେ ।୯।

## ଦଶାରମ୍ଭ କାଳରେ ଲଗ୍ନସ୍ଥିତ ହେତୁକ ଶୁଭାଶୁଭ ଫଳ

ପାକସ୍ବାମିନି ଲଗ୍ନଗେ ସୁହୃଦି ବା ବର୍ଗସ୍ୟ ସୌମ୍ୟେଽପିବା
ପ୍ରାରବ୍ଧା ଶୁଭଦା ଦଶା ତ୍ରିଦଶଷଡ୍‌ଲାଭେଷୁ ବା ପାକପେ ।
ମିତ୍ରୋଚ୍ଚୋପଚୟତ୍ରିକୋଣମଦନେପାକେଶ୍ବରସ୍ୟ ସ୍ଥିତ-
ଶ୍ଚନ୍ଦ୍ରଃ ସତ୍‌ଫଳବୋଧନାନି କୁରୁତେ ପାପାନି ଚୃତୋଽନ୍ୟଥା ।୧୦।

ଦଶାଗ୍ରହ ଆରମ୍ଭ ବେଳେ ସେ ଗ୍ରହ ତାତ୍କାଳିକ ଲଗ୍ନରେ ଥିଲେ, ଅଥବା ଦଶାର ମିତ୍ରଗ୍ରହ ଲଗ୍ନରେ ଥିଲେ, ଦଶାର ବର୍ଗ ବା ତାହାର ମିତ୍ରଗ୍ରହର ବର୍ଗରେ ଲଗ୍ନ ହୋଇଥିଲେ, ଶୁଭଗ୍ରହ ଲଗ୍ନରେ ଥିଲେ ବା ଶୁଭ ଗ୍ରହର ବର୍ଗରେ ଲଗ୍ନ ଥିଲେ ଅଥବା ଦଶାଗ୍ରହ ଲଗ୍ନ, ତୃତୀୟ, ଷଷ୍ଠ, ଦଶମ ବା ଏକାଦଶରେ ଥିଲେ ଏଦଶା ଶୁଭଫଳ ଦିଏ । ଦଶା ଆରମ୍ଭ ବେଳେ ଚନ୍ଦ୍ର ଦଶାଗ୍ରହର ମିତ୍ରରାଶି, ନିଜରାଶିରେ ଥିଲେ ବା ଦଶାଗ୍ରହ ତୃତୀୟ, ଷଷ୍ଠ, ଦଶମ ବା ଏକାଦଶରେ ଥିଲେ, ନବମ ବା ପଞ୍ଚମରେ ଥିଲେ କିମ୍ବା ସପ୍ତମରେ ଥିଲେ ମଧ୍ୟ ଶୁଭଫଳ ଦିଏ ।୧୦।

ପ୍ରାରବ୍ଧା ହିମଗୌ ଦଶା ସ୍ବଗୃହଗେ ମାନାର୍ଥସୌଖ୍ୟାବହା
କୌଜେ୍ଜ ବୃଷଯୁଂତସ୍ତ୍ରିୟଂ ବୁଧଗୃହେ ବିଦ୍ୟାସୁହୃଦ୍‌ବିତ୍ତଦା ।
ଦୁର୍ଗାରଣ୍ୟପଥାଳୟେ କୃଷିକରୀ ସିଂହେ ସିତର୍କ୍ଷେଽନ୍ନଦା
କୁସ୍ତ୍ରୀଦା ମୃଗକୁମ୍ଭୟୋର୍ଗୁରୁଗୃହେ ମାନାର୍ଥସୌଖ୍ୟାବହା ।୧୧।

ଦଶା ଆରମ୍ଭବେଳେ ଚନ୍ଦ୍ର କର୍କଟ ରାଶିରେ ଥିଲେ ଏହି ଦଶା ସମ୍ମାନ, ଧନ ଓ ସୁଖ ପ୍ରଦାନ କରେ । ମେଷ ବା ବୃଶ୍ଚିକରେ ଚନ୍ଦ୍ର ଥିଲେ ଏଦଶା ସ୍ତ୍ରୀ ପକ୍ଷେ କଷ୍ଟ ଓ ଅପବାଦ ଦିଏ ।

ଚନ୍ଦ୍ର ମିଥୁନ ବା କନ୍ୟାରେ ଥିଲେ ବିଦ୍ୟା, ମିତ୍ର ଓ ଧନ ପ୍ରଦାନ କରେ ।

ସିଂହରେ ଚନ୍ଦ୍ର ଥିଲେ ଦୁର୍ଗ (ବିଷମସ୍ଥାନ) ଅରଣ୍ୟ ମାର୍ଗ ତଥା ଗୃହ ନିକଟରେ କୃଷିକରାଇ ଥାଏ । ବୃଷ ବା ତୁଳାରେ ଚନ୍ଦ୍ର ଥିଲେ ମିଷ୍ଟ ଭୋଜନ ପ୍ରାପ୍ତି ଘଟେ ।

ମକର ବା କୁମ୍ଭରେ ଚନ୍ଦ୍ର ଥିଲେ କୁତ୍ସିତ ସ୍ତ୍ରୀ ଲାଭ କରାଏ ।

ଧନୁ ବା ମୀନରେ ଚନ୍ଦ୍ର ଥିଲେ ସମ୍ମାନ, ଧନ ଓ ସୁଖ ଲାଭ କରାଇ ଥାଏ ।

ଦଶାନ୍ତର୍ଦ୍ଦଶା ଆରମ୍ଭରେ ଚନ୍ଦ୍ର କେଉଁ ରାଶିରେ ଥିଲେ କିଫଳ ଘଟେ ତାହା ଲେଖାଗଲା ।୧୧।

### ରବିଦଶାର ଶୁଭାଶୁଭ ଫଳ

ସୌର୍ଯ୍ୟାଂ ସ୍ୱଂ ନଖଦନ୍ତଚର୍ମକନକକୌର୍ଯ୍ୟାଧ୍ୱଭୂପାହବୈ-
ସ୍ତୈକ୍ଷ୍ଣ୍ୟଂଧୈର୍ଯ୍ୟମଜସ୍ରମୁଦ୍ୟମରତଃ ଖ୍ୟାତଃ ପ୍ରତାପୋନ୍ନତଃ ।
ଭାର୍ଯ୍ୟାପୁତ୍ରଧନାରିଶସ୍ତ୍ରହୁତଭୁଗ୍‌ଭୂପୋଦ୍ଭବାବ୍ୟାପଦ-
ସ୍ତ୍ୟାଗୀପାପରତଃ ସ୍ୱଭୃତ୍ୟକଲହୋ ହୃତ୍‌କୋଡପୀଡ଼ାମୟୀଃ ।୧୨।

ଶୁଭସ୍ଥାନସ୍ଥିତ ରବିଦଶା ଭୋଗ କାଳରେ ନଖ (ସୁଗନ୍ଧ ଦ୍ରବ୍ୟ ବା ବ୍ୟାଘ୍ର ନଖାଦି) ଦନ୍ତ (ହସ୍ତୀଦନ୍ତାଦି) ଚର୍ମ (ମୃଗ, ବ୍ୟାଘ୍ରାଦିର) ସୁବର୍ଣ୍ଣ, କ୍ରୂରକର୍ମ, ମାର୍ଗରୁ (ମାର୍ଗରକ୍ଷାଦି ବିଭାଗରୁ) ରାଜାଠାରୁ ଓ ଯୁଦ୍ଧାଦିରୁ ଧନ ଲାଭ ଘଟିଥାଏ । କଠୋରତା, ଧୈର୍ଯ୍ୟ, ଉଦ୍ଯୋଗରେ ପ୍ରୀତି, କୀର୍ତ୍ତି ତଥା ପ୍ରତାପର ଅଭିବୃଦ୍ଧି ଘଟେ ।

ଅଶୁଭ ସ୍ଥାନଗତ ରବି ତାହାର ଭୋଗ କାଳରେ ସ୍ତ୍ରୀ, ପୁତ୍ର, ଧନରେ ହାନି, ଶତ୍ରୁ ତଥା ଶସ୍ତ୍ର ହେତୁ ବିପତ୍ତି, ରାଜା ଓ ଅଗ୍ନି ହେତୁକ କ୍ଷତି ଘଟିଥାଏ । ବହୁବ୍ୟୟ, ପାପକାର୍ଯ୍ୟରେ ଶ୍ରଦ୍ଧା, ଭୃତ୍ୟସହ ବିରୋଧ, ହୃଦୟ ଓ ଉଦରରେ ପୀଡ଼ା ଘଟେ ।୧୨।

## ଚନ୍ଦ୍ରଦଶାର ଶୁଭାଶୁଭ ଫଳ

ଇନ୍ଦୋଃ ପ୍ରାପ୍ୟ ଦଶାଂ ଫଲାନି ଲଭତେ ମନ୍ତ୍ରଦ୍ୱିଜୋତ୍ଥାନ୍ୟଭବା-
ନ୍ୟିକ୍ଷୁକ୍ଷୀରବିକାରବସ୍ତ୍ରକୁସୁମକ୍ରୀଡ଼ାତିଲାନ୍ନଶ୍ରମୈଃ।
ନିଦ୍ରାଲସ୍ୟମୃଦୁଦ୍ୱିଜାମରରତଃ ସ୍ତ୍ରୀଜନ୍ମମେଧାବିତା
କୀର୍ତ୍ତ୍ୟର୍ଥୋପଚୟକ୍ଷୟୌ ଚ ବଲିଭିର୍ବୈରଂ ସ୍ୱପକ୍ଷେଣ ଚ ।୧୩।

ଚନ୍ଦ୍ର ଦଶା ଭୋଗ କାଳରେ (ଚନ୍ଦ୍ର ଶୁଭଫଳପ୍ରଦ ହୋଇଥିଲେ) ମନ୍ତ୍ର ଦ୍ୱାରା, ବ୍ରାହ୍ମଣ ହେତୁ, ଇକ୍ଷୁରସ (ଗୁଡ଼, ଚିନି, ନବାତ, ଖଣ୍ଡ) ତଥା ଦୁଗ୍ଧ, ଦଧି, ଘୃତାଦିର ବସ୍ତୁ ବିକ୍ରୟରୁ, ବସ୍ତ୍ର, ପୁଷ୍ପ (ସୁଗନ୍ଧି ଦ୍ରବ୍ୟ) ତଥା ଜୁଆଖେଳରୁ, ତିଳ, ଅନ୍ନାଦି ବ୍ୟବସାୟରୁ ବା ନିଜର ଶ୍ରମହେତୁରୁ ଧନ ମିଳେ ।

ଏହି ଚନ୍ଦ୍ର ଦୁର୍ବଳ (ଅଶୁଭପ୍ରଦ) ହୋଇଥିଲେ ତାହାର ଦଶାରେ ନିଦ୍ରା, ଆଳସ୍ୟର ବୃଦ୍ଧି ଘଟେ । ମୃଦୁତା, ଦ୍ୱିଜ, ବ୍ରାହ୍ମଣଠାରେ ଶ୍ରଦ୍ଧା, କନ୍ୟା-ଜନ୍ମ, ବୁଦ୍ଧିର ପ୍ରଖରତା, କୀର୍ତ୍ତି ତଥା ଧନର ପ୍ରଥମେ ବୃଦ୍ଧି ପରେ କ୍ଷୟ, ବଳିଷ୍ଠ ଲୋକର ତଥା ନିଜର ଲୋକ ସହିତ ଶତ୍ରୁତା ଘଟିଥାଏ ।୧୩।

## ମଙ୍ଗଳ ଦଶାର ଶୁଭାଶୁଭ ଫଳ

ଭୌମସ୍ୟାରିବିମର୍ଦ୍ଦଭୂପସହଜକ୍ଷିତ୍ୟାବିକାଜୈର୍ଧନଂ
ପ୍ରଦ୍ୱେଷଃ ସୁତମିତ୍ରଦାରସହଜୈର୍ବିଦ୍ୱଦ୍ଗୁରୁଦ୍ୱେଷ୍ଟୃତା ।
ତୃଷ୍ଣାସୃଗ୍‌ଜ୍ୱରପିତ୍ତଭଙ୍ଗଜନିତା ରୋଗାଃପରସ୍ତ୍ରୀକୃତାଃ
ପ୍ରୀତିଃ ପାପରତୈରଧର୍ମନିରତଃ ପାରୁଷ୍ୟତୈକ୍ଷ୍ଣ୍ୟାନି ଚ ।୧୪।

ଶୁଭସ୍ଥାନସ୍ଥିତ ମଙ୍ଗଳଦଶା ଶତ୍ରୁକୁ ପରାସ୍ତ କରାଏ । ରାଜା, ସହୋଦର ଭୂମି ହେତୁକ ଲାଭ ହୁଏ । ମେଷାଦି ଜୀବ ପୋଷଣ ବା ବ୍ୟବହାରରୁ ବା ସେମାନଙ୍କ ଠାରୁ ଜାତ ଦ୍ରବ୍ୟାଦିର ବ୍ୟବସାୟରୁ ଧନମିଳେ । ଅଶୁଭ ସ୍ଥାନସ୍ଥିତ ମଙ୍ଗଳ ଦଶାରେ ପୁତ୍ର, ମିତ୍ର, ସ୍ତ୍ରୀ, ଭ୍ରାତାମାନଙ୍କ ସହିତ ବିରୋଧ ଘଟେ । ପଣ୍ଡିତ ତଥା ଗୁରୁ ବର୍ଗରେ ଭକ୍ତିହୀନ ଭାବ ଜାତ ହୁଏ । ତୃଷ୍ଣା, ରକ୍ତ ଦୁଷ୍ଟି (ରକ୍ତ ବିକାର) ଜ୍ୱର, ପିତ୍ତବୃଦ୍ଧି, ଅଙ୍ଗଭଙ୍ଗ ପ୍ରଭୃତି ରୋଗରେ କଷ୍ଟ ମିଳେ । ପରସ୍ତ୍ରୀଠାରେ ସ୍ନେହ, ପାପୀମାନଙ୍କ ସହ ମିତ୍ରତା, ଅଧର୍ମ ମାର୍ଗରେ ଗତି, କର୍କଶ-ବଚନର ପ୍ରୟୋଗ ଓ ସ୍ୱଭାବ କଠୋର କରାଇ ଦିଏ ।୧୪।

## ବୁଧଦଶାର ଶୁଭାଶୁଭ ଫଳ

ବୌଧ୍ୟାଂଦୌତ୍ୟସୁହୃଦ୍ଗୁରୁଦ୍ୱିଜଧନଂ ବିଦ୍ୱତ୍ପ୍ରଶଂସାଯଶୋ
ଯୁକ୍ତିଦ୍ରବ୍ୟସୁବର୍ଣ୍ଣବେସରମହୀ ସୌଭାଗ୍ୟସୌଖ୍ୟାପ୍ତୟଃ
ହାସ୍ୟୋପାସନକୌଶଳଂ ମତିଚୟୋ ଧର୍ମକ୍ରିୟାସିଦ୍ଧୟଃ
ପାରୁଷ୍ୟଂ ଶ୍ରମବନ୍ଧମାନସଶୁଚଃ ପୀଡ଼ା ଚ ଧାତ୍ରୁନସ୍ୟାତ୍ର ।୧୫।

ଶୁଭସ୍ଥାନସ୍ଥିତ ବୁଧ ତାହାର ଦଶାଭୋଗ କାଳରେ ଦୂତକାର୍ଯ୍ୟ (ପ୍ରତ୍ୟେକ ଦେଶ ପକ୍ଷରୁ ପ୍ରତ୍ୟେକ ମିତ୍ରରାଜ୍ୟରେ 'ଦୂତ' ନିଯୁକ୍ତ କରାଯିବା ଚିରାଚରିତ ପ୍ରଥା । ଏହି ଦୂତମାନଙ୍କୁ ଇଂରାଜରେ Ambassador କହନ୍ତି । ) ରୁ, ମିତ୍ରଠାରୁ ଗୁରୁଜନ ତଥା ବ୍ରାହ୍ମଣଙ୍କଠାରୁ ବା ଏମାନଙ୍କ ସାହାଯ୍ୟ ବଳରୁ ଧନ ମିଳେ । ପଣ୍ଡିତମାନଙ୍କଠାରୁ ପ୍ରଶଂସା ମିଳେ ଓ ଯଶବୃଦ୍ଧି ହୁଏ । କଂସା, ପିତ୍ତଳ, ସୁନା ଇତ୍ୟାଦି ଧାତୁର ବ୍ୟବସାୟ ବା ଏହି ଏହି ଧାତୁ ଦ୍ରବ୍ୟ ଲାଭ, ଘୋଡ଼ା, ଭୂମି ଓ ସୌଖ୍ୟ ପ୍ରାପ୍ତି ହୁଏ । ହାସ୍ୟରସ ଯୁକ୍ତ, ଉପାସନାରେ କୁଶଳ (ଏଠାରେ ଉପାସନା ଅର୍ଥରେ 'ସେବା' ଧର୍ମକୁ ମଧ୍ୟ ବୁଝିବେ ଯଥା ଦେଶର ସେବା, ଦରିଦ୍ରର ସେବା ଓ ନିଜର ମାଲିକର ସେବା କରି ମନ ରଞ୍ଜାଇବା) ବୁଦ୍ଧିର ବୃଦ୍ଧି ଏବଂ ଧର୍ମକାର୍ଯ୍ୟରେ ସିଦ୍ଧିଲାଭ ଘଟାଏ ।

ଅଶୁଭ ସ୍ଥାନସ୍ଥିତ ବୁଧଦଶା କଠୋର ବଚନ, ପରିଶ୍ରମ, ବନ୍ଧନଯୁକ୍ତ ମାନସିକ ଦୁଃଖ, କଫ, ବାତ, ପିତ୍ତ, ତ୍ରିଦୋଷ ହେତୁକ ବୃଦ୍ଧି ରୋଗ ଜାତ କରାଇ ଥାଏ ।୧୫।

## ବୃହସ୍ପତି ଦଶାର ଶୁଭାଶୁଭ ଫଳ

ଜୈବ୍ୟାଂ ମାନଗୁଣୋଦୟୋ ମତିଚୟଃ କାନ୍ତିପ୍ରତାପୋନ୍ନତି
ର୍ମାହାତ୍ମ୍ୟୋଦ୍ୟମମନ୍ତ୍ରନୀତିନୃପତିସ୍ୱାଧ୍ୟାୟମନ୍ତ୍ରୈର୍ଧନମ୍ ।
ହେମାଶ୍ୱାତ୍ମଜକୁଞ୍ଜରାମ୍ବରଚୟଃ ପ୍ରୀତିଶ୍ଚ ସଦ୍ଭୂମିପୈଃ
ସୂକ୍ଷ୍ମୋହାଗହନାଶ୍ରମଃ ଶ୍ରବଣରୁଗ୍ବୈରଂବିଧର୍ମାଶ୍ରିତୈଃ ।୧୬।

ଶୁଭସ୍ଥାନସ୍ଥିତ ବୃହସ୍ପତି ଦଶା ସମ୍ମାନ, ଗୁଣର ବୃଦ୍ଧି, ବୁଦ୍ଧିର ବୃଦ୍ଧି, ସୁନ୍ଦରକାନ୍ତି, ପରାକ୍ରମରେ ଉନ୍ନତି, ମାହାତ୍ମ୍ୟ (ପରୋପକାରାଦି ଭାବ) ତଥା ଉଦ୍ୟୋଗସିଦ୍ଧି, ମନ୍ତ୍ର (ଉପାସନା ତଥା ମନ୍ତ୍ରଣା ବିଚାର)ରେ ପାରଙ୍ଗମ, ନୀତି ହେତୁ, ରାଜାଠାରୁ ଓ ସ୍ୱାଧ୍ୟାୟରୁ (ପାଠାଦିରୁ) ଧନ ପ୍ରାପ୍ତି କରାଇ ଥାଏ ।

ସୁବର୍ଣ୍ଣ, ଅଶ୍ୱ, ହସ୍ତୀ, ଘୋଡ଼ା, ବସ୍ତ୍ର ଲାଭ କରାଏ ବା ଏ ସମସ୍ତର କ୍ରୟ ବିକ୍ରୟାଦିରୁ ଧନ ଲାଭ ହୁଏ, ପୁତ୍ରଲାଭ ହୁଏ, ଉତ୍ତମ ରାଜାସହ ପ୍ରୀତି ସ୍ଥାପନ କରାଏ ।

ଅଶୁଭ ସ୍ଥାନସ୍ଥିତ ଗୁରୁଦଶା ସୂକ୍ଷ୍ମବସ୍ତୁ ବା ବିଷଯୁକ୍ତ ଶରୀରରେ ପରିଶ୍ରମ କରାଇବା, କର୍ଣ୍ଣରୋଗ ଜାତ ହେବା ଓ ଗ୍ରାମୀମାନଙ୍କ ସହ (ବିଧର୍ମୀଙ୍କ ସହବାସ) ପ୍ରୀତି ରଖାଏ ।୧୬।

## ଶୁକ୍ରଦଶାର ଶୁଭାଶୁଭ ଫଳ

ଶୌକ୍ର୍ୟାଂ ଗୀତରତିପ୍ରମୋଦସୁରଭିଦ୍ରବ୍ୟାନ୍ନପାନାମ୍ବର-
ସ୍ତ୍ରୀରତ୍ନଦ୍ୟୁତିମନ୍ମଥୋପକରଣଜ୍ଞାନେଷ୍ଟମିତ୍ରାଗମାଃ
କୌଶଲ୍ୟଂ କ୍ରୟବିକ୍ରୟେ କୃଷିନିଧିପ୍ରାପ୍ତିର୍ଧନସ୍ୟାଗମୋ
ବୃନ୍ଦୋର୍ବୀଶନିଷାଦଧର୍ମରହିତୈର୍ବୈରଂ ଶୁଚଃ ସ୍ନେହତଃ ।୧୭।

ଶୁଭସ୍ଥାନ ସ୍ଥିତ ଶୁକ୍ରଦଶା ଗୀତାଦିରେ ଆସକ୍ତି, ଆନନ୍ଦ ଲାଭ, ସୁଗନ୍ଧି ଦ୍ରବ୍ୟରେ ଅଭିଳାଷ, ଉତ୍ତମ ଭୋଜନ, ପାନ ତଥା ଉତ୍ତମ ସ୍ତ୍ରୀ, ଉତ୍ତମ ବସ୍ତ୍ର ଲାଭ କରାଏ । ରତ୍ନ ମିଳେ, କାନ୍ତିବୃଦ୍ଧି, ବିଳାସ ଦ୍ରବ୍ୟ ଲାଭ, ଜ୍ଞାନବୃଦ୍ଧି ଓ ମିତ୍ର ଲାଭ ଘଟେ ।

କ୍ରୟ ବିକ୍ରୟରେ କୁଶଳତା, କୃଷି କର୍ମରୁ ବହୁଧନ ଲାଭ ହୁଏ, ପୋତା-ଧନ ମିଳେ ।

ଅଶୁଭସ୍ଥାନସ୍ଥିତ ଶୁକ୍ରଦଶା ଜନସମାଜ, ରାଜା ତଥା ନିଷାଦ ( ବ୍ୟାଧ, ଧୀବର ପ୍ରଭୃତି ଅଶିକ୍ଷିତ ହୀନ ବ୍ୟକ୍ତି ) ଓ ଧର୍ମହୀନ ବ୍ୟକ୍ତିମାନଙ୍କ ସହ ଶତ୍ରୁତା, କ୍ଷମ୍ନହୀ ତଥା ନିଜର ବ୍ୟକ୍ତିମାନଙ୍କ ହେତୁ ଶୋକ ପ୍ରାପ୍ତି ଘଟେ ।

## ଶନିଦଶାର ଶୁଭାଶୁଭ ଫଳ

ସୌରଂ ପ୍ରାପ୍ୟ ଖରୋଷ୍ଟ୍ରପକ୍ଷିମହିଷୀ ବୃଦ୍ଧାଙ୍ଗନାବାପ୍ତୟଃ
ଶ୍ରେଣୀଗ୍ରାମପୁରାଧିକାରଜନିତା ପୂଜା କୁଧାନ୍ୟାଗମଃ ।
ଶ୍ଳେଷ୍ମେର୍ଷ୍ୟାନିଲକୋପମୋହମଲିନବ୍ୟାପତ୍ତିତନ୍ଦ୍ରାଶ୍ରମାନ୍
ଭୃତ୍ୟାପତ୍ୟକଳତ୍ରଭର୍ତ୍ସନମପି ପ୍ରାପ୍ନୋତି ଚ ବ୍ୟଙ୍ଗତାମ୍ ।୧୮।

ଶୁଭସ୍ଥାନ ସ୍ଥିତ ଶନିଦଶାରେ ଗର୍ଦ୍ଦଭ, ଓଟ, ପକ୍ଷୀ ମହିଷାଦି ଜୀବଲାଭ ବା ଏମାନଙ୍କ ବ୍ୟବସାୟ ହେତୁକ ଲାଭହୁଏ । ବୃଦ୍ଧା ସ୍ତ୍ରୀ ସହ ସଙ୍ଗମ ପ୍ରାପ୍ତି ଘଟେ ।

ଗ୍ରାମ ତଥା ନଗରର ଅଧିକାର ହେତୁକ ସମ୍ମାନ, କୁତ୍ସିତ ଶସ୍ୟାଦ (ବା ନ୍ୟୂନସ୍ତରର ଭୋଜନ) ଲାଭହୁଏ ।

ଅଶୁଭ ସ୍ଥାନସ୍ଥିତ ଶନିଦଶାରେ କଫବୃଦ୍ଧି, ଈର୍ଷ୍ୟାଜନିତ ଅଶାନ୍ତି, ବାତରୋଗ, ମୂର୍ଚ୍ଛାରୋଗ, ମଳିନତା, ବିପତ୍ତି, ତନ୍ଦ୍ରା, ଶ୍ରମବୃଦ୍ଧି, ଭୃତ୍ୟ, ସନ୍ତାନ ଓ ସ୍ତ୍ରୀ ହେତୁକ ଅନାଦର ଭାବ ଏବଂ ପତନାଦି ହେତୁ ଅଙ୍ଗଭଙ୍ଗ ଘଟେ ।୧୮।

### ଦଶାର ଶୁଭାଶୁଭ ଫଳ ଦାନ ସମୟ ନିର୍ଣ୍ଣୟ

ଦଶାସୁ ଶସ୍ତାସୁ ଶୁଭାନିକୁର୍ବନ୍ତ୍ୟନିଷ୍ଟସଂଜ୍ଞାସ୍ୱଶୁଭାନି ଚୈବମ୍ ।
ମିଶ୍ରାସୁ ମିଶ୍ରାଣି ଦଶାଫଳାନି ହୋରାଫଲଂ ଲଗ୍ନପତେଃସମାନମ୍ ।୧୯।

ଦଶା ଗୁଡ଼ିକ ଶୁଭରେ ଶୁଭ ଓ ଅଶୁଭରେ ଅଶୁଭ କରିବା କଥା କୁହା-ଯାଇଅଛି । ସେମାନେ କେତେକ ବିଷୟରେ ଶୁଭ ଓ ଅନ୍ୟ କେତେକ ବିଷୟରେ ଅଶୁଭତ୍ୱ ପ୍ରାପ୍ତ ହୋଇଥିଲେ ମିଶ୍ରିତ ଫଳ ଅର୍ଥାତ୍ କେତେକାଂଶରେ ଶୁଭଫଳ ଓ କେତେକାଂଶରେ ଅଶୁଭ ଫଳ ଦିଅନ୍ତି ।

ଏହାପରେ ଲଗ୍ନାଧିପତିର ସ୍ଥିତି ବଶରୁ ଲଗ୍ନଦଶାର ଶୁଭାଶୁଭ ଫଳ କହିବେ । ଲଗ୍ନେଶ ଶୁଭସ୍ଥାନରେ ଥିଲେ ଶୁଭଫଳ, ଅଶୁଭସ୍ଥାନରେ ଥିଲେ ଅଶୁଭଫଳ ଏବଂ ମିଶ୍ରିତ ସ୍ଥାନରେ ଥିଲେ ମିଶ୍ରିତଫଳ ଲଗ୍ନଦଶା ମଧ୍ୟ ଦେଇଥାଏ ।୧୯।

ସଂଜ୍ଞାଧ୍ୟାୟେ ଯସ୍ୟ ଯଦ୍ଦ୍ରବ୍ୟମୁକ୍ତଂ କର୍ମାଜୀବୋ ଯଶ୍ଚ ଯତସ୍ୟାପଦିଷ୍ଟଃ
ଭାବସ୍ଥାନାଲୋକଯୋଗୋଦ୍ଭବଂ ଚ ତତ୍ସର୍ବଂ ତସ୍ୟ ଯୋଜ୍ୟଂ ଦଶାୟାମ୍ ।୨୦।

ସଂଜ୍ଞାଧ୍ୟାୟରେ ଯେଉଁଗ୍ରହର ଯେଉଁ ଦ୍ରବ୍ୟ ବୋଲି ଉକ୍ତଅଛି କର୍ମାଜୀବ ଅଧ୍ୟାୟରେ ଯେ ଗ୍ରହ ଯେଉଁ ବୃତ୍ତିର କାରକ ବୋଲି ଲେଖାଯିବ ତାହାର ବର୍ଗର ସହିତ ଭାବ, ସ୍ଥାନ, ଯୁକ୍ତ, ସମ୍ବନ୍ଧ, ଦୃଷ୍ଟି ହେତୁକ ଉତ୍ପନ୍ନ ଫଳାଫଳ ମିଶ୍ରିତ କରି—ଶୁଭହେଲେ ସେହି ଦ୍ରବ୍ୟ ଲାଭ, ସେହି ଦ୍ରବ୍ୟମାନଙ୍କ ବ୍ୟବସାୟ ଲାଭ, ତଜ୍ଜାତୀୟ ବ୍ୟକ୍ତି ହେତୁକ ଲାଭ, ସେହି ଗ୍ରହର ଦିଗରୁ, ତାହାର ବୃତ୍ତିରୁ ଲାଭ ତଥା କହିବେ, ଗ୍ରହ ଅଶୁଭ ହୋଇଥିଲେ ସେହି ସମସ୍ତରୁ କ୍ଷତି କଥା କହିବେ ।

### ଦଶା ଜଣାନଥିଲେ ଜାଣିବା ଉପାୟ

ଛାୟାଂ ମହାଭୂତକୃତାଂ ଚ ସର୍ବେଽଭିବ୍ୟଞ୍ଜୟନ୍ତି ସ୍ୱଦଶାମବାପ୍ୟ
କ୍ଷ୍ମାଗ୍ନିବାଦ୍ୟମ୍ବରଜାନ୍ ଗୁଣାଂଶ୍ଚ ନାସାସ୍ୟଦୃକ୍ତ୍ୱକ୍ଶ୍ରୁତିରନୁମେୟାନ୍ ।୨୧।

ଯେଉଁ ବ୍ୟକ୍ତିର ଜନ୍ମଦଶା ଜଣାଯାଏ ନାହିଁ ସେହି ବ୍ୟକ୍ତିର କାନ୍ତି ଦେଖିକରି ଦଶା ଜାଣିବା ଉପାୟ କୁହା ଯାଉଅଛି । ସମସ୍ତ ଗ୍ରହ ସେମାନଙ୍କର ଦଶାରେ ତାଙ୍କଠାରେ ପ୍ରଯୋଜ୍ୟହେବା ରୂପ, କାନ୍ତିଆଦି ଜାତକ ଠାରେ ପ୍ରକାଶ ପାଏ । ନାସା, ମୁଖ, ଦୃଷ୍ଟି, ଚର୍ମ, କର୍ଣ୍ଣରେ, ଯଥାକ୍ରମେ ପୃଥ୍ୱୀତତ୍ତ୍ୱ, ଜଳତତ୍ତ୍ୱ, ଅଗ୍ନିତତ୍ତ୍ୱ, ବାୟୁତତ୍ତ୍ୱ ଓ ଆକାଶତତ୍ତ୍ୱ ପ୍ରକାଶପାଏ ।

ପୃଥିବୀତତ୍ତ୍ୱର ଗୁଣ "ଗନ୍ଧ" ତାହା ନାସାରେ ପ୍ରକଟିତ ହୁଏ । ଜଳ-ତତ୍ତ୍ୱର ଗୁଣ "ରସ" ଏହା ଜିହ୍ୱାରେ ପ୍ରକଟ ହୁଏ । ଅଗ୍ନିତତ୍ତ୍ୱର ଗୁଣ "ରୂପ" ଏହା ଦୃଷ୍ଟିରେ ପ୍ରକଟିତ ହୁଏ । ବାୟୁତତ୍ତ୍ୱର ଗୁଣ 'ସ୍ପର୍ଶ' ଏହା ଚର୍ମରେ ପ୍ରକଟିତ ହୋଇ ଥାଏ । ଆକାଶତତ୍ତ୍ୱର ଗୁଣ "ଶବ୍ଦ" ଏହା କର୍ଣ୍ଣରେ ପ୍ରକଟହୁଏ ।

ରବି ଓ ମଙ୍ଗଳ ଅଗ୍ନିତତ୍ତ୍ୱ, ବୁଧ ଭୂମିତତ୍ତ୍ୱ, ବୃହସ୍ପତି ଆକାଶତତ୍ତ୍ୱ, ଶୁକ୍ର ଓ ଚନ୍ଦ୍ର ଜଳତତ୍ତ୍ୱ, ଶନି ବାୟୁତତ୍ତ୍ୱର ଅଧିକାରୀ ଅଟନ୍ତି ।

ଅଗ୍ନିକାନ୍ତି ରୂପରେ, ଭୂମିର କାନ୍ତି ଗନ୍ଧରେ, ଆକାଶର କାନ୍ତି ଶବ୍ଦରେ, ଜଳର କାନ୍ତି ରସରେ ଓ ବାୟୁର କାନ୍ତି ସ୍ପର୍ଶରେ ପ୍ରକାଶିତ ହୁଏ ।

ଏହାର ଭାବ ଏହି ଯେ ରବି ଓ ମଙ୍ଗଳ ଯଦି ଶୁଭସ୍ଥାନରେ ଥାଆନ୍ତି ତେବେ ସେମାନଙ୍କର ଦଶାନ୍ତର୍ଦଶାରେ ଲୋକ କାନ୍ତିମାନ୍ ହୁଏ ଓ ତଦ୍ରୂପ ବ୍ୟକ୍ତିମାନଙ୍କ ସହ ସଂପର୍କ ସ୍ଥାପନ କରେ । ଅଶୁଭ ହେଲେ ସ୍ୱୟଂ କାନ୍ତିହୀନ ହୁଏ ଓ ସେହିଭଳି କୁତ୍ସିତ ବ୍ୟକ୍ତିଙ୍କ ସହ ସମ୍ମିଳିତ ହୁଏ ।

ଶୁଭସ୍ଥାନରେ ଥିବା ବୁଧଦଶା ଶରୀରରେ ସୁଗନ୍ଧ ଜାତକରାଏ ଓ ସୁଗନ୍ଧ-ଦ୍ରବ୍ୟ ପ୍ରାପ୍ତି କରାଏ । ଅଶୁଭ ଫଳରେ ଶରୀରରେ ଦୁର୍ଗନ୍ଧ ଜାତହୁଏ ଓ ଦୁର୍ଗନ୍ଧ ଦ୍ରବ୍ୟ ମିଳେ ।

ଶୁଭସ୍ଥାନ ସ୍ଥିତ ଗୁରୁଦଶା ମଧୁରବାକ୍ୟ ବିନ୍ୟାସ କରାଏ ଓ ଉତ୍ତମ ଗୀତ ତଥା ସମ୍ବାଦ ଶୁଣାଇ ଆନନ୍ଦିତ କରାଏ । ଶୁଭସ୍ଥାନସ୍ଥିତ ଚନ୍ଦ୍ରଦଶା ବହୁ ସ୍ୱାଦୁରସ ଭୋଜନ ଦାନ କରନ୍ତି । ଅଶୁଭରେ ଥିଲେ କୁତ୍ସିତ ଭୋଜନ ପ୍ରାପ୍ତି (ଖଟା, ଖର, ଲୁଣିଆ, କଷା) କରାଇ ଥାନ୍ତି ।

ଶୁଭସ୍ଥାନ ସ୍ଥିତ ଶନିଦଶା ଇଷ୍ଟ ତଥା ବନ୍ଧୁ ସଂସ୍ପର୍ଶ ସୁଖଦାଏ । ଅଶୁଭ ହେଲେ ମନ୍ଦତଥା କୁତ୍ସିତ ବ୍ୟକ୍ତିର ସଂସ୍ପର୍ଶ ଅପି ଦୁଃଖ ଜାତକରାଏ ।

ଦଶା ଜାଣିନଥିଲେ ଏହିଭଳି ସଂପର୍କ ଦେଖି ଦଶାସ୍ଥିର କରିବେ ।୨୧

ଶୁଭଫଲଦଦଶାୟାଂ ତାଦୃଗେବାନ୍ତରାତ୍ମା
ବହୁ ଜନୟତି ପୁଂସାଂ ସୌଖ୍ୟମର୍ଥାଗମଞ୍ଚ ।
କଥିତଫଲବିପାକୈସ୍ତର୍କୟେଦ୍‌ବର୍ତ୍ତମାନାଂ
ପରିଣମତି ଫଲୋକ୍ତିଃ ସ୍ୱପ୍ନଚିନ୍ତାସ୍ୱବାଚୈ୍ୟଃ ।୨୨।

ଶୁଭଫଲ ପ୍ରଦ ଦଶା ଅନ୍ତରାତ୍ମାକୁ ନିର୍ମଳ ତଥା ପ୍ରଫୁଲ୍ଲ ରଖେ ଓ ସୌଖ୍ୟ ତଥା ଅର୍ଥଲାଭ କରାଏ । ଅଶୁଭ ଫଳପ୍ରଦ ଦଶା ଅନ୍ତରାତ୍ମାକୁ କଳୁଷିତ କରାଏ ଓ ଦୁଃଖଦାଏ ।

ଶୁଭଫଳ ପ୍ରଦ ଦଶାରେ ସ୍ୱପ୍ନ ତଥା ଚିନ୍ତା ଉତ୍ତମ ଶୁଭପ୍ରଦ ଲକ୍ଷଣ ଯୁକ୍ତ ହୁଏ । ଅଶୁଭ ଫଳପ୍ରଦ ଦଶା ଅଶୁଭଜନକ ସ୍ୱପ୍ନ ଓ ହୀନଚିନ୍ତାରେ ନିବିଷ୍ଟ ରଖାଇଥାଏ ।୨୨।

ଏକଗ୍ରହସ୍ୟ ସଦୃଶେ ଫଲୟୋର୍ବିରୋଧେ
ନାଶଂବଦେଦ୍‌ଯଦଧିକଂ ପରିପଚ୍ୟତେ ତତ୍ ।
ନାନେ୍ୟାଗ୍ରହଃ ସଦୃଶମନ୍ୟଫଲଂ ହିନସ୍ତି
ସ୍ୱାଂ ସ୍ୱାଂଦଶାମୁପଗତାଃ ସ୍ୱଫଲପ୍ରଦାଃ ସ୍ୟୁଃ ।୨୩।

ଇତି ଶ୍ରୀ ବରାହମିହିର କୃତେବୃହଜ୍ଜାତକେ ଦଶାନ୍ତର୍ଦଶାଧ୍ୟାୟୋଷ୍ଟମଃ ॥

ଯେ କୌଣସି ଗ୍ରହର ଦେୟ ଶୁଭ ତଥା ଅଶୁଭ ଫଳ ସମାନ ହେଲେ ଏହାର ନାଶ ହୁଏ । ଅର୍ଥାତ୍ ତାହାର ଶୁଭଫଳ ବା ଅଶୁଭ ଫଳ କିଛି ପ୍ରକାଶ ପାଇନଥାଏ ।

ଶୁଭତଥା ଅଶୁଭବଳ ଯାହା ଅଧିକ ହେବ ଗ୍ରହ ତତ୍ତୁଲ୍ୟ ଫଳ ପ୍ରଦାନ କରିବ । ଶୁଭାଧିକ୍ୟରେ ଶୁଭ ଯେଉଁ ଯେଉଁ କାରଣରୁ ହେଲା ତାହାର ସମ୍ପର୍କରେ ଶୁଭଫଳ ଘଟିବ । ଅଶୁଭଫଳ ଯେଉଁ ଯେଉଁ କାରଣରୁ ହେଲା, ତାହାର କାରକତାକୁ ନେଇ ଅଶୁଭ ଫଳ ଘଟିବ ।

କୌଣସି ଗ୍ରହ ଶୁଭ ହେଉ ବା ଅଶୁଭ ହେଉ ସେ ଗ୍ରହ ଅନ୍ୟଗ୍ରହଙ୍କ ଶୁଭ ବା ଅଶୁଭ ଫଳ ବିନାଶ ନକରି ନିଜର ଫଳମାନ ଦଶାକାଳରେ ଦେଖାଇଥାଏ ।

ଗୋଟିଏ ଗ୍ରହ ଜାତକରେ ଧନପ୍ରଦ ଦେଖା ଯାଉଛି ଓ ଅପର ଗ୍ରହ ଧନ ହାନି କାରକ ଦେଖାଯାଉଛି । ଏ ଗ୍ରହମାନେ ଯେ ଯାହାର ଦଶାରେ ତଦନୁରୂପ ଫଳ ମାନ ଦେବେ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକର ଦଶାନ୍ତର୍ଦଶାଧ୍ୟାୟ ନାମକ
ଅଷ୍ଟମ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

# ଅଷ୍ଟକବର୍ଗାଧ୍ୟାୟୋନବମଃ

## ରବିର ଅଷ୍ଟକବର୍ଗ ବିଚାର

ସ୍ୱାଦର୍କଃ ପ୍ରଥମାୟବନ୍ଧୁ ନିଧନଦ୍ୱ୍ୟାଜ୍ଞାତପୋଦ୍ୟୂନଗୋ
ବକ୍ରାତ୍ସ୍ୱାଦିବ ତଦ୍ୱଦେବ ରବିଜାଚ୍ଛୁକ୍ରାତ୍ସ୍ମରାନ୍ତ୍ୟାରିଷୁ ।
ଜୀବାଦ୍ଧର୍ମସୁତାୟଶତ୍ରୁଷୁ ଦଶତ୍ର୍ୟାୟାରିଗଃ ଶୀତଗୋ-
ରେଷ୍ୱେବାନ୍ତ୍ୟତପଃ ସୁତେଷୁ ଚ ବୁଧାଲ୍ଲଗ୍ନାତ୍ସ୍ୱବନ୍ଧ୍ୱନ୍ତ୍ୟଗଃ ।୧।

ଜନ୍ମକାଳର ଗ୍ରହସ୍ଥିତି ଠାରୁ ଗୋଚରରେ ଗ୍ରହମାନେ କିପରି ସ୍ଥାନରେ ରହିଲେ ଶୁଭାଶୁଭ ଫଳପ୍ରଦ ହେବେ ତାହାର ନାମ ଅଷ୍ଟକବର୍ଗ ବିଚାର । ଅଷ୍ଟକବର୍ଗ କହିବା କାରଣ ଏହି ଯେ ରବି ଆଦି ସପ୍ତଗ୍ରହ ଓ ଲଗ୍ନ ମିଶି ସବୁ ଆଠ । ନିମ୍ନରେ ଗ୍ରହମାନଙ୍କଠାରୁ ଶୁଭସ୍ଥାନମାନଙ୍କର ଉଲ୍ଲେଖ ହେଲା । ମୂଳ ପ୍ରମାଣରେ ରବିଙ୍କଠାରୁ ଆରମ୍ଭ କରି କ୍ରମଶଃ ଚନ୍ଦ୍ରାଦି ଗ୍ରହମାନଙ୍କର ନିକହୁ ଓଲଟ ପାଲଟ ଭାବରେ କୁହାଯାଇଛି କିନ୍ତୁ ଅନୁବାଦରେ ଠିକ୍ କ୍ରମ ରଖାଯାଇଛି ।

| | | |
|---|---|---|
| ରବିଠାରୁ | ୧, ୧୧, ୪, ୮, ୨, ୧୦, ୯, ୭ | ସ୍ଥାନ ଶୁଭ । |
| ଚନ୍ଦ୍ରଠାରୁ | ୧୦, ୩, ୧୧, ୬ | " |
| ମଙ୍ଗଳଠାରୁ | ୧, ୧୧, ୪, ୮, ୨; ୧୦, ୯, ୭ | " |
| ବୁଧଠାରୁ | ୧୦, ୩, ୧୧, ୬, ୧୨, ୯, ୫ | " |
| ବୃହସ୍ପତିଠାରୁ | ୧, ୫, ୧୧, ୬ | ସ୍ଥାନ ଶୁଭ । |
| ଶୁକ୍ରଠାରୁ | ୭, ୧୨, ୬ | " |
| ଶନିଠାରୁ | ୧, ୧୧, ୪, ୮, ୨, ୧୦, ୯, ୭ | " |
| ଲଗ୍ନଠାରୁ | ୧୦, ୩, ୧୧, ୬, ୪, ୧୨ | " |

ଏ ସ୍ଥାନମାନଙ୍କ ଛଡ଼ା ଅନ୍ୟାନ୍ୟ ସ୍ଥାନ ଅଶୁଭ । ଯେପରି ରବିଠାରୁ ୧, ୧୧, ୪, ୮, ୨, ୧୦, ୯, ୭ ସ୍ଥାନ ଶୁଭ ଏବଂ ୩, ୫, ୬, ୧୨ ସ୍ଥାନଗୁଡ଼ିକ ଅଶୁଭ ଅଟେ ।୧।

## ଚନ୍ଦ୍ରର ଅଷ୍ଟକ ବର୍ଗ ବିଚାର

ଲଗ୍ନାତ୍ତ୍ରିଷଟ୍‌ଦଶାୟଗଃ ସ୍ୱଧନଧୀଧର୍ମେଷ୍ୱରୁଷ୍ଟଚ୍ଛଶୀ
ସ୍ୱାସ୍ତ୍ରାସ୍ତାଦଷ୍ଟ ସାଷ୍ଟସପ୍ତସୁ ରବେଃ ଷଟ୍‌ତ୍ର୍ୟାୟଧୀସ୍ଥୋ ଯମାତ୍ ।
ଧୀତ୍ର୍ୟାୟାଷ୍ଟମକଣ୍ଟକେଷୁ ଶଶିଜାଜ୍ଜୀବାଦ୍ୱ୍ୟୟାୟାଷ୍ଟଗଃ
କେନ୍ଦ୍ରସ୍ଥସ୍ତ ସିତାତ୍ତୁ ଧର୍ମସୁଖଧୀତ୍ର୍ୟାୟାସ୍ପଦାନଙ୍ଗଗଃ ।୨।

| | | | |
|---|---|---|---|
| ଚନ୍ଦ୍ରାଷ୍ଟକବର୍ଗରେ | ରବିଠାରୁ | ୬, ୩, ୧୦, ୧୧, ୮, ୭ | ସ୍ଥାନ ଶୁଭପ୍ରଦ |
| | ଚନ୍ଦ୍ରଠାରୁ | ୬, ୩, ୧୦, ୧୧, ୭, ୧ | ,, |
| | ମଙ୍ଗଳଠାରୁ | ୬, ୩, ୧୦, ୧୧, ୨, ୫, ୯ | ,, |
| | ବୁଧଠାରୁ | ୫, ୩, ୧୧, ୮, ୧, ୪, ୭, ୧୦ | ,, |
| | ବୃହସ୍ପତିଠାରୁ | ୧୨, ୧୧, ୮, ୨, ୪, ୭, ୧୦ | ,, |
| | ଶୁକ୍ରଠାରୁ | ୯, ୪, ୫, ୩, ୧୧, ୧୦, ୭ | ,, |
| | ଶନିଠାରୁ | ୬, ୩, ୧୧, ୫ | ,, |
| | ଲଗ୍ନଠାରୁ | ୬, ୩, ୧୦, ୧୧ | ,, |

ଯେଉଁ ଯେଉଁ ସ୍ଥାନ ଶୁଭ ବୋଲି ଉକ୍ତହେଲା ତାହାଛଡ଼ା ସବୁ ସ୍ଥାନ ଅଶୁଭ । ଯେପରିକି ରବିଠାରୁ ୬, ୩, ୧୦, ୧୧, ୮, ୭ ଶୁଭସ୍ଥାନ କିନ୍ତୁ ୧, ୨, ୪, ୫, ୯, ୧୨ ଅଶୁଭ ସ୍ଥାନ ଅଟେ ।୨।

## ମଙ୍ଗଳର ଅଷ୍ଟକବର୍ଗ ବିଚାର

ବକ୍ରସ୍ତୁପଚୟେଷ୍ୱିନାତ୍ସତନୟେଷ୍ୱାଦ୍ୟାଦିକେଷ୍ଟୂଦୟା-
ଚ୍ଚନ୍ଦ୍ରାଦ୍ଦିଗ୍‌ବ୍ୟଫଲେଷୁ କେନ୍ଦ୍ରନିଧନପ୍ରାପ୍ତ୍ୟର୍ଥଗଃସ୍ୱାଚ୍ଛୁଭଃ ।
ଧର୍ମାୟାଷ୍ଟମକେନ୍ଦ୍ରଗୋର୍କତନୟାଜ୍‌ଜ୍ଞାତ୍‌ଷଟ୍‌ତ୍ରିଧୀଲାଭଗଃ
ଶୁକ୍ରାତ୍‌ଷଡ୍‌ବ୍ୟୟଲାଭମୃତ୍ୟୁଷୁ ଗୁରୋଃକର୍ମାନ୍ତ୍ୟଲାଭାରିଷୁ ।୩।

| | | |
|---|---|---|
| ରବିଠାରୁ | ୩, ୬, ୧୦, ୧୧, ୫ | ସ୍ଥାନ ଶୁଭପ୍ରଦ ଅଟେ |
| ଚନ୍ଦ୍ରଠାରୁ | ୩, ୬, ୧୧ | ,, |
| ମଙ୍ଗଳଠାରୁ | ୧, ୪, ୭, ୧୦, ୮, ୧୧, ୨ | ,, |
| ବୁଧଠାରୁ | ୬, ୩, ୫, ୧୧ | ,, |
| ବୃହସ୍ପତିଠାରୁ | ୧୦, ୧୨, ୧୧, ୬ | ,, |
| ଶୁକ୍ରଠାରୁ | ୬, ୧୨, ୧୧, ୮ | ,, |
| ଶନିଠାରୁ | ୯, ୧୧, ୮, ୧, ୪, ୭, ୧୦ | ,, |
| ଲଗ୍ନଠାରୁ | ୩, ୬, ୧୦, ୧୧, ୧ | ,, |

ଯେଉଁସ୍ଥାନ ଗୁଡ଼ିକ କୁହାଯାଇ ନାହିଁ, ସେ ସ୍ଥାନମାନ ଅଶୁଭପ୍ରଦ, ଉଦାହରଣ ସ୍ୱରୂପ ରବିର ୩, ୬, ୧୦, ୧୧, ୫ ସ୍ଥାନ ଶୁଭ ଏବଂ ୧, ୨, ୪, ୭, ୮, ୯, ୧୨ ସ୍ଥାନମାନ ଅଶୁଭ ।୩।

## ବୁଧର ଅଷ୍ଟକବର୍ଗ ବର୍ଣ୍ଣନ

ଦ୍ୱ୍ୟାଦ୍ୟାଯ୍ୱାଷ୍ଟତପଃ ସୁଂଖେଷୁ ଭୃଗ୍ୱଙ୍କାତ୍ସଦ୍ୟାମ୍ବକେଷ୍ୱିନ୍ଦୁଙ୍କଃ
ସାଙ୍କାସ୍ତେଷୁ ଯମାରଯୋର୍ବ୍ୟଯୁରପ୍ରାପ୍ତ୍ୟଷ୍ଟଗୋ ବାକ୍ପତେଃ ।
ଧର୍ମାଯ୍ୱାରସୁତବ୍ୟଯେଷୁ ସବିତୁଃ ସ୍ୱାସ୍ତାଦ୍ୟକର୍ମନ୍ତିଗଃ
ଷଟ୍ସ୍ୱାଯ୍ୱାଷ୍ଟସୁଖାସ୍ପଦେଷୁହିମଗୋଃ ସାଦ୍ୟେଷୁ ଲଗ୍ନାଚ୍ଛୁଭଃ ।୪।

| | | |
|---|---|---|
| ରବିର | ୧, ୧୧, ୬, ୫, ୧୨ | ସ୍ଥାନମାନ ଶୁଭପ୍ରଦ |
| ଚନ୍ଦ୍ରର | ୬, ୨, ୧୧, ୮, ୪, ୧୦ | „ |
| ମଙ୍ଗଳର | ୨, ୧, ୧୧, ୮, ୯, ୪, ୧୦, ୭ | „ |
| ବୁଧର | ୧, ୧୧, ୬, ୫, ୧୨, ୧, ୧୦, ୩ | „ |
| ବୃହସ୍ପତିଙ୍କ | ୧୨, ୬, ୧୧, ୮ | „ |
| ଶୁକ୍ରର | ୨, ୧, ୧୧, ୮, ୯, ୪, ୩, ୫ | „ |
| ଶନିର | ୨, ୧, ୧୧, ୮, ୯, ୪, ୧୦ | „ |
| ଲଗ୍ନର | ୬, ୨, ୧୧, ୮, ୪, ୧୦, ୧ | „ |

ଶୁଭପ୍ରଦ ସ୍ଥାନମାନଙ୍କ ଛଡା ବାକି ସ୍ଥାନମାନ **ଅଶୁଭପ୍ରଦ । ରବିର** ୧, ୧୧, ୬, ୫, ୧୨ ଶୁଭପ୍ରଦ ୨, ୩, ୪,' ୭, ୮, ୯, ୧୦ **ସ୍ଥାନଗୁଡ଼ିକ** ଅଶୁଭପ୍ରଦ ଅଟେ ।୪।

## ବୃହସ୍ପତର ଅଷ୍ଟକବର୍ଗ ବର୍ଣ୍ଣନ

ଦକ୍ସ୍ୱାଦ୍ୟାଷ୍ଟମଦାଯ୍ୱବନ୍ଧୁଷୁକୁଜାତ୍ସ୍ୱାସ୍ତନ୍ତିକେଷ୍ୱଂଶିବଃ
ସୂର୍ଯାତ୍ସନିନବେଷୁଧୀସ୍ୱନବଦଗ୍ଲଭାରିଗୋ ଭାର୍ଗବାତ୍ ।
ଜାଯ୍ୱାଯ୍ୱାର୍ଥନବାମ୍ବଜେଷୁ ହିମଗୋର୍ମନ୍ଦାସ୍ତ୍ରି ଷଡ୍ଧୀବ୍ୟଯେ
ଦଗ୍ଧୀଷଟ୍ସ୍ୱସୁଖାଯ୍ୱପୂର୍ବନବଗୋଙ୍କାତ୍ସସ୍ମରଷ୍ଟୋଦଯ୍ୱାତ୍ ।୭।

| | | | |
|---|---|---|---|
| ରବିଠାରୁ | ୧୦, ୨, ୧, ୮, ୭, ୧୧, ୪, ୩, ୯ | ସ୍ଥାନ ମାନ | ଶୁଭପ୍ରଦ |
| ଚନ୍ଦ୍ରଠାରୁ | ୭, ୧୧, ୨, ୯, ୫ | „ | „ |
| ମଙ୍ଗଳଠାରୁ | ୧୦, ୨, ୧, ୮, ୭, ୧୧, ୪ | „ | „ |
| ବୁଧଠାରୁ | ୧୦, ୫, ୬, ୨, ୪, ୧୧, ୧, ୯ | „ | „ |
| ବୃହସ୍ପତି ଠାରୁ | ୧୦, ୨, ୧, ୮, ୭, ୧୧, ୪, ୩, ୪ | „ | „ |
| ଶୁକ୍ରଠାରୁ | ୫, ୨, ୯, ୧୦, ୧୧, ୬ | „ | „ |
| ଶନିଠାରୁ | ୩, ୬, ୫, ୧୨ | „ | „ |
| ଲଗ୍ନଠାରୁ | ୧୦, ୫, ୬, ୨, ୪, ୧୧, ୧, ୯, ୭ | „ | „ |

ଶୁଭପ୍ରଦ ସ୍ଥାନମାନଙ୍କ ଛଡ଼ା ଅନ୍ୟ ସ୍ଥାନମାନ ଅଶୁଭପ୍ରଦ । ରବିଠାରୁ ୧୦, ୨, ୧, ୮, ୭, ୧୧, ୪, ୩, ୯ ଶୁଭ ହେବାରୁ ୫, ୬, ୧୨ ସ୍ଥାନମାନ ଅଶୁଭ ହେଲ ।୫।

## ଶୁକ୍ରର ଅଷ୍ଟକବର୍ଗ ବଚ୍ଚର

ଲଗ୍ନାଦା ସୁତଲାଭରନ୍ଧ୍ରନବଗଃ ସାନ୍ତ୍ୟଃ ଶଶଙ୍କାତ୍ତ୍ରିତଃ
ସ୍ୱାତ୍ସାଙ୍କେଷୁ ସୁଖତ୍ରିଧୀନବଦଶଚ୍ଛିଦ୍ରାପ୍ତିଗଃ ସୂର୍ଯ୍ୟଜାତ୍ ।
ରନ୍ଧ୍ରାୟବ୍ୟୟଗୋ ରବେର୍ନବଦଶପ୍ରାପ୍ତ୍ୟନ୍ତଧୀସ୍ଥୋ ଗୁରୋ
ର୍ଜ୍ଞାଦ୍ଧୀତ୍ର୍ୟାୟନବାରିଗସ୍ତ୍ରିନବଷଟ୍ ପୁତ୍ରାୟସାନ୍ତ୍ୟଃ କୁଜାତ୍ ।୬।

| | | |
|---|---|---|
| ରବିଠାରୁ | ୮, ୧୧, ୧୨ | ସ୍ଥାନ ଶୁଭପ୍ରଦ |
| ଚନ୍ଦ୍ରଠାରୁ | ୧, ୨, ୩, ୪, ୫, ୧୧, ୮, ୯, ୧୨ | ,, |
| ମଙ୍ଗଳଠାରୁ | ୩, ୯, ୬, ୫, ୧୧, ୧୨ | ,, |
| ବୁଧଠାରୁ | ୫, ୩, ୧୧, ୯, ୬ | ,, |
| ବୃହସ୍ପତିଠାରୁ | ୧, ୧୦, ୧୧, ୮, ୫ | ,, |
| ଶୁକ୍ରଠାରୁ | ୧, ୨, ୩, ୪, ୫, ୧୧, ୮, ୯, ୧୦ | ,, |
| ଶନିଠାରୁ | ୪, ୩, ୫, ୯, ୧୦, ୮, ୧୧ | ,, |
| ଲଗ୍ନଠାରୁ | ୧, ୨, ୩, ୪, ୫, ୧୧, ୮, ୯ | ,, |

ଶୁଭବୋଲି କୁହାଯାଇ ଥିବା ସ୍ଥାନ ଛଡ଼ା ବାକି ସବୁ ସ୍ଥାନ ଅଶୁଭପ୍ରଦ । ରବି ୮, ୧୧, ୧୨ ରେ ଶୁଭ । ତେଣୁ ୧, ୨, ୩, ୪, ୫, ୬, ୭, ୯, ୧୦ ସ୍ଥାନମାନ ଅଶୁଭପ୍ରଦ ଅଟେ ।୬।

## ଶନିର ଅଷ୍ଟକବର୍ଗ ବଚ୍ଚର

ମନ୍ଦଃ ସ୍ୱାତ୍ତ୍ରିସୁତାୟଶତ୍ରୁଷୁ ଶୁଭଃ ସାଙ୍କାନ୍ତ୍ୟଗୋ ଭୂମିଜାତ୍
କେନ୍ଦ୍ରାୟାଷ୍ଟଧନେଷ୍ୱିନାଦୁପଚୟେଷ୍ୱାଦ୍ୟେ ସୁଖେ ଚେନ୍ଦ୍ରାତ୍ ।
ଧର୍ମାୟାରିଦଶାନ୍ତ୍ୟମୃତ୍ୟୁଷୁ ବୁଧାଚ୍ଚନ୍ଦ୍ରାତ୍ତ୍ରିଷଡ୍ଲାଭଗଃ ତ୍ରି
ଷଷ୍ଠାୟାନ୍ତ୍ୟଗତଃ ସିତାତ୍ସୁରଗୁରୋଃ ପ୍ରାପ୍ତ୍ୟନ୍ତଧୀଶତ୍ରୁଷୁ ।୭।

| | | | |
|---|---|---|---|
| ରବିଠାରୁ | ୧, ୪, ୭, ୧୦, ୧୧, ୮, ୨ | ସ୍ଥାନମାନ | ଶୁଭପ୍ରଦ |
| ଚନ୍ଦ୍ରଠାରୁ | ୩, ୬, ୧୧ | ,, | ,, |
| ମଙ୍ଗଳଠାରୁ | ୩, ୫, ୧୧, ୬, ୧୦, ୧୨ | ,, | ,, |

| | | |
|---|---|---|
| ବୁଧଠାରୁ | ୯, ୧୨, ୬, ୧୦, ୧୨, ୮ | ସ୍ଥାନମାନ ଶୁଭପ୍ରଦ |
| ବୃହସ୍ପତିଠାରୁ | ୧୧, ୧୨, ୫, ୬ | " " |
| ଶୁକ୍ରଠାରୁ | ୬, ୧୧, ୧୨ | " " |
| ଶନିଠାରୁ | ୩, ୫, ୧୧, ୬ | " " |
| ଲଗ୍ନଠାରୁ | ୩, ୬, ୧୦, ୧୧, ୧, ୪ | " " |

ଶୁଭବୋଲି କୁହାଯିବା ସ୍ଥାନ ଛଡା ଅନ୍ୟ ସବୁ ସ୍ଥାନ ଅଶୁଭ । ରବି-ଠାରୁ ୧, ୪, ୭, ୧୦, ୧୧, ୮, ୨ ଶୁଭ । ସେହିପରି ୩, ୫, ୬, ୯, ୧୨ ସ୍ଥାନଗୁଡ଼ିକ ଅଶୁଭପ୍ରଦ ଅଟେ ।୭।

ଇତି ନିଗଦିତମିଷ୍ଟଂନେଷ୍ଟମନ୍ୟଦ୍‌ବିଶେଷା-
ଦଧିକଫଳବିପାକଂ ଜନ୍ମଭାବିବଦନ୍ତ୍ୟଃ
ଉପଚୟଗୃହମିତ୍ରସ୍ୱୋଚ୍ଚଗୈଃପୁଷ୍ଟମିଷ୍ଟଂ
ତ୍ୱପଚୟଗୃହନୀଚରିପୁଗୈନେଂଷ୍ଟସମ୍ପତ୍ତ ।୮।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେଽଷ୍ଟକବର୍ଗାଧ୍ୟାୟୋ ନବମଃ ।

ରବି ଆଦି ଗ୍ରହମାନଙ୍କର ଶୁଭସ୍ଥାନମାନ ଉଲ୍ଲେଖ କରାଯାଇ ଅଛି । ଉଲ୍ଲେଖ ନଥିବା ସ୍ଥାନମାନ ଅଶୁଭ ବୋଲି ଜାଣିବେ ।

ଶୁଭାଶୁଭ ସ୍ଥିର କରିବା ପାଇଁ ରେଖା ଓ ବିନ୍ଦୁ ଚିହ୍ନ ଦିଆଯିବା ଉଚିତ । ଅର୍ଥାତ୍ ଶୁଭସ୍ଥାନରେ ରେଖା ଓ ଅନ୍ୟ ସ୍ଥାନରେ ବିନ୍ଦୁ ଦେବାକୁ ହେବ ।

ନିମ୍ନରେ ଗୋଟିଏ ଜାତକ ଚକ୍ର ଦିଆଯାଇ ଏହା ବୁଝାଇ ଦିଆଯିବ ।

ଯେଉଁସ୍ଥାନରେ ରେଖା ସଂଖ୍ୟା ବିନ୍ଦୁଠାରୁ ଅଧିକ ସେଠାରେ ଶୁଭ । ଅନ୍ୟଥା ରେଖା ସଂଖ୍ୟା ବାଦ୍‌ଦେଲେ ଯାହା ବିନ୍ଦୁ ରହିବ ତାହା ଅଶୁଭ ।

ଯେଉଁଠାରେ ଆଠରେଖା ସେଠାରେ ପୂର୍ଣ୍ଣଶୁଭ, ଆଠବିନ୍ଦୁ ହେଲେ ପୂର୍ଣ୍ଣ ଅଶୁଭ, ରେଖା ଓ ବିନ୍ଦୁ ସମାନ ହେଲେ ଫଳଶୂନ୍ୟ, ଏପରି ନ୍ୟୂନା-ଧିକ୍ୟରେ ଫଳର ଭିତର ବିଶେଷ କହିବେ ।

ଏହି ଭଳି ଆସିବା ଶୁଭରେଖାଧିକ୍ୟ ସ୍ଥାନ ଜନ୍ମଲଗ୍ନ ବା ଜନ୍ମକାଳୀନ ଚନ୍ଦ୍ର ସ୍ଥିତଠାରୁ ୩, ୬, ୧୦, ୧୧, ସ୍ଥାନ, ନିଜର ମିତ୍ର ଗୃହ, ଉଚ୍ଚସ୍ଥାନରେ ପଡ଼ିଲେ ସେହି ରାଶିସ୍ଥଗ୍ରହ (ଯେତେବେଳେ ଗ୍ରହ ନିଜର ଗତିରେ ଅସି ସେହି ରାଶିରେ ରହିବ) ଶୁଭ କରାଇବ ।

ଲଗ୍ନ ବା ଚନ୍ଦ୍ର ୧, ୨, ୪, ୫, ୭, ୮, ୯, ୧୨ ରେ ବା ଅପଣାର ଶତ୍ରୁ ତଥା ନୀଚସ୍ଥାନରେ ଶୁଭାଧିକ୍ୟ ରେଖା ପଡ଼ିଲେ ମଧ୍ୟ ବିଶେଷ ଶୁଭହେବ ନାହିଁ ।

ଉଦାହୃତ ଜାତକ (୫୩।୫୪ ପୃଷ୍ଠାଦେଖ)ର ରବ୍ୟାଦ ଅଷ୍ଟକ ବର୍ଗ ସାଧନା ଦିଆଗଲା । ରବିର ଅଷ୍ଟକବର୍ଗ ସାଧନ ଚକ୍ର:—



| | | | | | | | |
|---|---|---|---|---|---|---|---|
| ମେଷରାଶିର | ରେଖା | (ଶୁଭ) | ୭ | ବିନ୍ଦୁ | (ଅଶୁଭ) ୧ | ଫଳ | ଶୁଭ |
| ବୃଷରାଶିର | ରେଖା | (ଶୁଭ) | ୫ | ବିନ୍ଦୁ | (ଅଶୁଭ) ୩ | ,, | |
| ମିଥୁନରାଶିର | ,, | | ୪ | ,, | ୪ | ,, | ମଧ୍ୟମ |
| କର୍କଟ ରାଶିର | ,, | | ୩ | ,, | ୫ | ,, | ଅଶୁଭ |
| ସିଂହରାଶିର | ,, | | ୩ | ,, | ୫ | ,, | ,, |
| କନ୍ୟାରାଶିର | ,, | | ୪ | ,, | ୪ | ,, | ମଧ୍ୟମ |
| ତୁଳାରାଶିର | ,, | | ୪ | ,, | ୪ | ,, | ମଧ୍ୟମ |
| ବୃଶ୍ଚିକ ରାଶିର | ,, | | ୫ | ,, | ୩ | ,, | ଶୁଭ |
| ଧନୁରାଶିର | ,, | | ୩ | ,, | ୫ | ,, | ଅଶୁଭ |
| ମକର ରାଶିର ରେଖା | | | ୨ | ବିନ୍ଦୁ, | ୬ | ,, | ଅଶୁଭ |
| କୁମ୍ଭ ରାଶିର ରେଖା | | | ୨ | ବିନ୍ଦୁ, | ୬ | ,, | ଅଶୁଭ |
| ମୀନ ରାଶିର ରେଖା | | | ୬ | ବିନ୍ଦୁ, | ୨ | ,, | ଶୁଭ |

ଚନ୍ଦ୍ରାଷ୍ଟକ ବର୍ଗସାଧନ ଚକ୍ର—



| | | | | | |
|---|---|---|---|---|---|
| ମେଷରାଶିରେ | ରେଖା | ୫ | ବିନ୍ଦୁ | ୩ | ଶୁଭ |
| ବୃଷ ରାଶିରେ | „ | ୪ | „ | ୪ | ମଧ୍ୟମ |
| ମିଥୁନ ରାଶିରେ | „ | ୩ | „ | ୫ | ଅଶୁଭ |
| କର୍କଟ ରାଶିରେ | „ | ୩ | „ | ୫ | ଅଶୁଭ |
| ସିଂହ ରାଶିରେ | „ | ୪ | „ | ୪ | ମଧ୍ୟମ |
| କନ୍ୟା ରାଶିରେ | „ | ୪ | „ | ୪ | ମଧ୍ୟମ |
| ତୁଲା ରାଶିରେ | „ | ୨ | „ | ୬ | ଅଶୁଭ |
| ବିଛା ରାଶିରେ | „ | ୭ | „ | ୧ | ଶୁଭ |
| ଧନୁ ରାଶିରେ | „ | ୪ | „ | ୪ | ମଧ୍ୟମ |
| ମକର ରାଶିରେ | „ | ୫ | „ | ୩ | ଶୁଭ |
| କୁମ୍ଭ ରାଶିରେ | „ | ୩ | „ | ୫ | ଅଶୁଭ |
| ମୀନ ରାଶିରେ | „ | ୫ | „ | ୩ | ଶୁଭ |

## ମଙ୍ଗଳାଷ୍ଟକ ବର୍ଗ ସାଧନ ଚକ୍ର




| | | | | | |
|---|---|---|---|---|---|
| ମେଷ ରାଶିରେ | ରେଖା | ୭ | ବିନ୍ଦୁ | ୧ | ଶୁଭ |
| ବୃଷ ରାଶିରେ | „ | ୩ | „ | ୫ | ଅଶୁଭ |
| ମିଥୁନ ରାଶିରେ | „ | ୨ | „ | ୬ | ଅଶୁଭ |
| କର୍କଟ ରାଶିରେ | „ | ୨ | „ | ୬ | ଅଶୁଭ |
| ସିଂହ ରାଶିରେ | „ | ୩ | „ | ୫ | ଅଶୁଭ |
| କନ୍ୟା ରାଶିରେ | „ | ୨ | „ | ୬ | ଅଶୁଭ |
| ତୁଳା ରାଶିରେ | „ | ୪ | „ | ୪ | ମଧ୍ୟମ |
| ବିଛା ରାଶିରେ | „ | ୫ | „ | ୩ | ଶୁଭ |
| ଧନୁ ରାଶିରେ | „ | ୩ | „ | ୫ | ଅଶୁଭ |
| ମକର ରାଶିରେ | „ | ୧ | „ | ୭ | ଅଶୁଭ |
| କୁମ୍ଭ ରାଶିରେ | „ | ୧ | „ | ୭ | ଅଶୁଭ |
| ମୀନ ରାଶିରେ | „ | ୬ | „ | ୨ | ଶୁଭ |

## ବୁଧର ଅଷ୍ଟକବର୍ଗ ସାଧନ ଚକ୍ର

ଶୁ.କେ
ଲଗ୍ନ.ଚ.ବୃ
ଶ.ବୁ
ମ
ର

| | | | | | |
|---|---|---|---|---|---|
| ମେଷ ରାଶିରେ | ରେଖା | ୭ | ବିନ୍ଦୁ | ୧ | ଶୁଭ |
| ବୃଷ ରାଶିରେ | ” | ୬ | ” | ୨ | ଶୁଭ |
| ମିଥୁନ ରାଶିରେ | ” | ୪ | ” | ୪ | ମଧ୍ୟମ |
| କର୍କଟ ରାଶିରେ | ” | ୬ | ” | ୨ | ଶୁଭ |
| ସିଂହ ରାଶିରେ | ” | ୩ | ” | ୫ | ଅଶୁଭ |
| କନ୍ୟା ରାଶିରେ | ” | ୫ | ” | ୩ | ଶୁଭ |
| ତୁଳା ରାଶିରେ | ” | ୩ | ” | ୫ | ଅଶୁଭ |
| ବିଛା ରାଶିରେ | ” | ୫ | ” | ୩ | ଶୁଭ |
| ଧନୁ ରାଶିରେ | ” | ୩ | ” | ୫ | ଅଶୁଭ |
| ମକର ରାଶିରେ | ” | ୫ | ” | ୩ | ଶୁଭ |
| କୁମ୍ଭ ରାଶିରେ | ” | ୨ | ” | ୬ | ଅଶୁଭ |
| ମୀନ ରାଶିରେ | ” | ୬ | ” | ୨ | ଶୁଭ |

## ବୃହସ୍ପତିର ଅଷ୍ଟକବର୍ଗ ସାଧନ ଚକ୍ର



| | | | | | |
|---|---|---|---|---|---|
| ମେଷ ରାଶିର | ରେଖା | ୨ | ବିନ୍ଦୁ | ୬ | ଅଶୁଭ |
| ବୃଷ ରାଶିର | „ | ୬ | „ | ୨ | ଶୁଭ |
| ମିଥୁନ ରାଶିର | „ | ୨ | „ | ୬ | ଅଶୁଭ |
| କର୍କଟ ରାଶିର | „ | ୨ | „ | ୬ | ଅଶୁଭ |
| ସିଂହ ରାଶିର | „ | ୫ | „ | ୩ | ଶୁଭ |
| କନ୍ୟା ରାଶିର | „ | ୨ | „ | ୬ | ଅଶୁଭ |
| ତୁଳା ରାଶିର | „ | ୩ | „ | ୫ | ଅଶୁଭ |
| ବିଛା ରାଶିର | „ | ୬ | „ | ୨ | ଶୁଭ |
| ଧନୁ ରାଶିର | „ | ୧ | „ | ୭ | ଅଶୁଭ |
| ମକର ରାଶିର | „ | ୫ | „ | ୩ | ଶୁଭ |
| କୁମ୍ଭ ରାଶିର | „ | ୪ | „ | ୪ | ମଧ୍ୟମ |
| ମୀନ ରାଶିର | „ | ୨ | „ | ୬ | ଅଶୁଭ |

## ଶୁକ୍ରାଷ୍ଟକ ବର୍ଗ ସାଧନ ଚକ୍ର:—




| | | | | | | |
|---|---|---|---|---|---|---|
| ମେଷ ରାଶିରେ | ରେଖା | ୫ | ବନ୍ଦୁ | ୩ | ଫଳ | ଶୁଭ |
| ବୃଷ ରାଶିରେ | ,, | ୬ | ବନ୍ଦୁ | ୨ | ,, | ଶୁଭ |
| ମିଥୁନ ରାଶିରେ | ,, | ୩ | ,, | ୫ | ,, | ଅଶୁଭ |
| କର୍କଟ ରାଶିରେ | ,, | ୫ | ,, | ୩ | ,, | ଶୁଭ |
| ସିଂହ ରାଶିରେ | ,, | ୪ | ,, | ୪ | ,, | ମଧ୍ୟମ |
| କନ୍ୟା ରାଶିରେ | ,, | ୬ | ,, | ୨ | ,, | ଅଶୁଭ |
| ତୁଳା ରାଶିରେ | ,, | ୩ | ,, | ୫ | ,, | ଅଶୁଭ |
| ବଛ ରାଶିରେ | ,, | ୪ | ,, | ୪ | ,, | ମଧ୍ୟମ |
| ଧନୁ ରାଶିରେ | ,, | ୨ | ,, | ୬ | ,, | ଅଶୁଭ |
| ମକର ରାଶିରେ | ,, | ୨ | ,, | ୬ | ,, | ଶୁଭ |
| କୁମ୍ଭ ରାଶିରେ | ,, | ୬ | ,, | ୨ | ,, | ଅଶୁଭ |
| ମୀନ ରାଶିରେ | ,, | ୩ | ,, | ୫ | ,, | ଅଶୁଭ |

## ଶନି ଅଷ୍ଟକବର୍ଗ ସାଧନ ଚକ୍ର:—



| | | | | | | |
|---|---|---|---|---|---|---|
| ମେଷ ରାଶିରେ | ରେଖା | ୬ | ବିନ୍ଦୁ | ୨ | ଫଳ | ଶୁଭ |
| ବୃଷ ରାଶିରେ | ,, | ୩ | ,, | ୫ | ,, | ଅଶୁଭ |
| ମିଥୁନ ରାଶିରେ | ,, | ୪ | ,, | ୪ | ,, | ମଧ୍ୟମ |
| କର୍କଟ ରାଶିରେ | ,, | ୨ | ,, | ୬ | ,, | ଶୁଭ |
| ସିଂହ ରାଶିରେ | ,, | ୩ | ,, | ୫ | ,, | ଶୁଭ |
| କନ୍ୟା ରାଶିରେ | ,, | ୩ | ,, | ୫ | ,, | ଅଶୁଭ |
| ତୁଳା ରାଶିରେ | ,, | ୨ | ,, | ୬ | ,, | ଅଶୁଭ |
| ବିଛା ରାଶିରେ | ,, | ୫ | ,, | ୩ | ,, | ଶୁଭ |
| ଧନୁ ରାଶିରେ | ,, | ୩ | ,, | ୫ | ,, | ଅଶୁଭ |
| ମକର ରାଶିରେ | ,, | ୨ | ,, | ୬ | ,, | ଅଶୁଭ |
| କୁମ୍ଭ ରାଶିରେ | ,, | ୨ | ,, | ୬ | ,, | ଅଶୁଭ |
| ମୀନ ରାଶିରେ | ,, | ୪ | ,, | ୪ | ,, | ମଧ୍ୟମ |

ଏହି ଜାତକର ରବିର ଅଷ୍ଟକବର୍ଗ ଚକ୍ରରେ ଦେଖାଗଲା ମେଷ, ତଥା ବୃଶ୍ଚିକ ରାଶିର ରେଖା (ଶୁଭଚିହ୍ନ) ଅଧିକ ଥିବାହେତୁ ଓ ଏହି ଏହି ରାଶି ରବିର ନୀଚ ବା ଶତ୍ରୁଗୃହ ନହୋଇଥିବାରୁ ରବି ଏହି ଏହି ରାଶିରେ ଥିବା-ବେଳେ ସର୍ବଶୁଭ କରାଇବ ଓ ଜାତକର ସକଳକାର୍ଯ୍ୟ ଏହି ମାସମାନଙ୍କରେ କରିବା ଉଚିତ ।

ବୃଷରାଶିରେ ରେଖାସଂଖ୍ୟା ଅଧିକ କିନ୍ତୁ ତାହା ରବିର ଶତ୍ରୁକ୍ଷେତ୍ର ହେତୁ–ସେହି ରାଶିରେ ରବି ଥିବା ବେଳେ ବିଶେଷ ଶୁଭ କରାଇ ନଥାଏ ।

ଚନ୍ଦ୍ରର ଅଷ୍ଟକବର୍ଗରେ ମେଷ, ଧନୁ, ମକର, ମୀନ ଶୁଭାଧିକ୍ୟ, ଏଗୁଡ଼ିକ ତାର ନୀଚ ବା ଶତ୍ରୁକ୍ଷେତ୍ର ନୁହେଁ । ଏହି ଏହି ରାଶିରେ ଚନ୍ଦ୍ର ଥିବା ବେଳେ ସର୍ବ ମଙ୍ଗଳ ଘଟେ, ଓ ଏହି ସମୟରେ ସକଳ ଶୁଭକାର୍ଯ୍ୟ କରଣୀୟ ।

ମଙ୍ଗଳ ଅଷ୍ଟକବର୍ଗରେ ମେଷ, ଧନୁ ତଥା ମୀନର ରେଖାଧିକ୍ୟ, ତେଣୁ ଏହି ଏହି ରାଶିରେ ମଙ୍ଗଳ ଥିବା ବେଳେ ତାହାର କାରକଫଳକୁ ବିଶେଷ ଭାବେ ଦିଏ । ବୁଧ ଅଷ୍ଟକବର୍ଗରେ ମେଷ, ବୃଷ, କର୍କଟ, କନ୍ୟା, ଧନୁ, ମକର ଓ ମୀନ ଶୁଭରେଖା ଯୁକ୍ତ । ଏ ଗୁଡ଼ିକ ମଧ୍ୟରୁ କର୍କଟ ବୁଧର ଶତ୍ରୁକ୍ଷେତ୍ର, ମୀନ ନୀଚକ୍ଷେତ୍ର ହେବାରୁ ଏହିରାଶି ଦୁଇଟିକୁ ଛାଡ଼ି ମେଷ, ବୃଷ, କନ୍ୟା ରାଶିରେ ଥିବାବେଳେ ବୁଧ ତାହାର କାରକ ବଳକୁ ବଢ଼ାଇ ଶୁଭଫଳ ଦିଏ ।

ବୃହସ୍ପତିର ଅଷ୍ଟକବର୍ଗରେ ବୃଷ, ସିଂହ, ଧନୁ, ମକର ଏଗୁଡ଼ିକ ଶୁଭାଧିକ୍ୟ । ଏଥିରୁ ମକର ନୀଚକ୍ଷେତ୍ର, ବୃଷ ଶତ୍ରୁକ୍ଷେତ୍ର, ବାକିଦୁଇଟି ରାଶି ସିଂହ ଓ ଧନୁରେ ବୃହସ୍ପତି ଥିବା ବେଳେ ତାହାର କାର୍ଯ୍ୟ ବଳର ବୃଦ୍ଧି ଘଟାଇ ଶୁଭଫଳ ଦିଏ ।

ଶୁକ୍ରର ଅଷ୍ଟକ ବର୍ଗରେ ମେଷ, ବୃଷ, କର୍କଟ, କନ୍ୟା ଓ କୁମ୍ଭ ବିନ୍ଦୁ-ରେଖା ଯୁକ୍ତ । କନ୍ୟା ନୀଚକ୍ଷେତ୍ର, ମେଷ ଓ କର୍କଟ ଶତ୍ରୁକ୍ଷେତ୍ର, ତେଣୁ ଗୋଚରରେ, ବୃଷରାଶିରେ ଶୁକ୍ର ରହୁଥିବା ବେଳେ ସର୍ବଶୁଭ ହେବ । ଶନିର ଅଷ୍ଟକବର୍ଗରେ ମେଷ ଓ ଧନୁ ଏ ଦୁଇଟି ରାଶି ଶୁଭରେଖା ଯୁକ୍ତ, ଏ ଦୁଇଟି ତାହାର ଶତ୍ରୁକ୍ଷେତ୍ର, ତେଣୁ ମୋଟ ଉପରେ ଶନି ଗୋଚରରେ ଏଜାତକକୁ ଶୁଭଫଳ ଦେଇ ନପାରେ । ସମସ୍ତ ଗ୍ରହର ଅଷ୍ଟକବର୍ଗରେ ମେଷାଦି ରାଶିର ରେଖା ଓ ବିନ୍ଦୁ ସଂଖ୍ୟା ଯାହା ତାହା ନିମ୍ନରେ ଦିଆଗଲା ।

| | | | | | | |
|---|---|---|---|---|---|---|
| ସମସ୍ତ ଅଷ୍ଟକବର୍ଗରେ | ମେଷରାଶିର | | ରେଖା | ୩୯ | ବିନ୍ଦୁ | ୧୭ |
| ” | ବୃଷ | ” | ” | ୩୩ | ” | ୨୩ |
| ” | ମିଥୁନ | ” | ” | ୨୨ | ” | ୩୪ |
| ” | କର୍କଟ | ” | ” | ୨୩ | ” | ୩୩ |
| ” | ସିଂହ | ” | ” | ୨୫ | ” | ୩୧ |
| ” | କନ୍ୟା | ” | ” | ୨୬ | ” | ୩୦ |
| ” | ତୁଲା | ” | ” | ୨୧ | ” | ୩୫ |
| ” | ବିଛା | ” | ” | ୩୭ | ” | ୧୯ |
| ” | ଧନୁ | ” | ” | ୧୯ | ” | ୩୭ |
| ” | ମକର | ” | ” | ୨୬ | ” | ୩୦ |
| ” | କୁମ୍ଭ | ” | ” | ୧୬ | ” | ୪୦ |
| ” | ମୀନ | ” | ” | ୩୨ | ” | ୨୪ |

ଏଥିରୁ ଜଣାଗଲ ଯେ ମେଷ, ବୃଷ, ବିଛା ଓ ମୀନ ଏ ଗୁରଟି ରାଶି ବହୁ ଶୁଭରେଖା ଯୁକ୍ତ, ତେଣୁ ଏହି ଏହି ଲଗ୍ନରେ କାର୍ଯ୍ୟାରମ୍ଭ କରିବା ଏ ଜାତକ ପକ୍ଷେ ଶୁଭପ୍ରଦ ।

ତ୍ରିକୋଣ ଶୋଧନ, ଏକାଧିପତ୍ୟ ଶୋଧନ ଆଦି ଅନ୍ୟ କେତେକ ପ୍ରକାର ଗଣନା ଅଷ୍ଟକବର୍ଗ ଫଳାନୟନ ସମ୍ପର୍କରେ ମହର୍ଷି ପରାଶର କହିଅଛନ୍ତି, କିନ୍ତୁ ମହାମତି ବରାହ ସେ ସମସ୍ତ ଗ୍ରହଣ ନକରିଥିବା ହେତୁ ତାହା ଏଠାରେ ଉଲ୍ଲେଖ କରାଯାଉ ନାହିଁ । ଯେଉଁମାନେ ସେ ଗୁଡ଼ିକ ଜାଣିବା ଇଚ୍ଛା କରିବେ ସେମାନେ ମତ୍କୃତ ଜ୍ୟୋତିଃସାର ରତ୍ନାବଳୀ ଗ୍ରନ୍ଥରୁ ପାଇ ପାରିବେ ।

ଶ୍ରୀବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଅଷ୍ଟକବର୍ଗ ନାମକ
ନବମ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲ ।

---

# କର୍ମାଜୀବାଧ୍ୟାୟୋଦଶମଃ

ଅର୍ଥାପ୍ତିଃପିତୃପିତୃପତ୍ନୀଶତ୍ରୁମିତ୍ରଭ୍ରାତୃସ୍ତ୍ରୀ-
ଭୃତକଜନାଦିବାକରାଦ୍ୟୈଃ ।
ହୋରେନ୍ଦ୍ୱୋର୍ଦଶମଗତୈର୍ବିକଲ୍ପମାପ୍ତା
ଭେନ୍ଦ୍ୱର୍କାସ୍ପଦପତଗାଂଶନାଥବୃତ୍ତ୍ୟା ।୧।

ଲଗ୍ନ ଏବଂ ଚନ୍ଦ୍ରର ଦଶମରେ ଥିବା ଗ୍ରହରୁ ଧନଲାଭ ବିଷୟ ନିର୍ଣ୍ଣୟ କରିବେ । ଉଭୟଙ୍କ ମଧ୍ୟରେ ଯେ ବଳବାନ ତାହାର ଦଶମରେ ଥିବା ଗ୍ରହ ସଂପର୍କରୁ ଧନଲାଭ କରାଯିବ ବୋଲି କେହି କେହି କହନ୍ତି, କିନ୍ତୁ ଏହା ଠିକ୍ ନୁହେଁ, ଉଭୟଙ୍କଠାରୁ ଦଶମରେ ଥିବା ଗ୍ରହ ଧନପ୍ରଦ ହେବ । ଲଗ୍ନ ଓ ଚନ୍ଦ୍ରର ଦଶମରେ ଯଦି ଏକାଧିକ ଗ୍ରହଥିବେ ତେବେ ସେମାନଙ୍କ ମଧ୍ୟରେ ଯେ ସବୁଠାରୁ ବଳିଷ୍ଠ ସେ ଧନଦାତା ବା ବୃତ୍ତିକାରକ ବୋଲି ଧରାଯିବ । କୌଣସି କୌଣସି ଆଚାର୍ଯ୍ୟଙ୍କ ମତ ଏହି ଯେ ବହୁଗ୍ରହ ଥିଲେ ବହୁପ୍ରକାର ଧନଲାଭ ତଥା ବୃତ୍ତିର ନିର୍ଦ୍ଦେଶ କରିବେ । ବାସ୍ତବରେ ଦେଖାଯାଏ ଜଣେ ଜଣେ ବ୍ୟକ୍ତି ଏକାଧିକ ବୃତ୍ତିରୁ ତଥା ବ୍ୟକ୍ତିଙ୍କ ସଂପର୍କରୁ ଧନଲାଭ କରୁଛନ୍ତି । ଏହିପରି ଥିବା ରବି ଧନଦାତା ହେଲେ ପିତାଙ୍କଠାରୁ, ଚନ୍ଦ୍ର ମାତାଙ୍କଠାରୁ, ମଙ୍ଗଳ ଶତ୍ରୁଠାରୁ, ବୁଧ ମିତ୍ରଠାରୁ, ବୃହସ୍ପତି ଭାଇଠାରୁ, ଶୁକ୍ର ସ୍ତ୍ରୀ ଠାରୁ ଓ ଶନି ଭୃତ୍ୟଠାରୁ ଧନପ୍ରାପ୍ତି କରାଏ ।

ଲଗ୍ନ ତଥା ଚନ୍ଦ୍ରର ଦଶମରେ ଯଦି କୌଣସି ଗ୍ରହ ନଥିବେ ତେବେ ଲଗ୍ନ, ଚନ୍ଦ୍ର ତଥା ରବିର ଦଶମ ସ୍ଥାନର ଅଧିପତି ଗ୍ରହମାନେ ଯେଉଁ ଯେଉଁ ଗ୍ରହର ନବାଂଶରେ ଥିବେ ତଦନୁସାରେ ଧନପ୍ରଦ ହେବେ ଓ ବୃତ୍ତି କରାଇବେ ।୧।

### ରବି, ଚନ୍ଦ୍ର, ମଙ୍ଗଳ ଓ ବୁଧଗ୍ରହର ପ୍ରଦତ୍ତ ବୃତ୍ତି

ଅର୍କାଂଶେ ତୃଣକନକୋର୍ଣ୍ଣଭେଷଜାଦ୍ୟୈ-
ଶ୍ଚନ୍ଦ୍ରାଂଶେ କୃଷିଜଲଜାଙ୍ଗନାଶ୍ରୟାଚ୍ଚ ।
ଧାତ୍ୱଗ୍ନିପ୍ରହରଣସାହସୈଃ କୁଜାଂଶେ
ସୌମ୍ୟାଂଶେ ଲିପିଗଣିତାଦି କାବ୍ୟଶିଳ୍ପୈଃ ।୨।

ଉପର୍ଯ୍ୟୁକ୍ତ ଗ୍ରହମାନେ ଯଦି ରବିର ନବାଂଶରେ ଥିବେ ତେବେ ସୁବାସ-ଦ୍ରବ୍ୟ, ସୁବର୍ଣ୍ଣ, ଉର୍ଣ୍ଣା (ଲୋମବସ୍ତ୍ର) ଓ ଔଷଧାଦି ଦ୍ରବ୍ୟର କ୍ରୟବିକ୍ରୟ ତଥା ବ୍ୟବହାରରୁ ଜାତକ ଧନ ପାଇବ ।

ଚନ୍ଦ୍ର ନବାଂଶରେ ଥିଲେ କୃଷିହେତୁକ, ଜଳଜାତ ଦ୍ରବ୍ୟର ବ୍ୟବସାୟାଦରୁ, ସ୍ତ୍ରୀର ସାହାଯ୍ୟାଦରୁ ବା ତତ୍ତହେତୁକ ଧନଲାଭ ଘଟିଥାଏ ।

ମଙ୍ଗଳ ନବାଂଶରେ ଥିଲେ ଧାତୁଦ୍ରବ୍ୟର ବ୍ୟବହାରାଦରୁ ( ଖନିଜଦ୍ରବ୍ୟରୁ) ଅଗ୍ନି ସଂପର୍କ କାର୍ଯ୍ୟରୁ, ଅସ୍ତ୍ର ଶସ୍ତ୍ରାଦର ବ୍ୟବହାରରୁ ଓ ସାହସହେତୁ ଧନଲାଭ କରିଥାଏ ।

ବୁଧ ନବାଂଶରେ ଥିଲେ ଲେଖକ କର୍ମରୁ, ଗଣିତ ବିଦ୍ୟାର ବଳରୁ, କବିତା ତଥା ଶିଳ୍ପାଦରୁ ଧନଲାଭ କରେ ।୨।

## ବୃହସ୍ପତି, ଶୁକ୍ର ତଥା ଶନି ଗ୍ରହର ପ୍ରଦତ୍ତ ବୃତ୍ତି

ଜୀବାଂଶେ ଦ୍ୱିଜ ବିବୁଧାକରାଦଧର୍ମୈଃ
କାବ୍ୟାଂଶେ ମଣିରଜତାଦ ଗୋ ମହିଷ୍ୟୈଃ ।
ସୌରାଂଶେ ଶ୍ରମବଧଭାର ନୀଚଶିଳ୍ପୈଃ
କର୍ମେଶାଧ୍ୟୁଷିତନବାଂଶକର୍ମସିଦ୍ଧି ଃ ।୩।

ବୃହସ୍ପତିର ନବାଂଶରେ ଥିଲେ ବ୍ରାହ୍ମଣମାନଙ୍କ ଦ୍ୱାରା, ଦେବତା ସେବାଦରୁ, ଖନିଜ ଦ୍ରବ୍ୟରୁ ଓ ଧର୍ମ କ୍ରିୟାରୁ ଜାତକ ଧନଲାଭ କରେ ।

ଶୁକ୍ର ନବାଂଶରେ ଥିଲେ ମଣିଦ୍ରବ୍ୟାଦର ବ୍ୟବସାୟରୁ, ରୌପ୍ୟାଦର ବ୍ୟବହାରରୁ, ଗୋଜାତ ତଥା ମହିଷାଦର କ୍ରୟବିକ୍ରୟ ତଥା ପୋଷଣାଦରୁ ଧନଲାଭ କରେ ।

ଶନି ନବାଂଶରେ ଥିଲେ ଶ୍ରମହେତୁକ, ଜୀବମାରଣ ହେତୁ, ଭାର ବହନାଦ ହୀନକର୍ମରୁ ଓ ସ୍ୱକୁଳାନୁଚିତ ନୀଚଜନୋଚିତ ଶିଳ୍ପ କର୍ମରୁ ଧନଲାଭ କରିଥାଏ । ଲଗ୍ନର ଦଶମାଧିପତି ଗୋଚରରେ ଯେଉଁ ଗ୍ରହର ନବାଂଶରେ ଯେତେବେଳେ ରହୁଥିବ ସେହି ଗ୍ରହର ଅନୁରୂପ କର୍ମରୁ ସେତିକିବେଳେ ଧନଲାଭ ଘଟାଇବ ।୩।

## ଦଶମାଧିପତିର ନବାଂଶସ୍ଥିତ୍ୟନୁରୂପ ବୃତ୍ତି

ମିତ୍ରାରିସ୍ୱଗୃହଗତୈର୍ଗ୍ରହୈସ୍ତତୋର୍ଥଂ ତୁଙ୍ଗସ୍ଥେ ବଳିନି ଚ ଭାସ୍କରେ ସ୍ୱବୀର୍ଯ୍ୟାତ୍ ।
ଆୟସ୍ଥୈରୁଦୟଧନାଶ୍ରିତୈଶ୍ଚ ସୌମ୍ୟୈଃସଂଶ୍ଚିନ୍ତ୍ୟଂ ବଳସହିତୈରନେକଧା ସ୍ୱମ୍ ।୪।

ଇତି ଶ୍ରୀ ବରାହ ମିହିରକୃତେ ବୃହଜ୍ଜାତକେ କର୍ମାଜୀବୋ
ନାମ ଦଶମୋଽଧ୍ୟାୟଃ ।।

ଲଗ୍ନ ଓ ଚନ୍ଦ୍ରର ଦଶମସ୍ଥିତ ଗ୍ରହ କିମ୍ବା ଲଗ୍ନ, ଚନ୍ଦ୍ର ତଥା ରବିର ଦଶମ ସ୍ଥାନର ଅଧିପତି ଗ୍ରହ ଯେଉଁ ଗ୍ରହମାନଙ୍କର ନବାଂଶରେ ଥିବେ ସେହି ଗ୍ରହମାନେ ଯଦି ମିତ୍ର ଗୃହରେ ଥିବେ ତେବେ ନିଜର ଦଶା ତଥା ଅନ୍ତର୍ଦଶାରେ ମିତ୍ର ଦ୍ୱାରା, ଶତ୍ରୁ ଗୃହରେ ଥିଲେ ଶତ୍ରୁ ଦ୍ୱାରା ଓ ସମଗୃହରେ ଥିଲେ ନିଜ ବ୍ୟକ୍ତିମାନଙ୍କର ବା ନିଜ ଦ୍ୱାରା ଧନୋପାର୍ଜନ ହୁଏ ।

ଏହି ଧନଯୋଗ କର୍ତ୍ତା ରବି ଉଚ୍ଚରେ ଥିଲେ ଓ ବଳଯୁକ୍ତ ହୋଇଥିଲେ ନିଜର ବାହୁବଳରେ ଧନାର୍ଜନ ହୁଏ ।

ଶୁଭଗ୍ରହମାନେ ବଳବାନ୍ ହୋଇ ଏକାଦଶ, ଲଗ୍ନ, ଦ୍ୱିତୀୟରେ ଥିଲେ ଜାତକ ବହୁପ୍ରକାର ଉପାୟରେ ଧନାର୍ଜନ କରିଥାନ୍ତି ।୪।

ଦ୍ର:—ଆଜି କାଲି ବୃତ୍ତିସଂଖ୍ୟା ବହୁତ, ଗ୍ରନ୍ଥକାର ପ୍ରତ୍ୟେକ ଗ୍ରହର ଲକ୍ଷଣକୁ ଧରି କେତୋଟି ବୃତ୍ତିର ନିର୍ଦ୍ଦେଶ ଦେଇଛନ୍ତି । ସେଗୁଡ଼ିକର ବହୁ-ବିସ୍ତୃତ କରିଯାଇ ପାରେ । ଉଦାହରଣ ସ୍ୱରୂପ ଚନ୍ଦ୍ର ଜଳଜ ଦ୍ରବ୍ୟ ବ୍ୟବସାୟରୁ ଧନ ଦିଏ । ଏଥିରୁ ମତ୍ସ୍ୟ ବିଭାଗ, ଲବଣ ବିଭାଗ, ନୌବିଭାଗ, ଏବଂ ଚୂନ-ଗୋଡ଼, ଶିପ, ଶାମୁକାଠାରୁ ଆରମ୍ଭ କରି ମୁକ୍ତା ପର୍ଯ୍ୟନ୍ତ ସବୁ ରହିଲା । ଅତଏବ ଗ୍ରନ୍ଥକାରଙ୍କ ମୂଳାର୍ଥ ଗ୍ରହଣ କରି ସର୍ବତ୍ର ଏପରି ବିସ୍ତୃତ ଘଟାଇ ପ୍ରତିଷ୍ଠିତ ବିଭାଗମାନଙ୍କୁ ତଥା ବ୍ୟବସାୟକୁ ଧରି ବୃତ୍ତି ନିଷ୍ଟୟ କରିବେ ।

ଶ୍ରୀ ବରାହ ମିହିର କୃତ ବୃହଜ୍ଜାତକ ଗ୍ରନ୍ଥର କର୍ମାଜୀବ ନାମକ
ଦଶମ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

## ରାଜଯୋଗାଧ୍ୟାୟ ଏକାଦଶଃ

### ଯବନାଚାର୍ଯ୍ୟ ଓ ଜୀବ ଶର୍ମ୍ମାଙ୍କ ମତରେ ରାଜଯୋଗ

ପ୍ରାହୁର୍ଯବନାଃ ସ୍ୱତୁଙ୍ଗଗୈଃ କ୍ରୂରୈଃ କ୍ରୂରମତିର୍ମହୀପତିଃ ।
କ୍ରୂରୈସ୍ତୁ ନ ଜୀବଶର୍ମଣଃ ପକ୍ଷେ କ୍ଷିତ୍ୟଧିପଃ ପ୍ରଜାୟତେ ।୧।

ଯବନେଶ୍ୱରାଦି କହନ୍ତି ଯେ ପାପଗ୍ରହ ମାନେ ଉଚ୍ଚ ସ୍ଥାନରେ ଥିଲେ ଜାତକ କ୍ରୂରମତି ରାଜା ହୁଏ । ଶୁଭଗ୍ରହମାନେ ଉଚ୍ଚସ୍ଥାନରେ ଥିଲେ ଜାତକ

ଶୁଭବୃଦ୍ଧି ଯୁକ୍ତ ରଜାହୁଏ । ଜୀବଶର୍ମା କହନ୍ତି ପାପଗ୍ରହମାନେ ଉଚ୍ଚରେ ଥିଲେ ମୁଦ୍ଧା ଜାତକ ରଜାହୋଇ ନପାରେ, କେବଳ ଧନୀହୁଏ ଓ କ୍ରୂରମତି ହୁଏ ।

ଶୁଭାଶୁଭ ଉଭୟ ପ୍ରକାର ଗ୍ରହ ସ୍ୱ ସ୍ୱ ଉଚ୍ଚସ୍ଥାନରେ ଥିଲେ ଜାତକ ସମବୃଦ୍ଧି ଯୁକ୍ତ ରଜାହୁଏ ।୧।

ବିଭିନ୍ନ ପ୍ରକାର ବତିଶ ରାଜଯୋଗ—

ବକ୍ରାର୍କଜାର୍କଗୁରୁଭିଃ ସକଳୈସ୍ତ୍ରିଭିଶ୍ଚ
ସ୍ୱୋଚ୍ଚେଷୁ ଷୋଡ଼ଶନୃପାଃ କଥିତୈକଲଗ୍ନେ ।
ଦ୍ୱ୍ୟେକାଶ୍ରିତେଷୁ ଚ ତଥୈକତମେ ବିଲଗ୍ନେ
ସ୍ୱକ୍ଷେତ୍ରଗେ ଶଶିନି ଷୋଡ଼ଶଭୂମିପାଃ ସ୍ୟୁଃ ।୨।

ମଙ୍ଗଳ, ଶନି, ରବି, ଗୁରୁ ଏମାନେ ଉଚ୍ଚରେ ଥିବେ, କେହି ଗୋଟିଏ ଲଗ୍ନରେ ଥିବ ତେବେ ୪ଟି ରାଜଯୋଗ ସମ୍ଭବ ହେବ, ଯଥା:—ମକର ଲଗ୍ନ ଲଗ୍ନରେ ମଙ୍ଗଳ, ରବି ମେଷରେ, ବୃହସ୍ପତି କର୍କଟରେ, ଶନି ତୁଳାରେ ତେବେ ଗୋଟିଏ ରାଜଯୋଗ । ସେହିଭଳି ମେଷଲଗ୍ନ, ଲଗ୍ନରେ ରବି, କର୍କଟରେ ଗୁରୁ, ତୁଳାରେ ଶନି, ମକରରେ ମଙ୍ଗଳ, ଏହା ଦ୍ୱିତୀୟ ରାଜଯୋଗ । ତୁଳାଲଗ୍ନ ଲଗ୍ନରେ ଶନି, ମକରରେ ମଙ୍ଗଳ, ମେଷରେ ରବି, କର୍କଟରେ ଗୁରୁ ତୃତୀୟ ରାଜଯୋଗ । କର୍କଟ ଲଗ୍ନ, ଲଗ୍ନରେ ଗୁରୁ, ତୁଳାରେ ଶନି, ମକରରେ ମଙ୍ଗଳ ଓ ମେଷରେ ରବି ଏହା ଚତୁର୍ଥ ରାଜଯୋଗ ।

ଏଥିରୁ ୩ଟି ଗ୍ରହ ଉଚ୍ଚରେ ଥିଲେ ଓ ଗୋଟିଏ ଗ୍ରହ ଲଗ୍ନଗତ ହେଲେ ବିଭିନ୍ନ ବାରଟି ରାଜଯୋଗ ହେବ ।

ମନେକର ରବି, ଗୁରୁ, ଶନି ଯଥାକ୍ରମେ ମେଷ, କର୍କଟ ଓ ତୁଳାରେ ଅଛନ୍ତି, ମେଷଲଗ୍ନ ହେଲେ ପ୍ରଥମ ରାଜଯୋଗ, କର୍କଟଲଗ୍ନ ହେଲେ ଦ୍ୱିତୀୟ ରାଜଯୋଗ, ତୁଳାଲଗ୍ନ ହେଲେ ତୃତୀୟ ରାଜଯୋଗ ହେବ ।

ଏହିଭଳି ରବି ମେଷରେ, ଗୁରୁ କର୍କଟରେ ଓ ମଙ୍ଗଳ ମକରରେ ଅଛନ୍ତି, ତେବେ ମେଷଲଗ୍ନ ହେଲେ ପ୍ରଥମ, କର୍କଟ ଲଗ୍ନ ହେଲେ ଦ୍ୱିତୀୟ ଓ ମକର ଲଗ୍ନ ହେଲେ ତୃତୀୟ ରାଜଯୋଗ ହେବ ।

ରବି ମେଷରେ, ମଙ୍ଗଳ ମକରରେ ଓ ଶନି ତୁଳାରେ ଅଛନ୍ତି, ତେବେ ମେଷଲଗ୍ନ ହେଲେ ପ୍ରଥମ ରାଜଯୋଗ, ମକର ଲଗ୍ନହେଲେ ଦ୍ୱିତୀୟ ଓ ତୁଳାଲଗ୍ନ ହେଲେ ତୃତୀୟ ରାଜଯୋଗହେବ ।

ଏହି ଭଳି ଗୁରୁ କର୍କଟରେ, ଶନି ତୁଳାରେ ଓ ମଙ୍ଗଳ ମକରରେ ରହିଲେ କର୍କଟ ଲଗ୍ନରେ ପ୍ରଥମ, ତୁଳା ଲଗ୍ନହେଲେ ଦ୍ୱିତୀୟ ଓ ମକର ଲଗ୍ନ ହେଲେ ତୃତୀୟ ରାଜଯୋଗ ହେବ ।

ଏହିଭଳି ପୂର୍ବୋକ୍ତ ଗ୍ରହ ଓ ପରେ ଦର୍ଶାଯିବା ବାର ମିଶି ଷୋଡ଼ଶ ରାଜଯୋଗ ହେଲା ।

ପୂର୍ବୋକ୍ତ ଗ୍ରହମାନଙ୍କରୁ ଦୁଇଟି ଗ୍ରହ ଉଚ୍ଚରେ ଥିବେ । ସେଥିରୁ ଗୋଟିଏ ଲଗ୍ନରେ ଥିଲେ ଓ ଚନ୍ଦ୍ର ସ୍ୱଗୃହରେ ଥିଲେ ବାରଟି ରାଜଯୋଗ ହେବ ।

ଯଥା:—ମେଷଲଗ୍ନ, ଲଗ୍ନରେ ରବି, ମକରରେ ମଙ୍ଗଳ, କର୍କଟରେ ଚନ୍ଦ୍ର ତେବେ ପ୍ରଥମ ରାଜଯୋଗ; ମକରଲଗ୍ନ, ଲଗ୍ନରେ ମଙ୍ଗଳ, ମେଷରେ ରବି, କର୍କଟରେ ଚନ୍ଦ୍ର ତେବେ ଏହା ଦ୍ୱିତୀୟ ରାଜଯୋଗ; ମେଷଲଗ୍ନ, ଲଗ୍ନରେ ରବି, ତୁଳାରେ ଶନି ଓ କର୍କଟରେ ଚନ୍ଦ୍ର ଏହା ତୃତୀୟ ରାଜଯୋଗ; ତୁଳାଲଗ୍ନ, ଲଗ୍ନରେ ଶନି, ମେଷରେ ରବି ଓ କର୍କଟରେ ଚନ୍ଦ୍ର ଏହା ଚତୁର୍ଥ ରାଜଯୋଗ; ମେଷଲଗ୍ନ ଲଗ୍ନରେ ରବି, କର୍କଟରେ ବୃହସ୍ପତି ଓ ଚନ୍ଦ୍ର—ଏହା ପଞ୍ଚମ ରାଜଯୋଗ; କର୍କଟଲଗ୍ନ, ଲଗ୍ନରେ ଗୁରୁ ଓ ଚନ୍ଦ୍ର, ରବି ମେଷରେ—ଏହା ଷଷ୍ଠ ରାଜଯୋଗ; ମକର ଲଗ୍ନ, ଲଗ୍ନରେ ମଙ୍ଗଳ, ଶନି ତୁଳାରେ ଓ ଚନ୍ଦ୍ର କର୍କଟରେ ଏହା ସପ୍ତମ ରାଜଯୋଗ; ତୁଳାଲଗ୍ନ, ଶନି ଲଗ୍ନରେ, ମଙ୍ଗଳ ମକରରେ, ଚନ୍ଦ୍ର କର୍କଟରେ ଏହା ଅଷ୍ଟମ ରାଜଯୋଗ; ମକର ଲଗ୍ନ ଲଗ୍ନରେ ମଙ୍ଗଳ, ଗୁରୁ କର୍କଟରେ ଚନ୍ଦ୍ର ସହିତ ଥିଲେ ନବମ ରାଜଯୋଗ; କର୍କଟଲଗ୍ନ, ଲଗ୍ନରେ ଗୁରୁ, ମକରରେ ମଙ୍ଗଳ, କର୍କଟରେ ଚନ୍ଦ୍ର—ଦଶମ ରାଜଯୋଗ । ତୁଳାଲଗ୍ନ, ଶନି ତୁଳାରେ, ବୃହସ୍ପତି କର୍କଟରେ, ଚନ୍ଦ୍ର ସହିତ ଥିଲେ ଏକାଦଶ ରାଜଯୋଗ । କର୍କଟ ଲଗ୍ନ, ଲଗ୍ନରେ ଗୁରୁ ଓ ଚନ୍ଦ୍ର, ଶନି ତୁଳାରେ ଥିଲେ ଦ୍ୱାଦଶ ରାଜଯୋଗ ହେଲା ।

ପୂର୍ବୋକ୍ତ ଷୋଡ଼ଶ ସହିତ ଏ ଦ୍ୱାଦଶ ମିଶି ଅଠେଇଶିଟି ରାଜଯୋଗ ହେଲା ।'

ମକର ଲଗ୍ନ, ଲଗ୍ନରେ ମଙ୍ଗଳ, କର୍କଟରେ ଚନ୍ଦ୍ର ପ୍ରଥମ; ତୁଳାଲଗ୍ନ, ଲଗ୍ନରେ ଶନି, କର୍କଟରେ ଚନ୍ଦ୍ର ଦ୍ୱିତୀୟ; ମେଷଲଗ୍ନ, ଲଗ୍ନରେ ରବି, କର୍କଟରେ ଚନ୍ଦ୍ର ତୃତୀୟ; କର୍କଟଲଗ୍ନ, ଲଗ୍ନରେ ଗୁରୁ ଓ ଚନ୍ଦ୍ର ହେଲେ ଚତୁର୍ଥ ରାଜଯୋଗ ହେଲା ।

ପୂର୍ବୋକ୍ତ ଅଠେଇଶି ସହିତ ଏଗୁରତି ମିଶି ବତିଶିଟି ରାଜଯୋଗ ହେଲ ।୨।

ଦ୍ର:—ଗୁରତି ଗ୍ରହ ହେତୁକ ଘଟିତ ରାଜଯୋଗ ଉତ୍ତମ ଶ୍ରେଣୀସ୍ଥ ତନୋଟି ଗ୍ରହ ହେତୁକ ଘଟିତ ରାଜଯୋଗ ମଧ୍ୟମ ଶ୍ରେଣୀସ୍ଥ ଓ ଦୁଇଟି ଗ୍ରହ ହେତୁକ ଘଟିତ ରାଜଯୋଗ ସାମାନ୍ୟ ଶ୍ରେଣୀର । ଶେଷୋକ୍ତ ଗୋଟିଏ ଗ୍ରହ ଉଚରେ ଥିବା ହେତୁକ ଯେ ଗୁରେଟି ରାଜଯୋଗ ଏହା କୁଳାନୁରୂପ ପଦମର୍ଯ୍ୟାଦାପ୍ରଦ ଭିନ୍ନ ଏମାନେ ରାଜଯୋଗ ପ୍ରଦ ନହେବା ପ୍ରତ୍ୟକ୍ଷସିଦ୍ଧ ଅଟେ ।

ମହାମତ ଭଟ୍ଟୋତ୍ପଳ ତଥା ଅନ୍ୟାନ୍ୟ ଟୀକାକାର ମାନେ ଏସମ୍ବନ୍ଧେ କିଛି ନକହି ଥିଲେହେଁ ମୋର ଅନୁଭୂତରୁ ମୁଁ ଦେଖୁଛି—ଉଚସ୍ଥ ଗ୍ରହମାନେ ସେମାନଙ୍କର ଉଚ୍ଚାଂଶରେ ନଥିଲେ ରାଜଯୋଗ ଘଟାଇ ନପାରି ସାମାନ୍ୟ ଫଳମାତ୍ର ଦେଉଛନ୍ତି ।

ରାଜଯୋଗ କହିଲେ ଯେ କେବଳ ରାଜପଦ ଲାଭହେବ ତାହାନୁହେ, ଲୋକରେ ବିଶେଷ ଖ୍ୟାତ ସହିତ ଧନାର୍ଜନ, ଉଚ ପଦଲାଭ, ନୀଚପଦରୁ ଅତ୍ୟୁଚ ପଦକୁ ଉନ୍ନତ, ବଶିଷ୍ଟ ଅବସ୍ଥାର ଫଳରେ 'ନାମ' କରିବା ମଧ୍ୟ ରାଜଯୋଗର ଅନ୍ତର୍ଗତ ଅଟେ ।

ମହାମତ ବରାହ ଏହି ଗ୍ରନ୍ଥରେ ରାହୁ ବା କେତୁଙ୍କର କୌଣସି ଫଳ ଦେଇନାହାନ୍ତି । ତେଣୁ ଏ ଗ୍ରନ୍ଥରେ ସମସ୍ତ ଗ୍ରହ ବୋଲି ଉଲ୍ଲେଖ କରାଯିବା ସ୍ଥଳେ ରବ୍ୟାଦ ସାତଟି ଗ୍ରହଙ୍କୁ ମାତ୍ର ଗ୍ରହଣ କରିବାକୁ ହେବ ।

## ଗ୍ରହଦୃଷ୍ଟି ହେତୁକ ରାଜଯୋଗ

ବର୍ଗୋତ୍ତମଗତେ ଲଗ୍ନେ ଚନ୍ଦ୍ରେ ବା ଚନ୍ଦ୍ରବର୍ଜିତୈଃ
ଚତୁରାଦ୍ୟୈର୍ଗ୍ରହୈର୍ଦୃଷ୍ଟେ ନୃପା ଦ୍ୱାବିଂଶତିଃ ସ୍ମୃତାଃ ।୩।

ଲଗ୍ନ ବର୍ଗୋତ୍ତମରେ ଥିବ, ଚନ୍ଦ୍ର ଛଡ଼ା ଅନ୍ୟଗୁରି, ପାଞ୍ଚ ବା ଛ ଗ୍ରହ ଲଗ୍ନକୁ ଦେଖୁଥିବେ, ତେବେ ବଭିନ୍ନ ବାଇଶଟି ରାଜଯୋଗ ହେବ ।

ଚନ୍ଦ୍ର ବର୍ଗୋତ୍ତମରେ ଥିବେ, ଗୁରି, ପାଞ୍ଚ ବା ଛ ଗ୍ରହ ଚନ୍ଦ୍ରକୁ ଦେଖୁଥିଲେ ଅନ୍ୟ ବାଇଶି ପ୍ରକାର ରାଜଯୋଗ ସମ୍ଭବ ହେବ ଏପରି ମୋଟରେ ୪୪ ରାଜଯୋଗ ହେଲା, ବର୍ଗୋତ୍ତମ କହିଲେ ଯେ ରାଶି ଲଗ୍ନ ହୋଇଥିବ, ସେହି ରାଶିର ନବାଂଶ ହେଲେ ବର୍ଗୋତ୍ତମ ହେବ, ମେଷ ଲଗ୍ନର

ମେଷ ନବାଂଶ ବର୍ଗୋତ୍ତମ ଏହିଭଳି ସବୁରାଶିର ଜାଣିବେ, ଚର ରାଶିର ପ୍ରଥମ, ସ୍ଥିରରାଶିର ପଞ୍ଚମ, ଦ୍ୱାତ୍ମିକ ରାଶିର ନବମ ନବାଂଶ ବର୍ଗୋତ୍ତମ (ପ୍ରଥମ ଅଧ୍ୟାୟର ଚତୁର୍ଦ୍ଦଶ ଶ୍ଳୋକ ଦେଖନ୍ତୁ) ।୩।

ଦ୍ର:—ଲଗ୍ନକୁ ଚନ୍ଦ୍ର ନଦେଖିବା ଉଚିତ ବୋଲି କୁହାଯାଇ ନଥିବାରୁ ଅନ୍ୟ ଗ୍ରହମାନଙ୍କ ସହିତ ଚନ୍ଦ୍ର ଯଦି ଦେଖେ ତେବେ ଏଯୋଗ ନାଶ ହେବ ନାହିଁ, ଅର୍ଥାତ୍ ଚନ୍ଦ୍ର ଦେଖିବା ବା ନଦେଖିବାରେ କିଛି ଯାଏ ଆସେନାହିଁ ।

## ପାଞ୍ଚପ୍ରକାର ବିଭିନ୍ନ ରାଜଯୋଗ

ଯମେ କୁମ୍ଭେର୍କେଜେ ଗବି ଶଶଧର ତ୍ରିରେବତନୁଗେ—
ନୃଯୁକ୍ ସିଂହାଲିସ୍ଥୈଃ ଶଶିଜଗୁରୁବକ୍ରୈ ନୃପତୟଃ
ଯମେନ୍ଦୂ ତୁଙ୍ଗେଙ୍ଗେ ସବିତୃଶଶିଜୌ ଷଷ୍ଠଭବନେ
ତୁଳାଜେନ୍ଦୁକ୍ଷେତ୍ରୈଃ ସସିତକୁଜଜୀବୈସ୍ତୁ ନରପୌ ।୪।

ଶନି କୁମ୍ଭରେ, ରବି ମେଷରେ, ଚନ୍ଦ୍ର ବୃଷରେ ଥିବେ, ଏଥିରୁ ଗୋଟିଏ ରାଶିଲଗ୍ନ ହେଲେ ବିଭିନ୍ନ ୩ ପ୍ରକାର ରାଜଯୋଗ ହୁଏ । ଏହି ଯୋଗରେ ମିଥୁନରେ ବୁଧ, ସିଂହରେ ଗୁରୁ ଓ ବୃଶ୍ଚିକରେ ମଙ୍ଗଳ ଥିବାକୁ ହେବ ।

ମନେକର କୁମ୍ଭଲଗ୍ନ, ଶନି ଲଗ୍ନରେ, ରବି ମେଷରେ, ଚନ୍ଦ୍ର ବୃଷରେ, ବୁଧ ମିଥୁନରେ, ମଙ୍ଗଳ ବୃଶ୍ଚିକରେ ଥିଲେ ଗୋଟିଏ ରାଜଯୋଗ ହେବ ।

ସେହିପରି ମେଷଲଗ୍ନ ଓ ଗ୍ରହସ୍ଥିତି ଏହିଭଳି ସମସ୍ତ ଥିଲେ ଦ୍ୱିତୀୟ ରାଜଯୋଗ । ଠିକ୍ ଗ୍ରହସ୍ଥିତି ଏଭଳି ଥାଇ ବୃଷଲଗ୍ନ ହେଲେ ତୃତୀୟ ରାଜଯୋଗ ହେବ ।୪।

ଦ୍ର:—ବୁଧ ରବିଠାରୁ ୨୮ ଅଂଶରୁ ଅଧିକ ଦୂରକୁ ଯାଇ ନପାରେ । ତେଣୁ ବୁଧ ମିଥୁନରେ ନଥିଲେ ମଧ୍ୟ ଏ ଯୋଗହେବ ।

ଶନି ତୁଳାରେ, ଚନ୍ଦ୍ର ବୃଷରେ, କନ୍ୟାରେ ରବି ଓ ବୁଧ, ତୁଳାରେଶୁକ୍ର, ମେଷରେ ମଙ୍ଗଳ, କର୍କଟରେ ବୃହସ୍ପତି ଥିଲେ ତୁଳାଲଗ୍ନ ହେଲେ ଗୋଟିଏ ଓ ବୃଷଲଗ୍ନ ହେଲେ ଗୋଟିଏ ଏପରି ଦୁଇଟି ରାଜଯୋଗ ସମ୍ଭବ ହେବ । ମୋଟ ଏହି ଶ୍ଳୋକରେ ୫ଟି ରାଜଯୋଗ ଉଲ୍ଲେଖ କରାଗଲା ।୪।

## ତିନିପ୍ରକାର ରାଜଯୋଗ

କୁଜେତୁଙ୍ଗେର୍କେନ୍ଦ୍ୱୋର୍ଦ୍ଧନୁଷିଯମଲଗ୍ନେ ଚ କୁପତିଃ
ପତିର୍ଭୂମେସ୍ତାନ୍ୟଃ କ୍ଷିତିସୁତବିଲଗ୍ନେ ସଶଶିନି ।

ସଚନ୍ଦ୍ରେ ସୌରେଽସ୍ତେ ସୁରପତିଗୁରୌ ଚାପଧରଗେ
ସ୍ୱତୁଙ୍ଗସ୍ଥେ ଭାନାବୁଦୟମୁପଯାତେ କ୍ଷିତିପତିଃ ।୫।

ମଙ୍ଗଳ ମକରରେ, ରବି ଓ ଚନ୍ଦ୍ର ଉଭୟେ ଧନୁରେ, ଶନି ମକରରେ ତଥା ଲଗ୍ନରେ ଥିଲେ ଜାତକ ରାଜା ହୁଏ । ମଙ୍ଗଳ ମକରରେ ତଥା ଲଗ୍ନରେ, ଚନ୍ଦ୍ର ମକରରେ ଓ ରବି ଧନୁରେ ଥିଲେ ମଧ୍ୟ ରାଜଯୋଗ ହେବ । ମେଷଲଗ୍ନ ସେଥିରେ ମଙ୍ଗଳ, ଚନ୍ଦ୍ର ତା ସହିତ ଥିବ, ଶନି ତୁଳାରେ, ଗୁରୁ ଧନୁରେ ଥିଲେ ରାଜଯୋଗ ହେବ । ଏ ସମସ୍ତ ୩ ପ୍ରକାର ରାଜଯୋଗ ହେଲା ।୫।

## ଦୁଇପ୍ରକାର ରାଜଯୋଗ

ବୃଷେ ସେନ୍ଦୌ ଲଗ୍ନେ ସବିତୃଗୁରୁତୀକ୍ଷ୍ଣାଂଶୁତନୟୈଃ
ସୁହୃଜ୍ଜାୟାଖସ୍ଥୈର୍ଭବତି ନିୟମାନ୍ମାନବ ପତିଃ ।
ମୃଗେ ମନ୍ଦେ ଲଗ୍ନେ ସହଜରିପୁଧର୍ମବ୍ୟୟଗତୈଃ
ଶଶାଙ୍କାଦ୍ୟୈଃ ଖ୍ୟାତଃ ପୃଥୁଗୁଣଯଶାଃ ପୁଙ୍ଗଲପତିଃ ।୬।

ବୃଷରେ ଚନ୍ଦ୍ର ଓ ସେଥିରେ ଲଗ୍ନଥିଲେ, ସିଂହରେ ରବି, ଗୁରୁ ତୁଳାରେ ଓ ଶନି କୁମ୍ଭରେ ଥିଲେ ଜାତକ ନିଶ୍ଚୟ ରାଜ୍ୟ ଲାଭ କରେ ।

ମକର ଲଗ୍ନ ତହିଁରେ ଶନି, ଚନ୍ଦ୍ର ମୀନରେ, ମଙ୍ଗଳ ମିଥୁନରେ, ବୁଧ କନ୍ୟାରେ, ଗୁରୁ ଧନୁରେ ଥିଲେ ଜାତକ ଉତ୍ତମ ଗୁଣଯୁକ୍ତ ରାଜା ହୁଏ ।୬।

## ତିନପ୍ରକାର ରାଜଯୋଗ

ହଯେ ସେନ୍ଦୌ ଜୀବେ ମୃଗମୁଖଗତେ ଭୂମିତନୟେ
ସ୍ୱତୁଙ୍ଗସ୍ଥୌ ଲଗ୍ନେ ଭୃଗୁଜଶଶିଜାବତ୍ର ନୃପତୀ ।
ସୁତସ୍ଥୌ ବକ୍ରାର୍କୀ ଗୁରୁଶଶିସିତାଶ୍ଚାପି ହିବୁକେ
ବୁଧେ କନ୍ୟାଲଗ୍ନେ ଭବତି ହି ନୃପୋଽନ୍ୟୋଽପିଗୁଣବାନ୍ ।୭।

ଚନ୍ଦ୍ର ସହିତ ଗୁରୁ ଧନୁରେ ଥିବେ, ମଙ୍ଗଳ ମକରର ୧୫ ଅଂଶ ମଧ୍ୟରେ ଥିବ, ମୀନ ବା କନ୍ୟା ଲଗ୍ନ ହୋଇ ଯଥାକ୍ରମେ ଶୁକ୍ର ବା ବୁଧ ଲଗ୍ନରେ ଥିଲେ ମୀନ ଲଗ୍ନକୁ ଗୋଟିଏ ଓ କନ୍ୟା ଲଗ୍ନକୁ ଅପରଟି ଏଭଳି ଦୁଇଟି ରାଜଯୋଗ ହେବ ।

କନ୍ୟା ଲଗ୍ନ, ପଞ୍ଚମରେ ମଙ୍ଗଳ ଓ ଶନି, ଗୁରୁ, ଚନ୍ଦ୍ର, ଶୁକ୍ର ଚତୁର୍ଥରେ ଥିବେ ଓ ଲଗ୍ନରେ ବୁଧ ଥିଲେ ଜାତକ ଗୁଣବାନ୍ ରାଜା ହୁଏ ।୭।

ଅନ୍ୟପ୍ରକାର ରାଜଯୋଗ

ଝଷେଷସେନ୍ଦ୍ରୌଲଗ୍ନେ ଘଟମୃଗମୃଗେନ୍ଦ୍ରେଷୁ ସହିତୈ-
ର୍ଯମାରାର୍କୌର୍ଯୋଭୂସ୍ତ ଖଲୁ ମନୁଜଃଶାସ୍ତି ବସୁଧାମ୍ ।
ଅଜେ ସାରେ ମୂର୍ତ୍ତୌ ଶଶିଗୃହଗତେ ଚାମରଗୁରୌ
ସୁରେଜ୍ୟେ ବା ଲଗ୍ନେ ଧରଣିପତିରନ୍ୟୋପି ଗୁଣବାନ୍ ।୮।

ମୀନ ଲଗ୍ନସ୍ଥ ଚନ୍ଦ୍ର, ଶନି କୁମ୍ଭରେ, ମଙ୍ଗଳ ମକରରେ, ରବି ସିଂହରେ ଥିଲେ ଜାତକ ରାଜ୍ୟଶାସନ କରେ । ମେଷ ଲଗ୍ନରେ ମଙ୍ଗଳ, ବୃହସ୍ପତି କର୍କଟରେ ଥିଲେ ରାଜଯୋଗ ହୁଏ । କର୍କଟ ଲଗ୍ନରେ ଗୁରୁ, ମେଷରେ ମଙ୍ଗଳ ଥିଲେ ଜାତକ ଗୁଣବାନ୍ ରାଜା ହୁଏ ।୮।

ଅନ୍ୟପ୍ରକାର ରାଜଯୋଗ

କର୍କିଣି ଲଗ୍ନେ ତସ୍ଥେ ଜୀବେ ଚନ୍ଦ୍ରସିତଜ୍ଞୈ ରାୟପ୍ରାପ୍ତୈଃ ।
ମେଷଗତେଽର୍କେ ଜାତଂ ବନ୍ଦ୍ୟାଦ୍ ବିକ୍ରମଯୁକ୍ତଂ ପୃଥ୍ୱୀନାଥମ୍ ।୯।

କର୍କଟ ଲଗ୍ନ ସେଥିରେ ଗୁରୁ; ଚନ୍ଦ୍ର, ଶୁକ୍ର ଓ ବୁଧ ବୃଷ ରାଶିରେ, ରବି ମେଷରେ ଥିଲେ, ଜାତକ ପରାକ୍ରମ ଯୁକ୍ତ ରାଜା ହୁଏ ।୯।

ମୃଗମୁଖେଽର୍କତନୟସ୍ତନୁସଂସ୍ଥଃ କ୍ରିୟକୁଳୀରହରୟୋଃଧିପଯୁକ୍ତାଃ ।
ମିଥୁନତୌଲିସହିତୌ ବୁଧଶୁକ୍ରୌ ଯଦି ତଦା ପୃଥୁଯଶାଃ ପୃଥିବୀଶଃ ।୧୦।

ଶନି ମକର ଲଗ୍ନରେ, ମଙ୍ଗଳ ମେଷରେ, ଚନ୍ଦ୍ର କର୍କଟରେ, ରବି ସିଂହରେ, ବୁଧ ମିଥୁନରେ ଓ ଶୁକ୍ର ତୁଳାରେ ଥିଲେ ଜାତକ ଗୁଣବାନ୍ ରାଜା ହୁଏ ।୧୦।

ଦ୍ର:—ବୁଧ ମିଥୁନରେ ଓ ଶୁକ୍ର ତୁଳାରେ ରହିବା ଅସମ୍ଭବ କିନ୍ତୁ ମହାମତି ବରାହ ଏଭଳି ଅସମ୍ଭବ ଗ୍ରହାବସ୍ଥିତି କିପରି ଦର୍ଶାଇଛନ୍ତି ତାହା ଆଶ୍ଚର୍ଯ୍ୟ କର । ବୋଧହୁଏ ବହୁ ହଜାର ବର୍ଷ ଆଗେ ଗ୍ରହପରିସ୍ଥିତି ଏପରି ଘଟୁଥିଲା । ତେଣୁ ପ୍ରାଚୀନ ଋଷିମାନଙ୍କ ମତର ବଶବର୍ତ୍ତୀ ହୋଇ ଗ୍ରନ୍ଥକର୍ତ୍ତା ମଧ୍ୟ ତାହା ଲେଖିଗଲେ । ବରାହଙ୍କ ପୂର୍ବର ମନୀଷୀମାନେ ଏଭଳି ସଂଯୋଗ ସବୁ ଲେଖିଛନ୍ତି । ଯାହାହେଉ ବର୍ତ୍ତମାନ ଯୁଗରେ ରବିଠାରୁ ବୁଧର ମହତ୍ତମ ଦୂରତା ୨୮ ଅଂଶ ଓ ରବିଠାରୁ ଶୁକ୍ରର ମହତ୍ତମ ଦୂରତା ମାତ୍ର ୪୭ ଅଂଶ । ଏଥିରୁ ଜଣାଯାଉଛି ଯେ ଶୁକ୍ର ବୁଧଠାରୁ ୨୮+୪୭=୭୫ ଅଂଶଠାରୁ ଅଧିକ

ତୁଙ୍ଗରେ ରହି ନପାରେ । ଚତୁର୍ଥ ଶ୍ଳୋକରେ ମଧ୍ୟ ରବି ମେଷରେ, ବୁଧ ମିଥୁନରେ ରହିବା ଉକ୍ତ ଅଛି, ତାହା ସମ୍ଭବ ନୁହେ ବୋଲି ଲେଖା ଯାଇଅଛି ।

## ଅନ୍ୟପ୍ରକାର ରାଜଯୋଗ

ସ୍ୱୋଚ୍ଚସଂସ୍ଥେ ବୁଧେ ଲଗ୍ନେ ଭୃଗୌ ମେଷୂରଣାଶ୍ରିତେ ।
ସଜୀବେସ୍ତେ ନିଶାନାଥେ ରାଜା ମନ୍ଦାରୟୋଃ ସୁତେ ।୧୧।

ବୁଧ କନ୍ୟାଲଗ୍ନରେ, ଶୁକ୍ର ମିଥୁନରେ, ବୃହସ୍ପତି ଓ ଚନ୍ଦ୍ର ମୀନରେ, ଶନି ଓ ମଙ୍ଗଲ ମକରରେ ଥିଲେ ରାଜଯୋଗ ହୁଏ ।୧୧।

## ରାଜଯୋଗର ଇତର ବିଶେଷ ବିଚାର

ଅପି ଖଲକୁଲଜାତା ମାନବା ରାଜ୍ୟଭାଜଃ
କିମୁତନୃପକୁଲୋତ୍ଥାଃ ପ୍ରୋକ୍ତଭୂପାଲଯୋଗୈଃ ।
ନୃପତିକୁଲସମୁତ୍ଥାଃ ପାର୍ଥିବା ବକ୍ଷ୍ୟମାଣୈ-
ର୍ଭବତି ନୃପତିତୁଲ୍ୟସ୍ତେଷ୍ୱଭୂପାଲପୁତ୍ରଃ ।୧୨।

ପୂର୍ବୋକ୍ତ, ସମସ୍ତ ରାଜଯୋଗମାନଙ୍କରେ ଜାତ ହୋଇଥିଲେ ଯେ କୌଣସି ବ୍ୟକ୍ତି ରାଜ୍ୟଲାଭ କରେ, ରାଜକୁଲଜ ହେଲେତ ନିଶ୍ଚୟ ରାଜା ହୁଏ ଏଥିରେ ସନ୍ଦେହ ନାହିଁ । ଏଣିକି ଯେଉଁ ରାଜଯୋଗ ସବୁ କୁହାଯିବ ସେଗୁଡିକ ରାଜବଂଶଜ ହେଲେ ରାଜଯୋଗପ୍ରଦ ହେବେ ଓ ଅନ୍ୟବଂଶଜ ହେଲେ ରାଜତୁଲ୍ୟ ଧନ ସମ୍ପଦ ଭୋଗ ମାନ କରିବେ ।୧୨।

## ବିଭିନ୍ନ ପ୍ରକାର ରାଜଯୋଗ

ଉଚ୍ଚସ୍ୱତ୍ରିକୋଣଗୈର୍ବଲସ୍ଥୈସ୍ତ୍ର୍ୟାଦ୍ୟୈର୍ଭୂପତିବଂଶଜା ନରେନ୍ଦ୍ରାଃ ।
ପଞ୍ଚାଦିଭିରନ୍ୟବଂଶଜାତା ହୀନୈର୍ବିତ୍ତଯୁତା ନ ଭୂମିପାଲାଃ ।୧୩।

ତିନି ଗ୍ରହ ବା ପାଞ୍ଚଗ୍ରହ ଉଚ୍ଚ, ମୂଳ ତ୍ରିକୋଣରେ ଥାଇ ବଲବାନ୍ ହୋଇଥିଲେ ରାଜବଂଶଜ ବ୍ୟକ୍ତି ରାଜା ହେବ । ପାଞ୍ଚରୁ ଅଧିକ ଗ୍ରହ ଉଚ୍ଚ, ମୂଳତ୍ରିକୋଣରେ ଥାଇ ବଲଯୁକ୍ତ ହେଲେ ହୀନବଂଶ ଜାତ ବ୍ୟକ୍ତି ମଧ୍ୟ ରାଜା ହେବ । ଗ୍ରହ ବା ତିନିଗ୍ରହ ଉଚ୍ଚ, ମୂଳତ୍ରିକୋଣରେ ରହି ବଲବାନ୍ ହେଲେ ଅନ୍ୟବଂଶଜମାନେ ଧନବାନ୍ ହେବେ କିନ୍ତୁ ରାଜା ହୋଇ ପାରିବେ ନାହିଁ ।୧୩।

ଲେଖାସ୍ଥେର୍କେଜେନ୍ଦୌ ଲଗ୍ନେ ଭୌମେ ସ୍ୱୋଚ୍ଚେ କୁମ୍ଭେ ମନ୍ଦେ ।
ଚାପପ୍ରାପ୍ତେ ଜୀବେ ରାଜ୍ଞଃ ପୁତ୍ରଂ ବିନ୍ଦ୍ୟାତ୍ପୃଥ୍ୱୀନାଥମ୍ ।୧୪।

ରବି ଓ ଚନ୍ଦ୍ର ମେଷଲଗ୍ନରେ, ମଙ୍ଗଳ ଉଚ୍ଚରେ, ଶନି କୁମ୍ଭରେ, ବୃହସ୍ପତି ଧନୁରାଶିରେ ଥିଲେ ରାଜକୁଳଜ ବ୍ୟକ୍ତି ରାଜା ହେବ । ସୂର୍ଯ୍ୟ ଅର୍ଦ୍ଧୋଦିତ ଅବସ୍ଥାରେ ଥିବା ବେଳେ ଏଯୋଗ ଘଟିବ ।୧୪।

ସ୍ୱର୍କ୍ଷେ ଶୁକ୍ରେ ପାତାଳସ୍ଥେ ଧର୍ମସ୍ଥାନଂ ପ୍ରାପ୍ତେ ଚନ୍ଦ୍ରେ ।
ଦୁଶ୍ଚିକ୍ୟାଙ୍ଗପ୍ରାପ୍ତି ପ୍ରାପ୍ତୈଃ ଶେଷୈଃର୍ଜାତଃସ୍ୱାମୀଭୂମେଃ ।୧୫।

ସ୍ୱଗୃହରେ ଥିବା ଶୁକ୍ର ଚତୁର୍ଥରେ ଥିବ, ଚନ୍ଦ୍ର ନବମରେ ଥିବ, ଅନ୍ୟାନ୍ୟ ଗ୍ରହମାନେ ତୃତୀୟ, ଲଗ୍ନ ତଥା ଏକାଦଶରେ ଥିଲେ ଜାତକ ରାଜା ହେବ ।୧୫।

ସୌମ୍ୟେ ବୀର୍ଯ୍ୟଯୁତେ ତନୁଯୁକ୍ତେ ବୀର୍ଯ୍ୟାଢ୍ୟେଚଶୁଭେଶୁଭଯାତେ ।
ଧର୍ମାର୍ଥୋପଚୟେଷ୍ୱବଶେଷୈର୍ଧର୍ମାତ୍ମା ନୃପଜଃ ପୃଥିବୀଶଃ ।୧୬।

ବଳବାନ୍ ବୁଧ ଲଗ୍ନରେ, ଶୁଭଗ୍ରହ ନବମରେ ( ପୂର୍ଣ୍ଣଚନ୍ଦ୍ର, ବୃହସ୍ପତି ବା ଶୁକ୍ର ଶୁଭଗ୍ରହ ହେଲେହେଁ – ଶୁକ୍ର ନବମରେ ରହିବା ଅସମ୍ଭବ ହେତୁ କେବଳ ପୂର୍ଣ୍ଣଚନ୍ଦ୍ର ବା ବୃହସ୍ପତି ଉଭୟେ ବା କେହି ଗୋଟିଏ ରହିଲେ ଏ ଯୋଗ ହେବ ) ଅନ୍ୟ ସମସ୍ତେ ନବମ, ଦ୍ୱିତୀୟ, ତୃତୀୟ, ଷଷ୍ଠ, ଦଶମ ଏକାଦଶରେ ଥିଲେ ରାଜପୁତ୍ର ରାଜା ହେବ; ଅନ୍ୟ ବଂଶଜ ହେଲେ ଧନୀ ହେବ ।୧୬।

ବୃଷୋଦୟେ ମୂର୍ତ୍ତିଧନାରିଲାଭଗୈଃ ଶଶାଙ୍କଜୀବାର୍କସୁତାପରୈର୍ନୃପଃ ।
ସୁଖେଗୁରୌଖେଶଶିତୀକ୍ଷ୍ଣଦୀଧିତୀ ଯମୋଦୟେଲାଭଗତୈର୍ନୃପୋପରୈଃ ।୧୭।

ବୃଷଲଗ୍ନ ତହିଁରେ ଚନ୍ଦ୍ର, ଦ୍ୱିତୀୟରେ ବୃହସ୍ପତି, ଷଷ୍ଠରେ ଶନି, ଏକାଦଶରେ ଅନ୍ୟଗ୍ରହମାନେ ଥିଲେ ରାଜଯୋଗ ହେବ ।

ବୃହସ୍ପତି ଚତୁର୍ଥରେ, ଦଶମରେ ରବି ଓ ଚନ୍ଦ୍ର, ଶନି ଲଗ୍ନରେ ଓ ଅନ୍ୟ ଗ୍ରହମାନେ ଏକାଦଶରେ ଥିଲେ ରାଜଯୋଗ ହେବ ।୧୭।

ମେଷୂରଣାସ୍ଥତନୁଗାଃଶଶିମନ୍ଦଜୀବା
ଜ୍ଞାରୌ ଧନେ ସିତରବୀ ହିବୁକେ ନରେନ୍ଦ୍ରମ୍ ।
ବକ୍ରାସିତୌ ଶଶିସୁରେଜ୍ୟସିତାର୍କସୌମ୍ୟା
ହୋରାସୁଖାସ୍ତଶୁଭଖାପ୍ତିଗତାଃ ପ୍ରଜେଶମ୍ ।୧୮।

ଚନ୍ଦ୍ର ଦଶମରେ, ଶନି ଏକାଦଶରେ, ବୃହସ୍ପତି ଲଗ୍ନରେ, ବୁଧ ଓ ମଙ୍ଗଳ ଦ୍ୱିତୀୟରେ, ଶୁକ୍ର ଓ ରବି ଚତୁର୍ଥରେ ଥିଲେ ରାଜଯୋଗ ହେବ ।

ଦ୍ରଃ—ବୁଧ ଦ୍ୱିତୀୟରେ ଓ ରବି ଚତୁର୍ଥରେ ରହିବା ସମ୍ଭବ ନୁହେଁ; ଏହା ଅଗରୁ ବୁଝାଇ ଦିଆଯାଇଅଛି । ଏଠାରେ ରବି ବା ବୁଧ ଉଭୟଙ୍କ ମଧ୍ୟରୁ କେହି ଗୋଟିଏ କଥିତ ସ୍ଥାନରେ ଥିଲେ ମଧ୍ୟ ଏଯୋଗ ହେବ । ମଙ୍ଗଳ ଓ ଶନି ଲଗ୍ନରେ, ଚନ୍ଦ୍ର ଚତୁର୍ଥରେ, ଗୁରୁ ସପ୍ତମରେ, ଶୁକ୍ର ନବମରେ, ରବି ଦଶମରେ, ବୁଧ ଏକାଦଶରେ ଥିଲେ ରାଜକୁଳଜ ରାଜା ହୁଏ, ଅନ୍ୟକୁଳଜ ଧନୀ ହୁଏ ।୧୮।

## ରାଜଯୋଗ ଭୋଗକାଳ ନିରୂପଣ

କର୍ମଲଗ୍ନଯୁତପାକଦଶାୟାଂ ରାଜ୍ୟଲବ୍ଧିରଥ ବା ପ୍ରବଲସ୍ୟ ।
ଶତ୍ରୁନୀଚଗୃହଯାତଦଶାୟାଂ ଛିଦ୍ରସଂଜ୍ଞିତଦଶାପରିକଳ୍ପ୍ୟା ।୧୯।

ରାଜଯୋଗକାରକ ଗ୍ରହମାନଙ୍କ ମଧ୍ୟରୁ ଯେଉଁଗ୍ରହ ଦଶମ ବା ଲଗ୍ନରେ ଥିବ ତାହାର ଦଶାନ୍ତର୍ଦଶାରେ ରାଜ୍ୟଲାଭ ଯୋଗ ଘଟେ । ଦଶମ ଓ ଲଗ୍ନ ଉଭୟ ସ୍ଥାନରେ ଯୋଗକାରକ ଗ୍ରହଥିଲେ ଯେ ବିଶେଷ ବଳଯୁକ୍ତ ତାହାର ଦଶାନ୍ତର୍ଦଶାରେ ଏ ଯୋଗ ଭୋଗ ହେବ । ଉକ୍ତ ଦୁଇ ସ୍ଥାନରେ ଯଦି ଯୋଗକାରକ ଗ୍ରହ ନଥିବେ, ତେବେ ଯୋଗକାରକ ଗ୍ରହମାନଙ୍କ ମଧ୍ୟରେ ଯେ ଗ୍ରହ ସର୍ବାପେକ୍ଷା ବଳୀୟାନ୍ ତାହାର ଦଶାନ୍ତର୍ଦଶାରେ ଯୋଗଫଳ ମିଳିବ ।

ରାଜଯୋଗ ପ୍ରଦ ଗ୍ରହର ଦଶା ଥରେ ଆସିବ କିନ୍ତୁ ତାହାର ଅନ୍ତର୍ଦଶା ଅନେକଥର ଭୋଗ ହୋଇପାରେ । ତେବେ ଏଠାରେ ସଂଶୟ ହେବ ଯେ ସେ କେଉଁକେଉଁବେଳେ ଫଳପ୍ରଦ ହେବ ? ତାହାର ମୀମାଂସା ଏହି ଯେ ସେହି ଅନ୍ତର୍ଦଶା ଭୋଗବେଳେ ଗୋଚରରେ ସେହିଗ୍ରହ ଯଦି ବଳବାନ୍ ହୋଇଥାଏ, ତେବେ ସେ ତାହାର ଅନ୍ତର୍ଦଶାରେ ଯୋଗକାରକ ଫଳପ୍ରଦ ହେବ ।

ଯେଉଁ ଗ୍ରହମାନେ ଶତ୍ରୁଗୃହ ବା ନୀଚରେ ଥିବେ ସେମାନଙ୍କର ଦଶା "ଛିଦ୍ରଦଶା" । ସେହି ମଧ୍ୟରୁ ଯେ ସବୁଠାରୁ ଦୁର୍ବଳ ତାହାର ଦଶାନ୍ତର୍ଦଶାରେ ଜାତକ ଯୋଗଭଙ୍ଗ ହେବ । ଏଥିରେ ରାଜ୍ୟନାଶ, ଧନକ୍ଷୟ ଇତ୍ୟାଦି ଦୁର୍ଯୋଗ ଦେଖାଯିବ ।୧୯।

ଏହିଭଳି ଦୁର୍ଯୋଗ ଆସିବା ଥିଲେ ଜାତକ ଦୈବ ବା ମହତ୍ତ୍ୱବ୍ୟକ୍ତି ତଥା ରାଜାଙ୍କର ଆଶ୍ରୟ ନେଇ ଏହି ଦୁଃସମୟ କଟାଇ ଦେବା ଉଚିତ ।

ମହାମତି ବରାହ ନିଜର ଯୋଗଯାତ୍ରା ଗ୍ରନ୍ଥରେ ଏହି ଛିଦ୍ରଦଶାକୁ ଉଲ୍ଲେଖ କରି କହିଛନ୍ତି:—

ଅରିନୀଚଗତଦଶାୟାଂ ଜନ୍ମୋଦୟନାଥ ଶତ୍ରୁପାକେ ଚ
ସ୍ବଦଶେଶକାରକଦଶାଃ ସଂଶ୍ରୟଣୀୟୋ ନରେନ୍ଦ୍ରଃ ॥

ଭଗବାନ ଗାର୍ଗି କହୁଛନ୍ତି:—

ଲଗ୍ନଗଃ କର୍ମଗତୋ ବାସ୍ୟାଦଥବା ପ୍ରବଳୋପି ଯଃ
ସସ୍ୟାସ୍ତ୍ୱନ୍ତର୍ଦଶାକାଳେ ରାଜ୍ୟଦଃ ପ୍ରବଳୋଯଦା ।
ନୀଚୁରଗ୍ରହସଂସ୍ଥସ୍ୟ ଦଶାୟାଂ ପ୍ରବଳସ୍ୟଚ
ଚ୍ୟୁତର୍ବଲବିହୀନସ୍ୟ ତନ୍ମୋକ୍ଷଃ ପରସଂଶ୍ରୟାତ୍ ॥

ଏ ପ୍ରମାଣ ମାନଙ୍କର ଭାବ ମୂଳ ଶ୍ଳୋକର ଟୀକାରେ ସଂପୂର୍ଣ୍ଣ ଭାବେ ଦିଆଯାଇ ଅଛି ।

ଗୁରୁସିତବୁଧଲଗ୍ନେ ସପ୍ତମସ୍ଥେର୍କପୁତ୍ରେ
ବିୟତି ଦିବସନାଥେ ଭୋଗିନାଂ ଜନ୍ମବନ୍ଧ୍ୟାତ୍ ।
ଶୁଭବଳଯୁତକେନ୍ଦ୍ରୈଃ କ୍ରୂରଭସ୍ଥୈଶ୍ଚ ପାପୈ—
ର୍ବ୍ରଜତି ଶବରଦସ୍ୟୁସ୍ବାମିତାମର୍ଥଭାକ୍ ଚ ।୨୦।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ରାଜଯୋଗାଧ୍ୟାୟୋ ଏକାଦଶଃ

ଗୁରୁ, ଶୁକ୍ର ଓ ବୁଧ ମଧ୍ୟରୁ କେହି ଲଗ୍ନରେ ଥିବେ, ସପ୍ତମରେ ଶନି ଥିବ ଓ ଦଶମରେ ରବି ଥିଲେ ଜାତକ ଭୋଗଯୁକ୍ତ ହୁଏ । ଏଠାରେ ମଧ୍ୟ ଅସମ୍ଭବ ଗ୍ରହସ୍ଥିତି ଲେଖାଯାଇଛି, କାରଣ ଶୁକ୍ର ଓ ବୁଧ ଲଗ୍ନରେ ଥିବାବେଳେ ରବି ଦଶମରେ ରହି ନପାରନ୍ତି । ତେବେ ବରାହ ମିହିର ଏଭଳି ଯେଉଁଠାରେ ଉଲ୍ଲେଖ କରିଛନ୍ତି ତାହା ବହୁ ସହସ୍ର ବର୍ଷପୂର୍ବରୁ ମୁନିମାନଙ୍କ ଲିଖିତ ମତାନୁସାରେ ଲେଖି ଯାଇଛନ୍ତି, ବର୍ତ୍ତମାନ ଗ୍ରହଗତିରେ ଏହା ଅସମ୍ଭବ ହେତୁ—ଯେଉଁଭଳି ଗ୍ରହସ୍ଥିତି ସମ୍ଭବ ତାକୁନେଇ ଯୋଗ କହିବା ଉଚିତ, ତେଣୁ ମୋ ମତରେ କେବଳ ଲଗ୍ନରେ ଗୁରୁ, ସପ୍ତମରେ ଶନି ଓ ଦଶମରେ ରବି ରହିଲେ ଏଯୋଗ ହେବ । କାରଣ ଏହି ସଂଯୋଗ ଦିଗ୍‌ବଳ ଯୋଗ କାରକ । "ଲଗ୍ନେ ଶୌମ୍ୟ ସୁରଗୁରୌ କୁଜାର୍କୌ ଦଶମେ ତଥା । ଦ୍ୟୂନେ ଶୌରି ଚତୁର୍ଥେନ୍ଦୁ ଶିତେନ୍ଦୁ ଦିଗ୍‌ବଳାନ୍ୱିତୌ" ଏଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟ ଊନବିଂଶ ଶ୍ଳୋକରେ ମଧ୍ୟ ଏହି ଦିଗ୍‌ବଳ ଉଲ୍ଲେଖ ଅଛି ।

ଶୁଭଗ୍ରହମାନଙ୍କ ଗୃହ (ବୃଷ, ତୁଳା, ଧନୁ, ମୀନ) ବଳଷ୍ଠ ହୋଇ କେନ୍ଦ୍ରସ୍ଥାନ ହେବ, ପାପ ଗ୍ରହମାନେ ପାପଗ୍ରହର ଗୃହରେ ରହିବେ ତେବେ

ଜାତକ ଅଶିକ୍ଷିତ ଶବର୍ଵ ବନ୍ୟଜାତ ଓ ଚୋରମାନଙ୍କ ଉପରେ ଅଧିକାର କରି ଧନଲାଭ କରିବ ।୨୦।

ଦ୍ର:—"ଶୁଭବଲ ଯୁକ୍ତକେନ୍ଦ୍ରୈଃ" ଏହାର ଅର୍ଥ ଶୁଭଗ୍ରହ ବଲବାନ୍ ହୋଇ କେନ୍ଦ୍ରରେ ରହିବା ବୋଲି କେତେକଙ୍କ ମତ, କିନ୍ତୁ ଭଗବାନ୍ ଗାର୍ଗି ଏହିମତ ସମର୍ଥନ ନକରି ପୂର୍ବୋକ୍ତ ଶୁଭଗ୍ରହର ଗୃହକୁହିଁ ସମର୍ଥନ କରିଛନ୍ତି, ଯଥା:—

ପାପକ୍ଷେତ୍ରଗତୈଃ ପାପୈଃ କେନ୍ଦ୍ରସ୍ଥୈଃ ସୌମ୍ୟରାଶିଭିଃ ।
ସ୍ଵବଳୈର୍ଯସ୍ୟ ଜନ୍ମ ସ୍ୟାତ୍ ସ୍ୟାଦସୌ ଦସ୍ୟୁନାୟକଃ ॥

ଶ୍ରୀ ବରାହମିହିରକୃତ ବୃହଜ୍ଜାତକ ଗ୍ରନ୍ଥର ରାଜଯୋଗ ନାମକ
ଏକାଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

# ନାଭସଯୋଗାଧ୍ୟାୟୋ ଦ୍ଵାଦଶଃ

## ଯୋଗ ସଂଖ୍ୟା ନିରୂପଣ

ନବଦ୍ୟବସବସ୍ଵିକାଗ୍ନି ବେଦୈର୍ଗୁଣିତା ଦ୍ଵିନିଚତୁର୍ବିକଲ୍ପଜାଃ ସ୍ୟୁଃ
ଯବନୈସ୍ତ୍ରିଗୁଣା ହି ଷଟ୍ଶତୀ ସାକଥିତା ବିସ୍ତରତୋନି ତତ୍ସମାଃସ୍ୟୁଃ ।୧।

ନାଭସଯୋଗ ୪ ଭାଗରେ ବିଭକ୍ତ । ପ୍ରଥମ ଆକୃତି ଯୋଗ; ଦ୍ଵିତୀୟ ସଂଖ୍ୟା ଯୋଗ; ତୃତୀୟ ଆଶ୍ରୟ ଯୋଗ, ଚତୁର୍ଥ ଦଳଯୋଗ । ପ୍ରତ୍ୟେକ ଯୋଗ ଯଥାକ୍ରମେ ୯, ୧୦, ୮କୁ ୩, ୩ ଓ ୪ ରେ ଗୁଣିଲେ ଯଥାକ୍ରମେ ୨୭, ୩୦, ୩୨ ହେଲା । ଆକୃତି ଯୋଗ ୨୦, ସଂଖ୍ୟା ଯୋଗ ୭, ଆଶ୍ରୟ ଯୋଗ ୩ ଦଳଯୋଗ ୨ । ପ୍ରଥମ ଦୁଇଟିର ମିଶ୍ରଣ ୨୭, ଆଶ୍ରୟ ଯୋଗ ମିଶିଲେ ହେଲା ୩୦ ଦଳଯୋଗ ମିଶିଲେ ୩୨ ହେଲା ।

ଯବନାଚାର୍ଯ୍ୟାଦି ଏଯୋଗ ସଂଖ୍ୟାକୁ ୧୮୦୦ ବୋଲି ସ୍ଥିର କରିଛନ୍ତି । ଗ୍ରନ୍ଥକର୍ତ୍ତା ବରାହ ମିହିର କହନ୍ତି ଯେ ମୁଁ ସେ ସମସ୍ତ ବିସ୍ତୃତରେ ନକହି ୩୨ ଟି ଯୋଗ କଥା କହିବି, କାରଣ ସବୁଯାକ ଯୋଗ ଏହି ୩୨ ମଧ୍ୟରେ ଅନ୍ତର୍ଗତ ହେବ ।୧।

ରଜ୍ଜୁର୍ମୁଶଲଂ ନଲଶ୍ଚରାଦ୍ୟୈଃ ସତ୍ୟଶ୍ଚାଶ୍ରୟଜାନ୍ଜଗାଦ ଯୋଗାନ୍
କେନ୍ଦ୍ରୈଃ ସଦସଦ୍ୟୁତୈର୍ଦଲାଖ୍ୟୌ ସ୍ରକ୍ସର୍ପୌ କଥିତୌପରାଶରେଣ ।୨।

ରବି ଆଦି ସମସ୍ତ ଗ୍ରହ ଏକ ବା ଦୁଇ, ତିନି, ଗୃହ ଏକକଥାଇ ଚର ରାଶିରେ ଥିଲେ ତାହା ରଜ୍ଜୁଯୋଗ, ସମସ୍ତ ଗ୍ରହ ସ୍ଥିର ରାଶିରେ ରହିଲେ ତାହା ମୁଷଳ ଯୋଗ, ଦ୍ୱିସ୍ୱଭାବ ରାଶିରେ ରହିଲେ ନଳ ଯୋଗ ହୁଏ । ଏହି ଆଶ୍ରୟ ଯୋଗ ସତ୍ୟାଚାର୍ଯ୍ୟ କହିଅଛନ୍ତି ।

ସବୁ କେନ୍ଦ୍ରରେ ଶୁଭଗ୍ରହ ରହିଲେ (ସ୍ରକ୍) ମାଳାଯୋଗ, ସବୁକେନ୍ଦ୍ରରେ ଅଶୁଭଗ୍ରହ ରହିଲେ ସର୍ପଯୋଗ ହୁଏ ।

ଏହି ସମସ୍ତ ଯୋଗରେ କଥିତ ସବୁ ସ୍ଥାନରେ ଗ୍ରହ ରହିଲେ ହେବ ନରହିଲେ ମଧ୍ୟ ହେବ, ମନେକରଂ ସବୁ ଚରରାଶି (ମେଷ, କର୍କଟ, ତୁଳା, ମକର) ରେ ସମସ୍ତ ଗ୍ରହ ନଥାଇ ଯଦି ତିନୋଟି ବା ଦୁଇଟି ବା ଗୋଟିଏ ଚରରାଶିରେ ଥିବେ ତେବେ ମଧ୍ୟ "ରଜ୍ଜୁ" ଯୋଗହେବ । ସେହିଭଳି ସମସ୍ତ ସ୍ଥିର ରାଶି (ବୃଷ, ସିଂହ, ବିଛା, କୁମ୍ଭ) ରେ ସବୁ ଗ୍ରହନଥାଇ ତିନୋଟି ବା ଦୁଇଟି ବା ଗୋଟିଏ ସ୍ଥିର ରାଶିରେ ସବୁଗ୍ରହ ଥିଲେ ମଧ୍ୟ ମୁଷଳ ଯୋଗ ହେବ । ଠିକ୍ ସେଭଳି ସବୁ ଦ୍ୱାତ୍ମିକ ରାଶି (ମିଥୁନ, କନ୍ୟା, ଧନୁ, ମୀନ) ରେ ସମସ୍ତ ଗ୍ରହ ନଥାଇ ଏଥିରୁ ତିନୋଟି, ଦୁଇଟି ବା ଗୋଟିକରେ ସବୁଗ୍ରହ ଥିଲେ ମଧ୍ୟ ନଳ ଯୋଗ ହେବ ।

ସେହିପରି ସବୁକେନ୍ଦ୍ର (ଲଗ୍ନ, ଚତୁର୍ଥ, ସପ୍ତମ ଓ ଦଶମ) ରେ ଶୁଭଗ୍ରହ ସମସ୍ତେ ନଥାଇ ତିନୋଟି, ଦୁଇଟି ବା ଗୋଟିଏ କେନ୍ଦ୍ରରେ ସମସ୍ତେ ଥିଲେ "ମାଳା ଯୋଗ" ହେବ, ସେଭଳି ସବୁ ଅଶୁଭ ଗ୍ରହ ସମସ୍ତ କେନ୍ଦ୍ରରେ ନଥାଇ ତିନୋଟି ଦୁଇଟି ବା ଗୋଟିଏ କେନ୍ଦ୍ରରେ ଥିଲେ ମଧ୍ୟ "ସର୍ପଯୋଗ" ହେବ ।

ମହର୍ଷି ପରାଶର ମଧ୍ୟ ଉପର୍ଯୁକ୍ତ ସବୁ ଯୋଗ ଗୁଡ଼ିକୁ ସମର୍ଥନ କରିଛନ୍ତି ।୨।

ଯୋଗା ବ୍ରଜନ୍ତ୍ୟାଶ୍ରୟଜାଃ ସମତ୍ୱଂ ଯବାବ୍ଜବଜ୍ରାଣ୍ଡଜଗୋଳକାଦ୍ୟୈଃ
କେନ୍ଦ୍ରୋପଗୈଃ ପ୍ରୋକ୍ତଫଲୌ ଦଲାଖ୍ୟାବିତ୍ୟାହୁରନ୍ୟେନ ପୃଥକ୍‌ଫଲୌତୌ ॥

ଯବ, ଅବ୍ଜ, ବଜ୍ର, ଅଣ୍ଡଜ, ଗୋଳକ, ଗଦା, ଶକଟ ଇତ୍ୟାଦି ଆକୃତି ଯୋଗ, ରଜ୍ଜୁ, ମୁଷଳ, ନଳ ଆଦି ଆଶ୍ରୟ ଯୋଗ ଏବଂ ଗୋଳକ, ଯୁଗ, ଶୂଳ ଓ କେଦାର ଆଦି ସଂଖ୍ୟାଯୋଗ, ଏ ସମସ୍ତ ଆଶ୍ରୟ ଯୋଗର ଫଳ ସମାନ । ତେଣୁ ଏହି ଯୋଗ ଗୁଡ଼ିକର ଫଳାଫଳ ବିଭିନ୍ନ ଭାବରେ ଅନ୍ୟ ଗ୍ରନ୍ଥକାରମାନେ କହି ନାହାନ୍ତି । କିନ୍ତୁ ଏହି ଗ୍ରନ୍ଥକର୍ତ୍ତା ଏ ସମସ୍ତର ଫଳ ଗୋଟି ଗୋଟି କରି କହିଛନ୍ତି ।

କେନ୍ଦ୍ରରେ ଶୁଭଗ୍ରହ ରହିଲେ ଶୁଭଫଳ, ଅଶୁଭ ରହିଲେ ପାପଫଳ ଘଟିବା କଥା ଅଗେ ଲେଖାଯାଇଅଛି । ଏହାକୁ ଯଥାକ୍ରମେ "ମାଳା" ଓ 'ସର୍ପ' ଯୋଗ ନାମରେ ଉଲ୍ଲେଖ କରାଯାଇ ଅଛି । ଅନ୍ୟାନ୍ୟ ଆଚାର୍ଯ୍ୟ ଏହାକୁ 'ଦଳଯୋଗ'ର ଅନ୍ତର୍ଭୁକ୍ତ କରିଛନ୍ତି । ଗ୍ରନ୍ଥକାର ଏହି ଯୋଗର ଫଳ ମଧ୍ୟ ଦଶାନ୍ତର୍ଦଶାରେ ମିଳେ ବୋଲି ଅନ୍ୟ ଯୋଗମାନଙ୍କ ସଦୃଶ୍ୟ ଏହାର ନାମୋଲ୍ଲେଖ କରିବା ଅଦର୍ଶନୀୟ ମନେ କଲେ । ପରାଶରଙ୍କ ମତ ମଧ୍ୟ ଠିକ୍ ଏହିପରି ଅଟେ ।୩।

## ଗଦା-ଶକଟ-ବିହଙ୍ଗ-ଶୃଙ୍ଗାଟକ-ହଳଯୋଗ ନିରୂପଣ

ଆସନ୍ନକେନ୍ଦ୍ରଭବନଦ୍ୱୟଗୈର୍ଗଦାଖ୍ୟ-
ସ୍ତନ୍ୱସ୍ତଗେଷୁ ଶକଟଂ ବିହଗଃଖବନ୍ଧ୍ୱୋଃ ।
ଶୃଙ୍ଗାଟକଂ ନବମପଞ୍ଚମଲଗ୍ନସଂସ୍ଥୈ-
ର୍ଲଗ୍ନାନ୍ୟଗୈର୍ହଲମିତି ପ୍ରବଦନ୍ତି ତଜ୍ଜ୍ଞାଃ ।୪।

ନିକଟତମ ଦୁଇଟି କେନ୍ଦ୍ର ସ୍ଥାନରେ ସମସ୍ତ ଗ୍ରହ ରହିଲେ ତାହାର ନାମ ଗଦା ଯୋଗ, ଏଯୋଗ ୪ ପ୍ରକାର ହୋଇପାରେ ।

ଯଥା:—ଲଗ୍ନ ଓ ଚତୁର୍ଥରେ ; ଚତୁର୍ଥ ଓ ସପ୍ତମରେ ; ସପ୍ତମ ଓ ଦଶମରେ; ଦଶମ ଓ ଲଗ୍ନରେ ଏପରି ଚାରି ପ୍ରକାରେ ସମସ୍ତ ଗ୍ରହ ରହି ଏଯୋଗ ଘଟାଇ ପାରନ୍ତି ।

ଲଗ୍ନ ଓ ସପ୍ତମରେ ସବୁଗ୍ରହ ରହିଲେ ତାହାର ନାମ ଶକଟଯୋଗ ହୁଏ ।

ଦଶମ ଏବଂ ଚତୁର୍ଥରେ ସବୁଗ୍ରହ ଥିଲେ ବିହଙ୍ଗ ଯୋଗ ହୁଏ ।

ନବମ, ପଞ୍ଚମ ଓ ଲଗ୍ନରେ ସବୁଗ୍ରହ ଥିଲେ ଶୃଙ୍ଗାଟକ ଯୋଗ ହୁଏ ।

ନବମ ଓ ପଞ୍ଚମରେ ସବୁଗ୍ରହ ରହିଲେ ହଳ ନାମକ ଯୋଗ ହୁଏ ।୪।

## ବଜ୍ର—ଯବ—କମଳ—ବାପୀଯୋଗ ନିର୍ଣ୍ଣୟ

ଶକଟାଣ୍ଡଜବଚ୍ଛୁଭାଶୁଭୈର୍ବଜ୍ରଂ ତଦ୍ୱିପରୀତଗୈର୍ଯବଃ
କମଳଂ ତୁ ବିମିଶ୍ରସଂସ୍ଥିତୈର୍ବାପୀ ତଦ୍ୟଦିକେନ୍ଦ୍ରବାହ୍ୟତଃ ।୫।

ପୂର୍ବୋକ୍ତ ଶକଟ ଯୋଗ ସମାନ ଶୁଭଗ୍ରହ ଓ ବିହଙ୍ଗ ଯୋଗ ସମାନ ପାପଗ୍ରହ ହେଲେ ବଜ୍ରଯୋଗ ହୁଏ । ଅର୍ଥାତ ଲଗ୍ନ ଓ ସପ୍ତମରେ ସମସ୍ତ ଶୁଭଗ୍ରହ ଏବଂ ଚତୁର୍ଥ ତଥା ଦଶମରେ ସମସ୍ତ ପାପଗ୍ରହ ରହିଲେ ବଜ୍ରଯୋଗ ହେବ ।

ଲଗ୍ନ ଓ ସପ୍ତମରେ ପାପଗ୍ରହ, ଚତୁର୍ଥ ଓ ଦଶମରେ ଶୁଭଗ୍ରହ ଥିଲେ ଯବଯୋଗ ହୁଏ । ଶୁଭଗ୍ରହ ତଥା ପାପଗ୍ରହ ସମସ୍ତେ ଚାରିଟି କେନ୍ଦ୍ରରେ ଥିଲେ କମଳ ଯୋଗ ହୁଏ । ଶୁଭଗ୍ରହ ଓ ପାପଗ୍ରହ ଯଦି ପଣଫର (ଦ୍ୱିତୀୟ, ପଞ୍ଚମ, ଅଷ୍ଟମ, ଏକାଦଶ) ଓ ଆପୋକ୍ଲିମରେ (ତୃତୀୟ, ଷଷ୍ଠ, ନବମ, ଦ୍ୱାଦଶରେ) ଥାଆନ୍ତି ତେବେ ତାହା ବାପୀଯୋଗ ହୁଏ ।୫।

## ପୂର୍ବାଚାର୍ଯ୍ୟଙ୍କ କଥିତ ଯୋଗର ଉପଯୋଗୀତା ନିର୍ଣ୍ଣୟ

ପୂର୍ବଶାସ୍ତ୍ରାନୁସାରେଣମୟା ବଜ୍ରାଦୟଃକୃତାଃ
ଚତୁର୍ଥଭବନେ ସୂର୍ଯ୍ୟଜ୍ଞସିତ୍ନୌଭବତଃ କଥମ୍ ।୬।

ପୂର୍ବାଚାର୍ଯ୍ୟମାନଙ୍କ ମତାନୁସାରେ ମୁଁ ବଜ୍ରାଦି ଯୋଗ କହିଲି । କିନ୍ତୁ ଗୋଟିଏ କେନ୍ଦ୍ରରେ ଶୁଭଗ୍ରହ ବୁଧ ଅପର କେନ୍ଦ୍ରରେ ପାପଗ୍ରହ ରବି ରହିବା ଅସମ୍ଭବ ହେତୁ ଏହି ଯୋଗମାନେ ଘଟିବେ ନାହିଁ ।୬।

ଦ୍ର:—ପୂର୍ବରୁ ରାଜ ଯୋଗାଦିରେ ଏହିଭଳି ଅସମ୍ଭବ ସଂଯୋଗ ସ୍ଥାନ ଦିଆ ଯାଇଅଛି । ବରାହ ମିହିରଙ୍କ ସମୟରେ ମଧ୍ୟ ରବିଠାରୁ ବୁଧ ଓ ଶୁକ୍ର ଚତୁର୍ଥରେ ରହିବା ଅସମ୍ଭବ ହେବା ଜାଣିସୁଦ୍ଧା ସେ ତାଙ୍କର ପୂର୍ବାଚାର୍ଯ୍ୟ କଶ୍ୟପ, ପରାଶର, ବ୍ୟାସ, ମଣିତ୍ଥ, ଗାର୍ଗି ଇତ୍ୟାଦିଙ୍କର କାଳରେ ଘଟୁଥିବା ଗ୍ରହ ପରିସ୍ଥିତିକୁ ନେଇ ସେମାନେ ଉଲ୍ଲେଖ କରିଥିବା ଯୋଗ ଗୁଡ଼ିକୁ ସେ ଗ୍ରହଣ କରି ନେଲେ ସୁଦ୍ଧା ଏଠାରେ ତାଙ୍କର ମନୋଗତ ଭାବ ପ୍ରକାଶ କରିବାକୁ ବାଧ୍ୟ ହେଲେ । ଜ୍ୟୋତିଃଶାସ୍ତ୍ର ଅତି ପୁରୁଣା, କେତେ ଲକ୍ଷ ବର୍ଷ ଅଗରୁ ଏହାର ପ୍ରଚଳନ ଅଛି ତାହା କୁହାଯାଇ ନପାରେ । ଏମଧ୍ୟରେ ଗ୍ରହସ୍ଥିତି ତଥା ଗତିରେ ବହୁ ପରିବର୍ତ୍ତନ ହୋଇଗଲାଣି । ତେଣୁ ମହର୍ଷିମାନଙ୍କ କାଳରେ ଏଭଳି ପରିସ୍ଥିତି ଥିଲା, ଭବିଷ୍ୟତରେ ବି ହୋଇପାରେ କିନ୍ତୁ ବର୍ତ୍ତମାନ କାଳରେ ଏହିଯୋଗ ସ୍ଥିତି ସମ୍ଭବ ନୁହେ । ସମସ୍ତ କାରଣ ଏକାଦଶ ଅଧ୍ୟାୟର ଦଶମ ଶ୍ଳୋକ ଟୀକାରେ ମୁଁ ବୁଝାଇ ଦେଇଛି ।

## ଯୂପ-ଇଷୁ-ଶକ୍ତି ତଥା ଦଣ୍ଡଯୋଗ

କଣ୍ଟକାଦିପ୍ରବୃତ୍ତୈସ୍ତୁ ଚତୁର୍ଗୃହଗତୈର୍ଗ୍ରହୈଃ
ଯୂପେଷୁଶକ୍ତିଦଣ୍ଡାଖ୍ୟାହୋରାଦ୍ୟୈଃ କଣ୍ଟକୈଃ କ୍ରମାତ୍ ।୭।

ଲଗ୍ନଠାରୁ ଚତୁର୍ଥ ପର୍ଯ୍ୟନ୍ତ ସମସ୍ତ ଗ୍ରହ ରହିଲେ ତାହାର ନାମ "ଯୂପ", ଚତୁର୍ଥ ଠାରୁ ସପ୍ତମପର୍ଯ୍ୟନ୍ତ ସମସ୍ତ ଗ୍ରହ ରହିଲେ ତାହାରନାମ "ଇଷୁ" । ସପ୍ତମ

ଠାରୁ ଦଶମ ଯାଏ ସମସ୍ତ ଗ୍ରହ ରହିଲେ ଶକ୍ତି, ଦଶମଠାରୁ ଲଗ୍ନଯାଏ ସମସ୍ତ ଗ୍ରହଥିଲେ ଦଣ୍ଡଯୋଗ ହୁଏ ।୭।

### ନୌକା-କୂଟ-ଛତ୍ର-ଚାପ ଏବଂ ଅର୍ଦ୍ଧଚନ୍ଦ୍ର ଯୋଗ

ନୌକୂଟଛତ୍ରଚାପାନି ତଦ୍ୱତ୍ସପ୍ତର୍କ୍ଷସଂସ୍ଥିତୈଃ
ଅର୍ଦ୍ଧଚନ୍ଦ୍ରସ୍ତୁ ନାବାଦ୍ୟୈଃ ପ୍ରୋକ୍ତସ୍ତ୍ୱନ୍ୟର୍କ୍ଷ ସଂସ୍ଥିତୈଃ ।୮।

ଲଗ୍ନଠାରୁ ସପ୍ତମଯାଏ ପ୍ରତ୍ୟେକ ଭାବରେ ଗୋଟିଏ ଗୋଟିଏ ଗ୍ରହ ରହିଲେ ତାହା ନୌକାଯୋଗ ।

ଚତୁର୍ଥଠାରୁ ଦଶମ ମଧ୍ୟରେ ସମସ୍ତ ଗ୍ରହ ରହିଲେ ତାହା କୂଟଯୋଗ ।

ସପ୍ତମ ଠାରୁ ଲଗ୍ନ ପର୍ଯ୍ୟନ୍ତ ସମସ୍ତ ଗ୍ରହ ରହିଲେ ତାହା ଛତ୍ରଯୋଗ । ଦଶମଠାରୁ ଚତୁର୍ଥ ପର୍ଯ୍ୟନ୍ତ ସମସ୍ତ ଗ୍ରହ ଥିଲେ ଚାପଯୋଗ । ଦ୍ୱିତୀୟ ଠାରୁ ଅଷ୍ଟମ ଯାଏ, ପଞ୍ଚମ ଠାରୁ ଏକାଦଶ ଯାଏ, ଅଷ୍ଟମଠାରୁ ଦ୍ୱିତୀୟ ଯାଏ ଓ ଏକାଦଶ ଠାରୁ ପଞ୍ଚମ ଯାଏ ସମସ୍ତ ଗ୍ରହ ରହିଲେ ଭିନ୍ନ ଭାବରେ ୪ ପ୍ରକାର ଅର୍ଦ୍ଧଚନ୍ଦ୍ର ଯୋଗ ସମ୍ଭବ ହୁଏ । ଏଗୁଡ଼ିକ ଯୋଗ ପଣଫର ସ୍ଥାନରୁ ଆରମ୍ଭ ହୋଇ ୬ଟି ସ୍ଥାନଯାଏ ରହିଲା ।

ସେହିଭଳି ଆପୋକ୍ଲିମ ସ୍ଥାନମାନଙ୍କରୁ ଆରମ୍ଭ ହୋଇ ସାତୋଟି ସ୍ଥାନ ଯାଏ ସମସ୍ତ ଗ୍ରହ ରହିଲେ ଭିନ୍ନ ୪ଟି ଅର୍ଦ୍ଧଚନ୍ଦ୍ର ଯୋଗ ଘଟାଇ ପାରିବେ । କାରଣ ତୃତୀୟଠାରୁ ଆରମ୍ଭ କରି ନବମ ଯାଏ ସମସ୍ତେ ରହିଲେ ଏ ଅର୍ଦ୍ଧଚନ୍ଦ୍ର ଯୋଗହେବ । ଷଷ୍ଠଠାରୁ ଦ୍ୱାଦଶ ଯାଏ ରହିଲେ ମଧ୍ୟ ଏ ଯୋଗହେବ । ନବମ ଠାରୁ ତୃତୀୟ ଯାଏ କିମ୍ବା ଦ୍ୱାଦଶ ଠାରୁ ଷଷ୍ଠଯାଏ ସମସ୍ତ ଗ୍ରହ ରହିଲେ ଏ ଯୋଗ ହେବ । ଏପରି ଭିନ୍ନ ପ୍ରକାର ଆଠୋଟି ଅର୍ଦ୍ଧଚନ୍ଦ୍ର ଯୋଗ ସମ୍ଭବ ହେଲା ।୮।

ଏକାନ୍ତରଗତୈରର୍ଥାତ୍ସମୁଦ୍ରଃ ଷଡ୍ଗୃହାଶ୍ରିତଃ
ବିଲଗ୍ନାଦସ୍ଥିତୈଶ୍ଚକ୍ରମିତ୍ୟାକୃତିକସଂଗ୍ରହଃ ।୯।

ଦ୍ୱିତୀୟଠାରୁ ଆରମ୍ଭ କରି ଗୋଟିଏ ଗୋଟିଏ ସ୍ଥାନ ଛାଡ଼ି ଦ୍ୱାଦଶ ସ୍ଥାନରେ ସମସ୍ତ ଗ୍ରହ ରହିଲେ ସମୁଦ୍ର ଯୋଗ ହୁଏ । ଅର୍ଥାତ୍ ଦ୍ୱିତୀୟ, ଚତୁର୍ଥ, ଷଷ୍ଠ, ଅଷ୍ଟମ ଓ ଦ୍ୱାଦଶରେ ଗ୍ରହ ରହିଲେ ଏଯୋଗ ହେବ ।

ସେହିପରି ଲଗ୍ନ, ତୃତୀୟ, ପଞ୍ଚମ, ସପ୍ତମ, ନବମ ତଥା ଏକାଦଶରେ ସମସ୍ତ ଗ୍ରହ ରହିଲେ ତାହାର ନାମ ଚକ୍ରଯୋଗ ।

ଏଗୁଡ଼ିକ ଆକୃତ ଯୋଗର ଅନ୍ତର୍ଗତ । କଥିତ ସମସ୍ତ ସ୍ଥାନରେ ସମସ୍ତ ଗ୍ରହ ନରହି ସେଥିରୁ କେତୋଟିରେ ସମସ୍ତ ଗ୍ରହ ରହିଲେ ମଧ୍ୟ ଏଯୋଗ ଘଟିବ । ମନେକର କେବଳ ତୃତୀୟ, ସପ୍ତମ, ନବମ, ଏକାଦଶରେ ସମସ୍ତ ଗ୍ରହ ରହିଲେ; ତେବେ ମଧ୍ୟ ଚକ୍ରଯୋଗ ହେବ, ଏହିପରି ସର୍ବତ୍ର ବୁଝିବେ ।୯।

## ବଲ୍ଲକୀ-ଦାମ-ପାଶ-କେଦାର-ଶୂଳ-ଯୁଗ ଓ ଗୋଳଯୋଗ

ସଂଖ୍ୟାଯୋଗାଃ ସ୍ୟୁଃ ସପ୍ତସପ୍ତର୍କ୍ଷସଂସ୍ଥୈ—
ରେକାପାୟାଦ୍ୱଲ୍ଲକୀ ଦାମିନୀ ଚ ।
ପାଶଃ କେଦାରଃ ଶୂଳଯୋଗୋ ଯୁଗଞ୍ଚ
ଗୋଲସ୍ଥାନ୍ୟାନ୍ପୂର୍ବମୁକ୍ତାନ୍ବିହାୟ ।୧୦।

ସମସ୍ତ ଗ୍ରହ ଯେ କୌଣସି ସାତ ସ୍ଥାନରେ ରହିଲେ ତାହାର ନାମ ବଲ୍ଲକୀ, ଯେ କୌଣସି ଛଅଟି ସ୍ଥାନରେ ରହିଲେ ଦାମ, ପାଞ୍ଚଟି ସ୍ଥାନରେ ରହିଲେ ପାଶ, ଚାରିଟି ସ୍ଥାନରେ ରହିଲେ କେଦାର, ତିନୋଟି ସ୍ଥାନରେ ରହିଲେ ଶୂଳ, ଦୁଇଟି ସ୍ଥାନରେ ରହିଲେ ଯୁଗ ଓ ଗୋଟିଏ ସ୍ଥାନରେ ସମସ୍ତ ଗ୍ରହ ରହିଲେ ଗୋଲ ନାମକ ଯୋଗ ହୁଏ । ପୂର୍ବରୁ କୁହାଯିବା ଯୋଗ ନଘଟିଲେ ଏଯୋଗର ଫଳ ରହିବ ।

ଦ୍ରଷ୍ଟବ୍ୟ:—ଏହି ଯୋଗ ଗୁଡ଼ିକର ନାମ ସଂଖ୍ୟାଯୋଗ । କୌଣସି ନିର୍ଦ୍ଦିଷ୍ଟ ନିୟମ ନଥାଇ କେବଳ କେତୋଟି ସ୍ଥାନରେ ରହିଲେ ଏଯୋଗ ହେଲା । ଆଗରୁ ଯେ ସବୁ ଯୋଗ କୁହାଯାଇ ଅଛି ସେ ଗୁଡ଼ିକ ଯଦି ଏ ସଂଖ୍ୟାଯୋଗର ଭିତରେ ସମ୍ଭବ ହୁଏ ତେବେ ସେହି ପ୍ରଥମୋକ୍ତ ଯୋଗର ଫଳ ଘଟିବ, ସଂଖ୍ୟାଯୋଗର ନୁହେ । ମନେକର ଗୋଟିଏ ଜାତକରେ ଲଗ୍ନଠାରୁ ସପ୍ତମ ଯାଏ ଗୋଟିଏ ଗୋଟିଏ ଗ୍ରହ ରହିଛନ୍ତି, ତେବେ ଏଠାରେ ନୌଯୋଗ ହେଲା ଓ ସଂଖ୍ୟା ଯୋଗାନୁରୂପ ବଲ୍ଲକୀ ଯୋଗ ମଧ୍ୟ ହେଲା । ଏପରି ସ୍ଥଳରେ ନୌକା ଯୋଗହିଁ ଘଟିବ, ବଲ୍ଲକୀ ଯୋଗର ଫଳ ରହିବ ନାହିଁ ।

## ରଜ୍ଜୁ-ମୁଷଳ-ନଳ-ମାଳା-ସର୍ପଯୋଗର ଫଳ

ଈର୍ଷ୍ୟୁର୍ବିଦେଶନିରତୋଽଧ୍ୱରୁଚିଶ୍ଚରଜ୍ଜ୍ୱାଂ
ମାନାନ୍ୱିତୋ ମୁଷଳେ ବହୁକୃତ୍ୟସକ୍ତଃ ।
ବ୍ୟଙ୍ଗଃସ୍ଥିରାଢ୍ୟୋନିପୁଣୋ ନଳଜଃ ସ୍ରଗୁତ୍ଥୋ
ଭୋଗାନ୍ୱିତୋଽହିଜଗଜୋ ବହୁଦୁଃଖଭାକ୍ସ୍ୟାତ୍ ।୧୧।

ରଜ୍ଜୁଯୋଗ ଜାତବ୍ୟକ୍ତି ଈର୍ଷାପର ( ପରର ମଙ୍ଗଳ ଦେଖିଲେ ଯେ ଦୁଃଖିତ ହୁଏ ) ପରଦେଶବାସୀ, ଭ୍ରମଣ ନିରତ ହୁଏ ।

ମୁଷଳ ଯୋଗ ଜାତବ୍ୟକ୍ତି ଅଭିମାନୀ, ଧନୀ ଓ ବହୁକାର୍ଯ୍ୟ କୁଶଳ ହୁଏ ।

ନଳ ଯୋଗ ଜାତବ୍ୟକ୍ତି ଅଙ୍ଗହୀନ, ଦୃଢ ପ୍ରତିଜ୍ଞ, ଧନଯୁକ୍ତ ଓ ଚତୁର ହୁଏ ।

ମାଳା ଯୋଗ ଜାତବ୍ୟକ୍ତି ଭୋଗଯୁକ୍ତ ହୁଏ । ସର୍ପଯୋଗ ଜାତବ୍ୟକ୍ତି ବହୁଦୁଃଖ ଭୋଗ କରେ ।୧୧।

ଅଶ୍ରୟୋକ୍ତାସ୍ତୁ ବିଫଳା ଭବନ୍ତ୍ୟନ୍ୟୈର୍ବିମିଶ୍ରିତାଃ
ମିଶ୍ରା ଯୈସ୍ତେ ଫଳଂ ଦଦ୍ୟୁରମିଶ୍ରାଃ ସ୍ୱଫଳପ୍ରଦାଃ ।୧୨।

ଅଶ୍ରୟ ଯୋଗ ଅନ୍ୟଯୋଗ ସହିତ ମିଶ୍ରିତ ହେଲେ ବିଫଳ ହୁଅନ୍ତି, କିନ୍ତୁ ଅନ୍ୟଯୋଗମାନେ ଫଳପ୍ରଦ ହୁଅନ୍ତି । ଅଶ୍ରୟ ଯୋଗ ଗୁଡ଼ିକ ଅନ୍ୟ-ଯୋଗମାନଙ୍କ ସହିତ ମିଶ୍ରିତ ନହେଲେ ନିଜର ଫଳ ପ୍ରଦାନ କରନ୍ତି ।୧୨।

### ଗଦା-ଶକଟ-ବିହଙ୍ଗ-ଶୃଙ୍ଗାଟକ ଓ ହଳଯୋଗ ଫଳ

ଯଜ୍ୱାର୍ଥଭାକ୍ସତତମର୍ଥରୁଚିର୍ଗଦାଯ୍ୟାଂ
ତଦ୍‌ବୃତ୍ତିଭୁକ୍‌ଶକଟଜଃ ସରୁଜଃକୁଦାରଃ ।
ଦୂତୋଽଟନଃ କଲହକୃଦ୍‌ବିହଗେ ପ୍ରଦିଷ୍ଟଃ-
ଶୃଙ୍ଗାଟକେ ଚିରସୁଖୀ କୃଷିକୃଦ୍ଧଳାଖ୍ୟେ ।୧୩।

ଗଦାଯୋଗ ଜାତବ୍ୟକ୍ତି ଯଜ୍ଞକର୍ତ୍ତା, ଧନୀ ଓ ନିତ୍ୟ ଧନାର୍ଜନ ବିଷୟରେ ଉଦ୍ୟମଶୀଳ ହୁଏ ।

ଶକଟ ଯୋଗଜାତ ବ୍ୟକ୍ତି ଶକଟବାହନ କର୍ମରେ ଜୀବିକା ନିର୍ବାହ କରେ । ସେ ରୋଗଯୁକ୍ତ ଓ ମନ୍ଦବୁଦ୍ଧି ସ୍ତ୍ରୀ ଯୁକ୍ତ ହୁଏ ।

ବିହଙ୍ଗ ଯୋଗ ଜାତବ୍ୟକ୍ତି ଦୂତକର୍ମକାରୀ, ଭ୍ରମଣଶୀଳ ଓ କଳହପ୍ରିୟ ହୁଏ ।

ଶୃଙ୍ଗାଟକ ଯୋଗ ଜାତବ୍ୟକ୍ତି ଚିରସୁଖୀ ହୁଏ ।

ହଳଯୋଗ ଜାତବ୍ୟକ୍ତି କୃଷି କର୍ମକରି ଜୀବିକା ଉପାର୍ଜନ କରେ ।୧୩।

## ବଜ୍ର, ଯବ, ପଦ୍ମ ଓ ବାପୀ ଯୋଗ ଜାତ ଫଳ

ବଜ୍ରେନ୍ତ୍ୟପୂର୍ବସୁଖୀନଃ ସୁଭଗୋଽତିଶୂରୋ
ବୀର୍ଯ୍ୟାନ୍ୱିତୋଽପ୍ୟଥଯବେ ସୁଖିତୋ ବୟୋନ୍ତଃ ।
ବିଖ୍ୟାତ କୀର୍ତ୍ତ୍ୟମିତ ସୌଖ୍ୟଗୁଣଶ୍ଚ ପଦ୍ମେ
ବାପ୍ୟାଂ ତନୁସ୍ଥିରସୁଖୋ ନିଧିକୃନ୍ନ ଦାତା ।୧୪।

ବଜ୍ରଯୋଗ ଜାତ ବ୍ୟକ୍ତି ବାଲ୍ୟାବସ୍ଥାରେ ଓ ବୃଦ୍ଧାବସ୍ଥାରେ ସୁଖଭୋଗ କରେ । ସେ ଲୋକପ୍ରିୟ ଏବଂ ଅତି ଶୂର ହୁଏ ।

ଯବଯୋଗ ଜାତବ୍ୟକ୍ତି ପରାକ୍ରମଶୀଳ ଓ ମଧ୍ୟାବସ୍ଥାରେ ( ଯୌବନ-କାଳରେ ) ସୁଖଯୁକ୍ତ ହୁଏ ।

ପଦ୍ମଯୋଗ ଜାତ ବ୍ୟକ୍ତି ବିଖ୍ୟାତ, କୀର୍ତ୍ତିଯୁକ୍ତ, ବହୁସୌଖ୍ୟ-ଭୋଗୀ ଏବଂ ଗୁଣବାନ୍ ହୁଏ ।

ବାପୀଯୋଗଜାତ ବ୍ୟକ୍ତି ସ୍ୱାସ୍ଥ୍ୟସୁଖ ବହୁକାଳ ଭୋଗ କରେ, ସେ ଭୂମି ମଧ୍ୟରେ ଦ୍ରବ୍ୟ ପୋତି ରଖେ ଓ ବ୍ୟୟ ନ କରି କୃପଣ ଭାବ ବରାବର ଦେଖାଏ ।୧୪।

## ଯୂପ, ଶର, ଶକ୍ତି, ଦଣ୍ଡଯୋଗ ଜାତ ଫଳ

ତ୍ୟାଗାତ୍ମବାନ୍ କ୍ରତୁବରୈର୍ଯଜତେ ଚ ଯୂପେ
ହିଂସ୍ରୋଽଥ ଗୁପ୍ତ୍ୟଧିକୃତଃ ଶରକୃଚ୍ଛରାଖ୍ୟେ ।
ନୀଚୋଽଲସଃ ସୁଖଧନୈର୍ବିୟୁତଶ୍ଚ ଶକ୍ତୌ
ଦଣ୍ଡେ ପ୍ରିୟୈର୍ବିରହିତଃ ପୁରୁଷୋନ୍ତ୍ୟବୃତ୍ତିଃ ।୧୫।

ଯୂପଯୋଗ ଜାତ ବ୍ୟକ୍ତି ଦାନୀ, ପ୍ରମାଦଶୂନ୍ୟ ଓ ଶ୍ରେଷ୍ଠଯଜ୍ଞାଦି କରିଥାଏ ।

ଶରଯୋଗ ଜାତବ୍ୟକ୍ତି ହିଂସ୍ରକର୍ମପର, ବନ୍ଧନାଗାରର ଅଧିକାରୀ ଓ ଶରାଦି ଅସ୍ତ୍ରଶସ୍ତ୍ର ନିର୍ମାଣକାରୀ ହୁଏ ।

ଶକ୍ତିଯୋଗ ଜାତବ୍ୟକ୍ତି ନୀଚକର୍ମ କର୍ତ୍ତା, ଅଳସ୍ୟ, ସୁଖହୀନ ଓ ଧନହୀନ ହୁଏ ।

ଦଣ୍ଡଯୋଗ ଜାତବ୍ୟକ୍ତି ପୁତ୍ରାଦି ପ୍ରିୟବ୍ୟକ୍ତିଙ୍କ ଦ୍ୱାରା ତ୍ୟକ୍ତ ଏବଂ ଦାସ-କର୍ମକରି ଜୀବିକା ଉପାର୍ଜନ କରେ ।୧୫।

## ନୌକା, କୂଟ, ଛତ୍ର ଓ ଚାପ ଯୋଗର ଫଳ

ଖ୍ୟାତ୍ୟାଯୁତଶ୍ଚଳସୁଖଃ କୃପଣଶ୍ଚ ନୌଜଃ
କୂଟେଽନୃତପ୍ଲବନ ବନ୍ଧନପଶ୍ଚ ଜାତଃ ।
ଛତ୍ରୋଦ୍ଭବଃ ସ୍ୱଜନସୌଖ୍ୟକରୋଽନ୍ତ୍ୟସୌଖ୍ୟଃ
ଶୂରଶ୍ଚକାର୍ମୁକଭବଃ ପ୍ରଥମାନ୍ତ୍ୟ ସୌଖ୍ୟଃ ।୧୬।

ନୌକାଯୋଗ ଜାତ ବ୍ୟକ୍ତି ଯଶସ୍ୱୀ, କେତେବେଳେ ସୁଖୀ, କେତେବେଳେ ବା ଦୁଃଖୀ ଓ କୃପଣ ହୁଏ ।

କୂଟଯୋଗ ଜାତବ୍ୟକ୍ତି ମିଥ୍ୟାବାଦୀ ଓ କାରାଗାର ରକ୍ଷକ ହୁଏ ।

ଛତ୍ରଯୋଗ ଜାତବ୍ୟକ୍ତି ନିଜ ଲୋକର ସୁଖ ବିଧାନକାରୀ ଓ ବୃଦ୍ଧାବସ୍ଥାରେ ସୁଖ ଭୋଗ କରେ ।

ଚାପଯୋଗ ଜାତ ବ୍ୟକ୍ତି ଶୂର, ବାଲ୍ୟ ବୟସରେ ଓ ବୃଦ୍ଧ ବୟସରେ ସୁଖ ଭୋଗ କରେ ।୧୬।

## ଅର୍ଦ୍ଧଚନ୍ଦ୍ର, ସମୁଦ୍ର ଓ ଚକ୍ରଯୋଗ ଫଳ

ଅର୍ଦ୍ଧେନ୍ଦୁଜଃ ସୁଭଗକାନ୍ତବପୁଃ ପ୍ରଧାନ-
ସ୍ତୋୟାଳୟେ ନରପତିପ୍ରତିମସ୍ତୁଭୋଗୀ ।
ଚକ୍ରେ ନରେନ୍ଦ୍ରମୁକୁଟଦ୍ୟୁତି ରଞ୍ଜିତାଂଘ୍ରି-
ର୍ବୀଣୋଦ୍ଭବଶ୍ଚ ନିପୁଣଃ ପ୍ରିୟଗୀତନୃତ୍ୟଃ ।୧୭।

ଅର୍ଦ୍ଧଚନ୍ଦ୍ର ଯୋଗ ଜାତବ୍ୟକ୍ତି ସମସ୍ତଙ୍କର ପ୍ରିୟ, ସୁନ୍ଦର ଶରୀରଧାରୀ ଓ ସର୍ବଶ୍ରେଷ୍ଠ ହୁଏ ।

ସମୁଦ୍ର ଯୋଗ ଜାତବ୍ୟକ୍ତି ରାଜତୁଲ୍ୟ ଏବଂ ଭୋଗଯୁକ୍ତ ହୁଏ । ଚକ୍ର ଯୋଗରେ ଜାତ ମନୁଷ୍ୟ ନିଜର ପ୍ରଭାବ ବଳରେ ରାଜ ପୂଜ୍ୟ ହୁଏ ।୧୭।

## ଦାମିନୀ, ପାଶ, କେଦାର ଓ ଶୂଳ ଯୋଗଜାତ ଫଳ

ଦାତାନ୍ୟକାର୍ଯ୍ୟନିରତଃ ପଶୁପଶ୍ଚ ଦାମ୍ନି
ପାଶେ ଧନାର୍ଜ୍ଜନବଶୀଳସଭୃତ୍ୟବନ୍ଧୁଃ ।
କେଦାରଜଃ କୃଷିକରଃ ସୁବହୂପଯୋଜ୍ୟଃ
ଶୂରଃକ୍ଷତୋ ଧନରୁଚିର୍ବିଧନଶ୍ଚଶୂଳେ ।୧୮।

ଦାମିନୀ ଯୋଗ ଜାତ ବ୍ୟକ୍ତି ଦାନୀ, ପରୋପକାରୀ ଓ ପଶୁପାଳନ କରେ ।

ପାଶଯୋଗ ଜାତ ମନୁଷ୍ୟ ନିନ୍ଦିତକର୍ମ ଦ୍ୱାରା ଧନ ଉପାର୍ଜ୍ଜନ କରେ ଓ ବନ୍ଧୁ ତଥା ଭୃତ୍ୟାଦିରେ ଯୁକ୍ତ ହୁଏ ।

କେଦାର ଯୋଗ ଜାତକ କୃଷିକର୍ମକାରୀ ଓ ବହୁ ବ୍ୟକ୍ତିର ଉପକାର ସାଧନ କରେ ।

ଶୂଳ ଯୋଗରେ ଜାତବ୍ୟକ୍ତି ଶୂର, କ୍ଷତଯୁକ୍ତ ଶରୀର, ସର୍ବଦା ଧନ ନିମନ୍ତେ ବ୍ୟସ୍ତ ହେଲେହେଁ ପରିଣାମରେ ନିର୍ଦ୍ଧନ ହୋଇଥାଏ ।୧୮।

## ଯୁଗ ଓ ଗୋଳଯୋଗ ଜାତ ଫଳ

ଧନବିରହିତଃ ପାଖଣ୍ଡୀ ବା ଯୁଗେତ୍ୱଥ ଗୋଳକେ
ବିଧନମଳିନୋଽଜ୍ଞାନୋପେତଃ କୁଶିଲ୍ପ୍ୟଲସୋଽଟନଃ ।
ଇତି ନିଗଦିତା ଯୋଗାଃ ସାର୍ଦ୍ଧଂ ଫଳୈରିହ ନାଭସା
ନିୟତଫଳଦାଶ୍ଚିନ୍ତ୍ୟା ହ୍ୟେତେ ସମସ୍ତଦଶାସ୍ୱପି ।୧୯।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ନାଭସଯୋଗାଧ୍ୟାୟୋ ଦ୍ୱାଦଶଃ ।

ଯୁଗଯୋଗ ଜାତବ୍ୟକ୍ତି ଧନହୀନ, ପାଖଣ୍ଡୀ ଅର୍ଥାତ୍ ବେଦ ନିନ୍ଦାକାରୀ ହୁଏ ।

ଗୋଳଯୋଗ ଜାତବ୍ୟକ୍ତି ଦରିଦ୍ର, ମଳିନ, ଅଜ୍ଞାନୀ, କୁଳାନୁଚିତ ଶିଳ୍ପ-କର୍ମକାରୀ, ଆଳସ୍ୟଯୁକ୍ତ ଓ ଭ୍ରମଣଶୀଳ ହୁଏ ।

ଏହି ସମସ୍ତ ନାଭସ ଯୋଗର ଫଳ ସମସ୍ତ ଦଶାରେ ଭୋଗ ହୁଏ । ଅର୍ଥାତ୍ ଏସମସ୍ତ ଫଳ ସ୍ଥାୟୀ ବୋଲି ଜାଣିବେ ।

ଏହି ଯୋଗମାନଙ୍କରେ ଯେଉଁଠାରେ କୁହାଯାଇଅଛି ଯେ ଯୋଗଫଳ ବାଲ୍ୟ ବୟସରେ ତଥା ବୃଦ୍ଧ ବୟସରେ ସୁଖପ୍ରଦ ବା ଦୁଃଖପ୍ରଦ ହେବ ତାହା ସେପରି ହେବ । ବିଶେଷତ୍ୱ ଏତିକି ଯେ ଅନ୍ୟ ବିରୁଦ୍ଧ ଯୋଗ ନଥିଲେ ଏଯୋଗ ଗୁଡ଼ିକ ଆଜୀବନ ଫଳପ୍ରଦ ହେବେ ।

କେହି କେହି କହନ୍ତି ଯୋଗ କାରକ ଗ୍ରହମାନେ ଅର୍ଥାତ୍ ଯେଉଁଗ୍ରହ ମାନଙ୍କ ସଂଯୋଗାଦି ଫଳରେ ଯୋଗ ସମ୍ଭବ ହେଲା ସେମାନଙ୍କର ଅନ୍ୟବଲା-ବଳକୁ ଚିନ୍ତାକରି ସେହିମାନଙ୍କ ଦଶାରେ ଯୋଗର ଫଳ ଅଶୁଭ ବା ଶୁଭ ଯାହାହେଉ ତାହାର ଭୋଗ କହିବେ । ମନେକରି ଜାତକରେ ଗୋଳଯୋଗ ହେଲା । ଏହାର ଫଳ ବିଷମ, ତଥାପି ଯେଉଁଗ୍ରହର ଦଶା ବଳବାନ୍ ସେଥିରେ

ଏହି ଅଶୁଭ ଫଳ ସାମାନ୍ୟ ଦେଖାଯିବ ଓ ଦୁର୍ବଳ ଗ୍ରହର ଦଶା ଭୋଗ କାଳରେ ଏହି ବିଷମଫଳ ଅଧିକ ଭାବେ ଦେଖାଯିବ ।

ସେହିଭଳି ଶୁଭ ଯୋଗରେ ମଧ୍ୟ ଗ୍ରହ ଯଦି ଦୁର୍ବଳ ହୋଇଛନ୍ତି, ତେବେ ଯୋଗର ଫଳ ପୂର୍ଣ୍ଣଭାବେ ସେହି ଗ୍ରହର ଦଶାରେ ଦେଖାଯିବ ନାହିଁ ।୧୯।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ନାଭସଯୋଗ ନାମକ ଦ୍ୱାଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



## ଚନ୍ଦ୍ରଯୋଗାଧ୍ୟାୟସ୍ତ୍ରୟୋଦଶଃ

### ରବିର କେନ୍ଦ୍ରାଦି ସ୍ଥାନସ୍ଥିତ ଚନ୍ଦ୍ରଫଳ

ଅଧମସମବରିଷ୍ଠାନ୍ୟର୍କକେନ୍ଦ୍ରାଦିସଂସ୍ଥେ
ଶଶିନି ବିନୟବିତ୍ତଜ୍ଞାନଧୀ ନୈପୁଣାନି ।
ଅହନି ନିଶିଚ ଚନ୍ଦ୍ରେ ସ୍ୱେଽଧିମିତ୍ରାଂଶକେବା
ସୁରଗୁରୁସିତଦୃଷ୍ଟେ ବିତ୍ତବାନ୍‌ସ୍ୟାତ୍ସୁଖୀଚ ।୧।

ରବିଙ୍କର କେନ୍ଦ୍ରସ୍ଥାନରେ ଚନ୍ଦ୍ରଥିଲେ ଜାତକର ବିନୟ, ଧନ, ଶାସ୍ତ୍ରଜ୍ଞାନ, ବୁଦ୍ଧି ତଥା ଚତୁରତା ସମସ୍ତ ଅଧମ ଅର୍ଥାତ୍ ଦୁର୍ବଳ ହୁଏ । (କେନ୍ଦ୍ର:—୧, ୪, ୭, ୧୦)

ରବିଙ୍କର ପଣଫର ସ୍ଥାନରେ ଚନ୍ଦ୍ରଥିଲେ ଜାତକର ବିନୟ (ନମ୍ରତା) ଧନ, ଶାସ୍ତ୍ରଜ୍ଞାନ, ବୁଦ୍ଧି ତଥା ଚତୁରତା ସମ ଅର୍ଥାତ୍ ଚଳନୀୟ ହୁଏ (ପଣଫର:—୨, ୫, ୮, ୧୧)

ରବିଙ୍କର ଆପୋକ୍ଲିମ ସ୍ଥାନରେ ଚନ୍ଦ୍ରଥିଲେ ଜାତକର ବିନୟ, ଧନ, ଶାସ୍ତ୍ରଜ୍ଞାନ, ବୁଦ୍ଧି ତଥା ଚତୁରତା ଅତଉତ୍ତମ ହୁଏ । (ଆପୋକ୍ଲିମ ୩,୬,୯,୧୨)

ଦିବା ଜାତ ବ୍ୟକ୍ତିର ଚନ୍ଦ୍ର ଯଦି ନିଜର ବା ଅଧିମିତ୍ର ଗ୍ରହର ନବାଂଶରେ ଥିବେ ଓ ବୃହସ୍ପତି ଦ୍ୱାରା ଦୃଷ୍ଟ ହେଉଥିବେ ତେବେ ଜାତକ ଧନବାନ୍ ଓ ସୁଖୀ ହୁଏ । ରାତ୍ରିଜନ୍ମ ଜାତକର ଚନ୍ଦ୍ର ନିଜର ବା ଅଧିମିତ୍ର ଗ୍ରହର ନବାଂଶରେ ଥାଇ ଶୁକ୍ରଙ୍କ ଦ୍ୱାରା ଦୃଷ୍ଟହେଲେ ଜାତବ୍ୟକ୍ତି ଧନ ତଥା ସୁଖଯୁକ୍ତ ହୁଏ ।୧।

## ଅଧିଯୋଗର ଫଳ

ସୌମ୍ୟୈଃ ସ୍ମରାରି ନିଧନେଷ୍ୱଧିଯୋଗ ଇନ୍ଦୋ-
ସ୍ତସ୍ମିଂଶ୍ଚମୂପସଚିବକ୍ଷିତି ପାଳଜନ୍ମ ।
ସମ୍ପନ୍ନସୌଖ୍ୟବିଭବାହତଶତ୍ରବଶ୍ଚ
ଦୀର୍ଘାୟୁଷୋବିଗତରୋଗଭୟାଶ୍ଚ ଜାତାଃ ।୨।

ଚନ୍ଦ୍ରଙ୍କର ଷଷ୍ଠ, ସପ୍ତମ, ଅଷ୍ଟମ ଏହି ତିନିସ୍ଥାନରେ, କିମ୍ବା ଏଥିରୁ ଦୁଇଟି ସ୍ଥାନରେ ବା ଗୋଟିଏ ସ୍ଥାନରେ ସବୁ ଶୁଭଗ୍ରହ ଅର୍ଥାତ୍ ବୁଧ, ଗୁରୁ ଓ ଶୁକ୍ରଥିଲେ ଅଧିଯୋଗ ହୁଏ । ଏହି ଯୋଗଟି ସାତପ୍ରକାର ହୋଇପାରେ । (ପ୍ରଥମ) ଚନ୍ଦ୍ରଙ୍କର ଷଷ୍ଠ, ସପ୍ତମ, ଅଷ୍ଟମରେ ସମସ୍ତ ଶୁଭ ଗ୍ରହଥିଲେ, (ଦ୍ୱିତୀୟ) ଷଷ୍ଠତଥା ସପ୍ତମରେ ସମସ୍ତ ଶୁଭ ଗ୍ରହଥିଲେ, (ତୃତୀୟ) ସପ୍ତମ ତଥା ଅଷ୍ଟମରେ ସମସ୍ତ ଶୁଭ ଗ୍ରହଥିଲେ (ଚତୁର୍ଥ) ଷଷ୍ଠ ତଥା ଅଷ୍ଟମରେ ସମସ୍ତ ଶୁଭଗ୍ରହ ଥିଲେ (ପଞ୍ଚମ) ଷଷ୍ଠରେ ସମସ୍ତ ଶୁଭ ଗ୍ରହଥିଲେ (ଷଷ୍ଠ) ସପ୍ତମରେ ସମସ୍ତ ଶୁଭ ଗ୍ରହ-ଥିଲେ (ସପ୍ତମ) ଅଷ୍ଟମରେ ସମସ୍ତ ଶୁଭଗ୍ରହ ଥିଲେ ଏହି ଯୋଗ ସଂଘଟିତ ହୁଏ ।

ଯୋଗକାରକ ଶୁଭ ଗ୍ରହମାନେ ନିର୍ବଳ ହୋଇଥିଲେ ଜାତକ ସେନାପତି, ମଧ୍ୟମ ବଳହେଲେ ମନ୍ତ୍ରୀ ଓ ସମସ୍ତ ଶୁଭଗ୍ରହ ବଳବାନ୍ ହୋଇ-ଥିଲେ ଜାତକ ରାଜାହୁଏ । ଏହି ଯୋଗ ଜାତବ୍ୟକ୍ତି ସୁଖି ତଥା ଧନଯୁକ୍ତ, ଶତ୍ରୁନାଶକ, ଦୀର୍ଘାୟୁ ଓ ରୋଗହୀନ ହୁଏ ।

ଦ୍ର:—ଶୁଭଗ୍ରହମାନଙ୍କ ଦ୍ୱାରା ଅଧିଯୋଗ ହୁଏ । ଚନ୍ଦ୍ରର ଷଷ୍ଠ, ସପ୍ତମ ତଥା ଅଷ୍ଟମରେ ଶୁଭଗ୍ରହ ସହିତ ପାପଗ୍ରହ ଯଦି ଥିବେ ତେବେ ଏହି ଯୋଗର ଫଳ ମଧ୍ୟମ ହେବ । ଯଦି ଶୁଭଗ୍ରହ ମାନେ କଥିତ ଗୋଟିଏ ବା ଦୁଇଟି ସ୍ଥାନରେ ଥାଇ ପାପଗ୍ରହମାନଙ୍କ ସହିତ ଯୁକ୍ତହୋଇ ନଥିବେ ଓ ଅପର ଗୋଟିଏ ବା ଦୁଇଟି ସ୍ଥାନରେ ପାପଗ୍ରହ ଥିବେ ତେବେ ଏହି ଯୋଗର ଶୁଭ ଫଳ ନଷ୍ଟ ହେବ ନାହିଁ ।

## ସୁନଫା-ଅନଫା-ଦୁରୁଧୁରା ଓ କେମଦ୍ରୁମ ଯୋଗ

ହିତ୍ୱାର୍କଂ ସୁନଫାଂନଫାଂଦୁରୁଧୁରାଃ ସ୍ୱାନ୍ତ୍ୟୋଭୟସ୍ଥୈର୍ଗ୍ରହୈଃ
ଶୀତାଂଶୋଃ କଥିତୋନ୍ୟଥା ତୁ ବହୁଭିଃ କେମଦ୍ରୁମୋନ୍ୟୈସ୍ତ୍ୱସୌ ।
କେନ୍ଦ୍ରେ ଶୀତକରେଽଥବା ଗ୍ରହଯୁତେ କେମଦ୍ରୁମୋ ନେଷ୍ୟତେ
କେଶଚ୍ଚେନ୍ଦ୍ରନବାଂଶକେଷ୍ୱ ଚ ବଦନ୍ତ୍ୟୁକ୍ତିଃ ପ୍ରସିଦ୍ଧାନତେ ।୩।

ଚନ୍ଦ୍ରର ଦ୍ୱିତୀୟ ସ୍ଥାନରେ ରବିଛଡ଼ା ଅନ୍ୟଗ୍ରହ (ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନି) ମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଗ୍ରହଥିଲେ 'ସୁନଫାଂ' ନାମକ ଯୋଗହୁଏ ।

ସେହିପରି ଚନ୍ଦ୍ରର ଦ୍ୱାଦଶ ସ୍ଥାନରେ ରବିକୁ ଛାଡ଼ି ଅନ୍ୟ ପାଞ୍ଚଗ୍ରହଙ୍କ ମଧ୍ୟରୁ କୌଣସି ଗ୍ରହଥିଲେ ଅନଫାଂ ନାମକ ଯୋଗହୁଏ ।

ଚନ୍ଦ୍ରର ଦ୍ୱିତୀୟ ଏବଂ ଦ୍ୱାଦଶ ଉଭୟ ସ୍ଥାନରେ ଗ୍ରହଥିଲେ ଦୁରୁଧୁରା ନାମକ ଯୋଗହୁଏ ।

ଚନ୍ଦ୍ରର ଦ୍ୱିତୀୟ ଏବଂ ଦ୍ୱାଦଶ ଉଭୟ ସ୍ଥାନରେ ଗ୍ରହ ନଥିଲେ କେମ-ଦ୍ରୁମ ଯୋଗହୁଏ ।

ଚନ୍ଦ୍ର ଅନ୍ୟ କୌଣସି ଗ୍ରହ ଯୁକ୍ତ ହୋଇ ଥିଲେ କିମ୍ବା ଲଗ୍ନ ବା ଚନ୍ଦ୍ରର କେନ୍ଦ୍ର ସ୍ଥାନରେ କୌଣସି ଗ୍ରହ ଥିଲେ "କେମଦ୍ରୁମ" ଯୋଗ ହୁଏ ନାହିଁ । କେହି କେହି କହିଛନ୍ତି ଯେଉଁ ରାଶିର ନବାଂଶରେ ଚନ୍ଦ୍ର ଅଛି ତାହାର ଦ୍ୱିତୀୟ ତଥା ଦ୍ୱାଦଶରେ ଗ୍ରହ ରହିଲେ ମଧ୍ୟ ଏହିଯୋଗ ହୁଏ । କିନ୍ତୁ ଏହି ଯୁକ୍ତି ଗ୍ରହଣୀୟ ନୁହେ ବୋଲି ବରାହ ମିହିରଙ୍କ ମତ ।

ମନେକର ଚନ୍ଦ୍ରର ଦ୍ୱିତୀୟରେ ବା ଦ୍ୱାଦଶରେ ରବି ଅଛି, ତା ସହିତ ଅନ୍ୟକେହି ଗ୍ରହ ରହିଛନ୍ତି, ସେପରି ସ୍ଥଳେ ଏହିଯୋଗ ହେବ କି ନା ଏଭଳି ସନ୍ଦେହ ହୋଇପାରେ । ରବି ଥିଲେ ମଧ୍ୟ ଅନ୍ୟ ଗ୍ରହ ଥିବାରୁ ଯୋଗ ହେବ । କେବଳ ରବି ଥିଲେ ଯୋଗ ହେବ ନାହିଁ । ଏକ ବା ଏକାଧିକ ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ବା ଦ୍ୱାଦଶରେ ରହିଲେ ମଧ୍ୟ ଏଯୋଗ ଗୁଡିକ ହେବ ।୩।

## ସୁନଫାଂ—ଅନଫାଂ—ଦୁରୁଧୁରା ଯୋଗ ସଂଖ୍ୟା

ତ୍ରିଂଶତ୍ସରୂପାଃ ସୁନଫାଂନଫାଂଖ୍ୟାଃ ଷଷ୍ଟିତ୍ରୟଂ ଦୌରୁଧୁରେ ପ୍ରଭେଦାଃ ।
ଇଚ୍ଛାବିକଳ୍ପୈଃ କ୍ରମଶୋଭିନୀୟ ନୀତେଷ୍ଟବୃତ୍ତଃପୁନରନ୍ୟନୀତଃ ।୪।

ସୁନଫାଂ ଓ ଅନଫାଂ ଯୋଗ ୩୧ ପ୍ରକାର ହେବ । ଦୁରୁଧୁରା ଯୋଗ ୧୮୦ ପ୍ରକାର ହେବ । ଏହିଯୋଗ ପ୍ରତ୍ୟେକ ଗ୍ରହର ସଂଯୋଗକୁ ଧରି ହେବ । ପଞ୍ଚଗ୍ରହଠାରୁ କ୍ରମଶଃ ଏକଯାଏ, ଏକଗ୍ରହ ଠାରୁ କ୍ରମଶଃ ପଞ୍ଚଗ୍ରହ ପର୍ଯ୍ୟନ୍ତ ସଂଖ୍ୟା ବୃଦ୍ଧି ତଥା ହାନି କଲେ ଏହି ଯୋଗ ସଂଖ୍ୟା ଆସିବ ।

ମନେକର ପାଞ୍ଚଟି ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ରହିଲେ ତେବେ ଏହା ଗୋଟିଏ ଯୋଗ ହେଲା । ଚାରିଟି ଗ୍ରହ ରହିଲେ ପାଞ୍ଚ ପ୍ରକାର ହେଲା । ୩ ଟି ଗ୍ରହ

ଥିଲେ ଦଶ ପ୍ରକାର ହେଲା । ଦୁଇଟି ଗ୍ରହ ରହିଲେ ଦଶ ପ୍ରକାର ଓ ଗୋଟିଏ ଗ୍ରହ ରହିଲେ ପାଞ୍ଚ ପ୍ରକାର ଯୋଗ ହେଲା । ଏଭଳି ସୁନଫାଂ ୩୦ ପ୍ରକାର ଓ ଅନଫାଂ ୩୦ ପ୍ରକାର ହେଲା । ପ୍ରକୃତରେ ଏହି ସଂଯୋଗ ୩୧ ପ୍ରକାର ହେବ । ପ୍ରଥମଯୋଗକୁ ଛାଡି ଅନ୍ୟ ୩୦. ପ୍ରକାର ହେବ ବୋଲି ବୋଧ· ହୁଏ । ବଗ୍ରହଙ୍କ ମତଥିବା ଗଣିତ କ୍ରମରେ ନିମ୍ନରେ ହିସାବ ଦିଆଗଲା ।

| |
|---|
| ୫—୪—୩—୨—୧ |
| ୧—୨—୩—୪—୫ |

ପ୍ରଥମ ଅଙ୍କ ହେଉଛି ୫ ନିମ୍ନାଙ୍କ ହେଉଛି ୧ । ୫ ପରେ ଗ୍ରହସଂଖ୍ୟା ଏହି ଯୋଗରେ ନଥିବାରୁ ୫କୁ ୧ ହରିଲେ ୫ ଆସିବ । ତେଣୁ ଚନ୍ଦ୍ରର ଦ୍ୱିତୀୟରେ ଗୋଟିଏ ଗୋଟିଏ ଗ୍ରହ ରହିଲେ ୫ ପ୍ରକାର ଯୋଗ ହେଲା ।

ଫଳ ଯେ ୫ ଆସିଲା, ଏହାକୁ ଆଗରେ ଥିବା ଅଙ୍କ ୪ ରେ ଗୁଣ । ଫଳ ଅସିଲା ୨୦ ଏହାକୁ ନିମ୍ନାଙ୍କରେ ହର, ଚନ୍ଦ୍ରର ଦ୍ୱିତୀୟରେ ଦୁଇଟି ଗ୍ରହ ଅଛନ୍ତି ବୋଲି ଧରି ନିଅ । ତେବେ ଫଳ ଅସିଲା ୧୦ ଅର୍ଥାତ୍ ଏଥିରେ ୧୦ ପ୍ରକାର ଯୋଗ ହେଲା । ଏହି ଦଶକୁ ପର ଅଙ୍କ ୩ ରେ ଗୁଣ । ଫଳ ଅସିଲା ୩୦ । ନିମ୍ନାଙ୍କ ୩ରେ ହର, ଫଳ ଅସିଲା ୧୦ । ଚନ୍ଦ୍ରର ଦ୍ୱିତୀୟରେ ଭିନ୍ନ ତିନୋଟି ଗ୍ରହ ଥିଲେ ୧୦ ପ୍ରକାର ଯୋଗ ହେବ ।

ଫଳ ୧୦କୁ ପର ସଂଖ୍ୟା ୨ରେ ଗୁଣିଲେ ଫଳ ହେବ ୨୦ । ଏହାକୁ ୪ରେ ହର, ଫଳ ଆସିବ ୫ । ଚାରିଟି ଭିନ୍ନ ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ରହିଲେ ୫ ପ୍ରକାର ଯୋଗ ହେବ । ଏହି ୫ କୁ ପର ସଂଖ୍ୟା ୧ ରେ ଗୁଣ ଫଳ ୫ ନିମ୍ନସଂଖ୍ୟା ୫ ରେ ହର ଫଳ ୧ । ପାଞ୍ଚଟି ଯାକ ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ରହିଲେ ଗୋଟିଏ ପ୍ରକାର ଯୋଗ ହେବ । ମୋଟରେ ୩୧ ପ୍ରକାର ଯୋଗ-ହେଲା । ଯଥା—୫+୧୦+୧୦+୫+୧=୩୧ ।

ଏହିପରି ମଧ୍ୟ ଅନଫାଂ ଯୋଗରେ ସଂଯୋଗ ଦେଖିବେ ।୪।

ଟୀଃ—ଗ୍ରହ ଭିନ୍ନ ହେତୁ ଏ ଯୋଗ ଗୁଡିକର ଯେ ସଂଖ୍ୟା ଦିଆଗଲା ଓ ଗାଣିତିକ କ୍ରମରେ କିପରି ଏହା ସିଦ୍ଧ ହେବ ତାହା ବୁଝାଇ ଦିଆଗଲା । ପାଠକ ସଂପୂର୍ଣ୍ଣ ରୂପେ ବୁଝିବା ପାଇଁ ଉଦାହରଣ ରୂପେ ଏଠାରେ ଗ୍ରହ ସଂଯୋଗ ଲେଖାଯିବ । ମନେକର—ଚନ୍ଦ୍ରର ଦ୍ୱିତୀୟରେ ମଙ୍ଗଳ ଅଛି, ତେବେ ଏହା

ପ୍ରଥମ । ବୁଧଥିଲେ ଦ୍ୱିତୀୟ, ଗୁରୁଥିଲେ ତୃତୀୟ, ଶୁକ୍ରଥିଲେ ଚତୁର୍ଥ, ଶନିଥିଲେ ପଞ୍ଚମ ପ୍ରକାର ଯୋଗ ହେଲା ।

ସେହିପରି ମଙ୍ଗଳ; ବୁଧ ୧, ମଙ୍ଗଳ, ବୃହସ୍ପତି ୨; ମଙ୍ଗଳ, ଶୁକ୍ର ୩; ମଙ୍ଗଳ, ଶନି ୪; ବୁଧ, ବୃହସ୍ପତି ୫; ବୁଧ, ଶୁକ୍ର ୬; ବୁଧ, ଶନି ୭; ବୃହସ୍ପତି, ଶୁକ୍ର ୮; ବୃହସ୍ପତି, ଶନି ୯; ଶୁକ୍ର ଓ ଶନି ୧୦ । ଦୁଇ ଗ୍ରହ ସଂଯୋଗରେ ଦଶ ପ୍ରକାର ହେଲା । ଏହିପରି ମଙ୍ଗଳ, ବୁଧ ଓ ଗୁରୁ ୧; ମଙ୍ଗଳ, ବୁଧ ଓ ଶୁକ୍ର ୨; ମଙ୍ଗଳ, ବୁଧ ଓ ଶନି ୩; ମଙ୍ଗଳ, ବୃହସ୍ପତି, ଶୁକ୍ର ୪; ମଙ୍ଗଳ, ଗୁରୁ, ଶନି ୫; ମଙ୍ଗଳ, ଶୁକ୍ର, ଶନି ୮; ବୁଧ, ଶୁକ୍ର, ଶନି ୯; ଗୁରୁ, ଶୁକ୍ର, ଶନି ୧୦ । ତିନିଗ୍ରହ ସଂଯୋଗରେ ୧୦ ପ୍ରକାର ହେଲା ।

ଏହିପରି ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଥିଲେ ୧ = ମଙ୍ଗଳ, ବୁଧ, ଗୁରୁ, ଶନି ଥିଲେ ୨ = ମଙ୍ଗଳ, ଗୁରୁ, ଶୁକ୍ର, ଶନି ୩ = ମଙ୍ଗଳ, ବୁଧ, ଶୁକ୍ର, ଶନି ୪ = ବୁଧ, ଗୁରୁ, ଶୁକ୍ର ଓ ଶନି ଥିଲେ ୫ ଏହିପରି ୪ ଗ୍ରହ ସଂଯୋଗରେ ୫ ପ୍ରକାର ଯୋଗ ହେଲା । ଏହିପରି ଚନ୍ଦ୍ରର ଦ୍ୱିତୀୟରେ ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି ଥିଲେ ଗୋଟିଏ ଯୋଗ ହେବ । ଏଭଳି ସବୁ ମିଶି ୩୧ ପ୍ରକାର ଯୋଗ ହେଲା ।

ସେହିପରି ଚନ୍ଦ୍ରର ଦ୍ୱାଦଶ ସ୍ଥାନରେ ଗ୍ରହ ସଂଯୋଗ ଭେଦରୁ ମଧ୍ୟ ୩୧ ପ୍ରକାର ଯୋଗ ହେବ ।

ଦ୍ୱିତୀୟ ତଥା ଦ୍ୱାଦଶ ସ୍ଥାନରେ ମଙ୍ଗଳାଦି ଗ୍ରହ ସଂଯୋଗ ଫଳରେ ଏକଶତ ଅଶୀଏ ପ୍ରକାର ଦୁରୁଧୁରା ଯୋଗ ହେଲା ।

## ସୁନଫାଂ ଓ ଅନଫାଂ ଯୋଗଜାତ ଫଳ

ସ୍ୱୟମଧିଗତବତ୍ତଃ ପାର୍ଥିବସ୍ତତ୍ସମୋବା
ଭବତି ହି ସୁନଫାୟାଂ ଧୀଧନଖ୍ୟାତିମାଂଶ୍ଚ ।
ପ୍ରଭୁରଗଦଶରୀରଃ ଶୀଳବାନ୍ ଖ୍ୟାତକୀର୍ତ୍ତି-
ର୍ବିଷୟସୁଖସୁବେଶୋ ନିର୍ବୃତଶ୍ଚାନଫାୟାମ୍ ।୫।

ସୁନଫାଂ ଯୋଗ ଜାତବ୍ୟକ୍ତି ନିଜର ଉଦ୍ୟମରେ ଧନାର୍ଜ୍ଜନ କରେ । ସେ ରାଜା ବା ରାଜାତୁଲ୍ୟ ହୁଏ । ସେ ବୁଦ୍ଧିମାନ୍, ଧନୀ ଓ ଖ୍ୟାତନାମା ହୁଏ ।

ଅନଫା ଯୋଗଜାତ ବ୍ୟକ୍ତି ଅଧିକାର ଯୁକ୍ତ, ନୀରୋଗଶରୀର, ଚରିତ୍ରବାନ୍, ଖ୍ୟାତନାମା, ସାଂସାରି ସୁଖଯୁକ୍ତ, ସୁନ୍ଦର ଓ ସର୍ବଦା ସନ୍ତୁଷ୍ଟ ରହେ ।

ଦ୍ରଃ—ଏହି ଯୋଗମାନଙ୍କରେ ଯୋଗ କାରକ ଗ୍ରହର ବଳକୁ ନେଇ ଯୋଗର ପୂର୍ଣ୍ଣଫଳ ତଥା ହୀନଫଳ କଳ୍ପନା କରିବେ । କନ୍ୟାସ୍ଥିତ ଚନ୍ଦ୍ରର ଦ୍ୱିତୀୟସ୍ଥ ଶୁକ୍ର ସୁନଫାଯୋଗକାରକ ।

ଏଠାରେ ଶୁକ୍ର ମୂଳତ୍ରିକୋଣ ରାଶିସ୍ଥିତ ହେତୁରୁ ବଳବାନ୍ ତେଣୁ ଏଯୋଗ ପ୍ରବଳ । ସେହିପରି—ଦ୍ୱାଦଶସ୍ଥ ରବି (ସିଂହସ୍ଥ) ଅନଫା ଯୋଗର ପୂର୍ଣ୍ଣଫଳ ପ୍ରଦହେବ କିନ୍ତୁ କନ୍ୟାସ୍ଥ ଚନ୍ଦ୍ରର ଦ୍ୱାଦଶସ୍ଥ ଶନି କିମ୍ବା ଦ୍ୱିତୀୟସ୍ଥ ରବି ଅତି ଅଳ୍ପ ଫଳ ପ୍ରଦାନ ଦେବେ । ଶନି ଶତ୍ରୁଗୃହସ୍ଥ ~~ଓ ରବି ନୀଚସ୍ଥ~~ ହେତୁ ଫଳ କମିଯିବ । ସେହିପରି ଉଚ୍ଚସ୍ଥ ଗ୍ରହ ଚନ୍ଦ୍ରର ଦ୍ୱିତୀୟ ବା ଦ୍ୱାଦଶରେ ରହିଲେ ଏହିଯୋଗ ଗୁଣିତ ପ୍ରବଳ ହେବ । ଜାତକ ପ୍ରଭୁତାଯୁକ୍ତ ବା ଅଧିକାର ଯୁକ୍ତ କହିଲେ ଏହାର କମବଳ କଳ୍ପନା କରାଯିବା ଉଚିତ । ଗୋଟିଏ ଲୋକ ନିଜ କୁଳର ବା ଗ୍ରାମର ଅଧିକାର ପାଇଛି । ଅପର ଲୋକଟି ଗୋଟିଏ ତାଲୁକା ବା ଜିଲାର ଅଧିକାର ପାଇଛି । ଉଭୟେ ଅଧିକାର ଯୁକ୍ତ ହେଲେହେଁ ପରିମାଣ ପ୍ରଭେଦ ରହିଛି । ଏ ସମସ୍ତ ଯୋଗକାରକ ଗ୍ରହବଳରୁ କଳ୍ପନା କରିବେ ।୫।

## ଦୁରୁଧୁରା ଓ କେମଦ୍ରୁମ ଯୋଗର ଫଳ

ଉତ୍ପନ୍ନଭୋଗସୁଖଭୁଗ୍‌ଧନ ବାହନାଢ୍ୟ-
ସ୍ତ୍ୟାଗାନ୍ୱିତୋ ଦୁରୁଧୁରା ପ୍ରଭବଃ ସୁଭୃତ୍ୟଃ ।
କେମଦ୍ରୁମେ ମଳିନଦୁଃଖିତ ନୀଚନିଃସ୍ୱାଃ
ପ୍ରେଷ୍ୟାଃ ଖଳାଶ୍ଚନୃପତେରପି ବଂଶଜାତାଃ ।୬।

ଦୁରୁଧୁରା ଯୋଗଜାତ ବ୍ୟକ୍ତି ବହୁ ପ୍ରକାର ସୁଖଭୋଗ କରେ । ଧନ ଓ ବାହନ ଯୁକ୍ତ ହୁଏ । ସେ ଦାନୀ ଓ ଉତ୍ତମ ଭୃତ୍ୟ ଯୁକ୍ତ ହୁଏ ।

କେମଦ୍ରୁମ ଯୋଗ ଜାତ ବ୍ୟକ୍ତି ମଳିନ, ଦୁଃଖିତ, ନୀଚକର୍ମ ଯୁକ୍ତ, ଦରିଦ୍ର, ଦାସ କର୍ମରେ ଉଦର ପୋଷଣକାରୀ ଓ ଦୁଷ୍ଟ ହୁଏ । ସେ ବ୍ୟକ୍ତି ଯେ ପାରୁ ସେ ହେଉ ଏପରିକି ରାଜ କୁଳଜ ହେଲେ ମଧ୍ୟ ଏଭଳି ମନ୍ଦଫଳ ଭୋଗ କରେ ।୬।

## ସୁନଫାଂଦ ଯୋଗକାରକ ଗ୍ରହମାନଙ୍କର ଫଳ

ପ୍ରୋତ୍ସାହଶୌର୍ଯ୍ୟ ଧନସାହସବାନ୍ ମହୀଜଃ
ସୌମ୍ୟଃ ପଟୁଃ ସୁବଚନୋ ନିପୁଣଃ କଳାସୁ ।
ଜୀବୋର୍ଥଧର୍ମସୁଖଭାକ୍ ନୃପପୂଜିତଶ୍ଚ
କାମୀ ଭୃଗୁର୍ବହୁଧନୋ ବିଷୟୋପଭୋକ୍ତା ।୭।

ସୁନଫାଂ ଅନଫାଂ ତଥା ଦୁରୁଧୁରା ଯୋଗରେ ମଙ୍ଗଳ ଯୋଗ କାରକ ହେଲେ ଉତ୍ସାହ, ଶୌର୍ଯ୍ୟ, ଧନ, ସାହସ ସମସ୍ତ ପ୍ରାପ୍ତି ହୁଏ । ବୁଧ ହେତୁକ ଯୋଗ ହେଲେ ଜାତକ ଚତୁର ସୁବଚନ କଥକ ଓ କଳା ନିପୁଣ ହୁଏ ।

ଗୁରୁ ଯୋଗକାରକ ହେଲେ ଜାତକ ଧନୀ, ଧର୍ମଯୁକ୍ତ ସୁଖୀ ଓ ରାଜପୂଜା ଯୁକ୍ତହୁଏ ।

ଶୁକ୍ର ଯୋଗ କାରକ ହେଲେ ଜାତକ ସ୍ତ୍ରୀ ପ୍ରିୟ, ବହୁ ଧନଯୁକ୍ତ ଓ ବିଷୟସୁଖ ଭୋଗ ନିରତ ହୁଏ ।

ଦ୍ର:—ଏଠାରେ ଲକ୍ଷ୍ୟ ରଖିବାକୁ ହେବ ଯେ ଗ୍ରହର ସ୍ଥିତ ବଳାନୁରୂପ ସେ ଫଳଦେବ । ଗୋଟିଏ ଗ୍ରହ ଯୋଗକାରକ ହେଲେ ସେ ତାହାର ନିଜର ଫଳଦେବ । ଦୁଇଟି ଗ୍ରହ ଏକତ୍ର ଥିଲେ ବଳାନୁରୂପ ମିଶ୍ରିତ ଫଳ ଭୋଗହେବ, ଦୁରୁଧୁରା ଯୋଗଟି ଦୁଇଟି ବା ତତୋଧିକ ଗ୍ରହହେତୁକ ସଂଘଟିତ ହେତୁ ସେହି ସେହି ଗ୍ରହମାନଙ୍କ ବଳାନୁରୂପ ମିଶ୍ରିତ ଫଳ ମାନ ଘଟିବ ।୭।

ପରବିଭବପରିଚ୍ଛଦୋପଭୋକ୍ତା ରବିତନୟୋବହୁକାର୍ଯ୍ୟକୃଦ୍ଗଣେଶଃ
ଅଶୁଭକୃଦୁଡୁପୋଽହ୍ନି ଦୃଶ୍ୟମୂର୍ତ୍ତିର୍ଗଳିତତନୁଷ୍ଟଶୁଭୋନ୍ୟଥାନ୍ୟ ଦୃଶ୍ୟମ୍ ।୮।

ଶନି ଯୋଗକାରକ ହେଲେ ଜାତକ ଅନ୍ୟର ଧନ, ବସ୍ତ୍ର ଭୋଗକରେ । ସେ ବହୁ କାର୍ଯ୍ୟ କରିପାରେ ଓ ଗଣ ତଥା ପରିଷଦର ଅଧିକାରୀ ହୁଏ ।

ଦିବାଜାତ ବ୍ୟକ୍ତିର ଚନ୍ଦ୍ର ଦୃଶ୍ୟ ଚକ୍ରାର୍ଦ୍ଧ (ସପ୍ତମ ସ୍ଫୁଟ ଠାରୁ ଲଗ୍ନସ୍ଫୁଟ ପର୍ଯ୍ୟନ୍ତ) ରେ ଥିଲେ ଫଳ ଅଶୁଭ ଓ ଅଦୃଶ୍ୟ ଚକ୍ରାର୍ଦ୍ଧରେ ଥିଲେ ଫଳ ଶୁଭଘଟେ ।

ରାତ୍ରିଜନ୍ମ ବ୍ୟକ୍ତିର ଚନ୍ଦ୍ର ଦୃଶ୍ୟ ଚକ୍ରାର୍ଦ୍ଧରେ ଥିଲେ ଶୁଭହୁଏ ଓ ଅଦୃଶ୍ୟ ଚକ୍ରାର୍ଦ୍ଧରେ ରହିଲେ ଫଳ ଅଶୁଭ ହୁଏ ।

ଦୃଶ୍ୟ ଚକ୍ରାର୍ଦ୍ଧ—ଲଗ୍ନସ୍ଫୁଟ ଯେ ରାଶିରେ ହେବ ତାହାର ସପ୍ତମ ରାଶିର ସେତିକି ଅଂଶ ଠାରୁ ଲଗ୍ନସ୍ଫୁଟ ଯାଏ ।

ଅଦୃଶ୍ୟ ଚନ୍ଦ୍ରାର୍କ—ଲଗ୍ନସ୍ଥ ତ୍ରିଂଶ ଠାରୁ ସପ୍ତମ ରାଶିର ସେଉଁଷ ଅଂଶଯାଏ ।୮।

## ଲଗ୍ନ ଓ ଚନ୍ଦ୍ରର ଉପଚୟ ସ୍ଥାନରେ ଥିବା ଶୁଭଗ୍ରହ ଫଳ

ଲଗ୍ନାଦତୀବ ବସୁମାନ୍‌ବସୁମାଞ୍ଛଶାଙ୍କା—
ତ୍ସୌମ୍ୟଗ୍ରହୈରୁପଚୟୋପଗତୈଃ ସମସ୍ତୈଃ ।
ଦ୍ୱାଭ୍ୟାଂ ସମୋଽଲ୍ପବସୁମାଂଷ୍ଟ ତଦୂନତାୟା—
ମନ୍ୟେଷ୍ୱସତ୍ସ୍ୱପିଫଲେଷ୍ୱିଦମୁକ୍ତଷ୍ଟେନ ।୯।

ଇତ ଶ୍ରୀ ବରାହମିହିର କୃତେ ବୃହଜାତକେ ଚନ୍ଦ୍ରଯୋଗାଧ୍ୟାୟସ୍ତ୍ରୟୋଦଶଃ

ଯେଉଁ ଜାତକରେ ଲଗ୍ନର ଉପଚୟ ସ୍ଥାନରେ (୩,୬,୧୦,୧୧) ସମସ୍ତ ଶୁଭଗ୍ରହ ଥିବେ ସେ ବିଶେଷ ଧନଯୁକ୍ତ ହେବ । ଚନ୍ଦ୍ରର ଉପଚୟ ସ୍ଥାନରେ ସମସ୍ତ ଶୁଭଗ୍ରହ ଥିଲେ ମଧ୍ୟ ଜାତକ ଧନୀହେବ ।

କୌଣସି ଦୁଇଟି ଶୁଭଗ୍ରହ ଥିଲେ ଜାତକ ମଧ୍ୟମ ପ୍ରକାର ଧନୀ ଓ ଗୋଟିଏ ଶୁଭଗ୍ରହ ଥିଲେ ଅଳ୍ପଧନ ଯୁକ୍ତହୁଏ ।

ଏହି ସ୍ଥାନମାନଙ୍କରେ କୌଣସି ଶୁଭଗ୍ରହ ନ ଥିଲେ ଜାତକ ଦରିଦ୍ର ହୁଏ ।

ଲଗ୍ନ ଓ ଚନ୍ଦ୍ର ଉଭୟଙ୍କ ଉପଚୟ ସ୍ଥାନରେ ଶୁଭଗ୍ରହମାନେ ଥିଲେ ବହୁଧନ ଲାଭହୁଏ ।

ଏହିଭଳି ଉପଚୟ ଯୋଗ ଘଟିଲେ କେମଦ୍ରୁମ ଯୋଗର ଫଳ ପ୍ରକାଶ ପାଇ ନପାରେ ।୯।

ଶ୍ରୀବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଚନ୍ଦ୍ରଯୋଗ ନାମକ
ତ୍ରୟୋଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



# ଦ୍ୱିଗ୍ରହଯୋଗାଧ୍ୟାୟଶ୍ଚତୁର୍ଦ୍ଦଶଃ

## ଦୁଇଟି ଗ୍ରହ ସଂଯୁକ୍ତ ହେବା ଯୋଗଫଳ

ତଗ୍ମାଂଶୁର୍ଜ୍ଜନୟତ୍ୟ୍ୟପେଶସହିତୋ ଯନ୍ତ୍ରାଶ୍ମକାରଂ ନରଂ
ଭୌମେନାଘରତଂ ବୁଧେନ ନିପୁଣଂ ଧୀକୀର୍ତ୍ତିସୌଖ୍ୟାନ୍ୱିତମ୍
କ୍ରୂରଂ ବାକ୍ପତିନାନ୍ୟକାର୍ଯ୍ୟନିରତଂ ଶୁକ୍ରେଣରଙ୍ଗାୟୁଧୈ—
ର୍ଲବ୍ଧସ୍ୱଂ ରବିଜେନ ଧାତୁକୁଶଳଂ ଭାଣ୍ଡପ୍ରକାରେଷୁବା ।୧।

ରବି ଚନ୍ଦ୍ର ସହିତ ଥିଲେ, ଯନ୍ତ୍ରାଦି ନିର୍ମାଣ ଓ ପ୍ରସ୍ତରର କାର୍ଯ୍ୟ ଜାତକ କରେ । ରବି ମଙ୍ଗଳ ସହିତ ଥିଲେ ଜାତକ ପାପାସକ୍ତ ହୁଏ । ରବି ବୁଧ ସହିତ ଥିଲେ ଜାତକ ସବୁ କାର୍ଯ୍ୟରେ ନିପୁଣ, ବୁଦ୍ଧିମାନ୍, କୀର୍ତ୍ତିମାନ ଓ ସୁଖୀ ହୁଏ ।

ରବି ବୃହସ୍ପତି ସହିତ ଥିଲେ ଜାତକ ପାପବୁଦ୍ଧି ଯୁକ୍ତ ଓ ଅନ୍ୟର କାର୍ଯ୍ୟକରେ ।

ରବି ଶୁକ୍ର ସହିତ ଥିଲେ ଜାତକ ଯୁଦ୍ଧଦ୍ୱାରା, ଶସ୍ତ୍ରନିର୍ମାଣ ତଥା ବ୍ୟବସାୟ ଦ୍ୱାରା ଧନପାଏ ।

ରବି ଶନି ସହିତ ଥିଲେ ଜାତକ ଧାତୁ ବ୍ୟବସାୟୀ ତଥା ଧାତୁ-ପାତ୍ରାଦି ନିର୍ମାଣ କାର୍ଯ୍ୟରେ ନିପୁଣ ହୁଏ ।୧।

କୂଟସ୍ତ୍ର୍ୟାସବକୁମ୍ଭପଣ୍ୟମଶିବଂ ମାତୁଃ ସବକ୍ରଃ ଶଶୀ
ସଜ୍ଞଃ ପ୍ରଶ୍ରୁତବାକ୍ୟମର୍ଥ ନିପୁଣଂ ସୌଭାଗ୍ୟକୀର୍ତ୍ତ୍ୟାନ୍ୱିତମ୍ ।
ବିକ୍ରାନ୍ତଂ କୁଳମୁଖ୍ୟମସ୍ଥିରମତିଂ ବିତ୍ତେଶ୍ୱରଂ ସାଙ୍ଗିରଃ-
ବସ୍ତ୍ରାଣାଂ ସସିତଃ କ୍ରିୟାଦିକୁଶଳଂ ସାର୍କିଃ ପୁନର୍ଭୂସୁତମ୍ ।୨।

ଚନ୍ଦ୍ର ମଙ୍ଗଳ ଯୁକ୍ତ ହେଲେ ଜାତକ ନାନା ପ୍ରକାର ନିନ୍ଦ୍ୟ ବ୍ୟବସାୟ ଯଥା ସ୍ତ୍ରୀ ବିକ୍ରୟ, ମଦ୍ୟବିକ୍ରୟ, ଭାଣ୍ଡବିକ୍ରୟ କରିଥାଏ । ତାହାର ମାତା ସୁଖ ଭୋଗ କରି ନପାରେ ।

ଚନ୍ଦ୍ର ବୁଧ ଯୁକ୍ତ ହେଲେ ଜାତକ ପ୍ରିୟବାଦୀ, ବିଷୟ ବୋଧରେ ସୂକ୍ଷ୍ମଜ୍ଞାନ ଯୁକ୍ତ, ସୌଭାଗ୍ୟ ପୁଣି କୀର୍ତ୍ତିଯୁକ୍ତ ହୁଏ ।

ଚନ୍ଦ୍ର ବୃହସ୍ପତି ଯୁକ୍ତ ହେଲେ ଜାତକ ଶତ୍ରୁ ଜୟକାରୀ, ନିଜ କୁଳର ପ୍ରଧାନ, ଚଞ୍ଚଳମନା ଓ ବହୁଧନର ଅଧିକାରୀ ହୁଏ ।

ଚନ୍ଦ୍ର ଶୁକ୍ରଯୁକ୍ତ ହେଲେ ଜାତକ ବସ୍ତ୍ର କ୍ରୟ ବିକ୍ରୟରେ କୁଶଳ ବା ବସ୍ତ୍ର ବୁଣିବା ତଥା ଶିଳ୍ପ କର୍ମ ଇତ୍ୟାଦିରେ କୁଶଳ ହୁଏ ।

ଚନ୍ଦ୍ର ଶନିଯୁକ୍ତ ହେଲେ ଜାତକର ମାତା ପ୍ରଥମରେ ବିବାହ କରିଥିବା ବା ବାଗ୍‌ଦତ୍ତ ହୋଇଥିବା ପତିକୁ ତ୍ୟାଗ କରିଥିବ ।୨।

ମୂଳାଦିସ୍ନେହକୂଟୈର୍ବ୍ୟବହରତି ବଣିଗ୍‌ବାହୁଯୋଦ୍ଧା ସସୌମ୍ୟେ
ପୁର୍ଯ୍ୟଧ୍ୟକ୍ଷଃ ସଜୀବେ ଭବତି ନରପତିଃ ପ୍ରାପ୍ତବିତ୍ତୋ ଦ୍ୱିଜୋ ବା ।
ଗୋପୋମଲ୍ଲୋଽଥ ଦକ୍ଷଃ ପରଯୁବତିରତୋ ଦ୍ୟୂତକୃତ୍ସାସୁରେଜ୍ୟେ
ଦୁଃଖାର୍ତ୍ତୋଽସତ୍ୟସନ୍ଧଃ ସସବିତୃତନୟେ ଭୂମିଜେ ନିନ୍ଦିତଶ୍ଚ ।୩।

ମଙ୍ଗଳ ବୁଧ ଯୁକ୍ତ ହେଲେ (ସହିତ ଥିଲେ) ଜାତକ ମୂଳ, ଫଳ, ପୁଷ୍ପ, ତୈଳ, ଅତର ଓ ଅନ୍ୟାନ୍ୟ ଦ୍ରବ୍ୟ ବିକ୍ରୟକାରୀ ହୁଏ ଓ ମଲ୍ଲଯୁଦ୍ଧରେ କୁଶଳ ହୁଏ ।

ମଙ୍ଗଳ ଗୁରୁଯୁକ୍ତ ହେଲେ ଜାତକ ନଗରର ଅଧ୍ୟକ୍ଷ (ମ୍ୟୁନିସିପାଲ ଚେଆରମାନ ପ୍ରଭୃତି କାର୍ଯ୍ୟ) ରାଜତୁଲ୍ୟ ତଥା ଧନଯୁକ୍ତ ବ୍ରାହ୍ମଣ ହୁଏ ।

ମଙ୍ଗଳ ଶୁକ୍ରଯୁକ୍ତ ହେଲେ ଜାତକ ଗୋସମ୍ପଦଯୁକ୍ତ, ମଲ୍ଲବିଦ୍ୟାପ୍ରବୀଣ, ଚତୁର, ପରସ୍ତ୍ରୀରତ ଓ ଦ୍ୟୂତକାର ହୁଏ । ମଙ୍ଗଳ ଶନିଯୁକ୍ତ ହେଲେ ଜାତକ ଦୁଃଖାର୍ତ୍ତ, ମିଥ୍ୟାବାଦୀ ଓ ନିନ୍ଦିତ କର୍ମ କରେ ।୩।

ସୌମ୍ୟେ ରଙ୍ଗଚରୋ ବୃହସ୍ପତିଯୁତେ ଗୀତପ୍ରିୟୋ ନୃତ୍ୟବିତ୍
ବାଗ୍ମୀ ଭୂଗଣପଃ ସିତେନମୃଦୁନା ମାୟାପଟୁର୍ଲଙ୍ଘକଃ ।
ସଦ୍‌ବିଦ୍ୟୋ ଧନଦାରବାନ୍ ବହୁଗୁଣଃ ଶୁକ୍ରେଣଯୁକ୍ତେ ଗୁରୌ
ଜ୍ଞେୟଃ ଶ୍ମଶ୍ରୁକରୋଽସିତେନ ଘଟକୃଜ୍ଜାତୋଽନ୍ନକାରୋଽପି ବା ।୪।

ବୁଧ ଗୁରୁଯୁକ୍ତ ହେଲେ ଜାତକ ବାହୁଯୁଦ୍ଧ କୁଶଳ, ଗୀତପ୍ରିୟ ଓ ନୃତ୍ୟକଳା କୁଶଳ ହୁଏ ।

ବୁଧ ଶୁକ୍ର ଯୁକ୍ତ ହେଲେ ଜାତକ ଚତୁର, ବହୁଭୂମିର ନାୟକ ତଥା ବହୁ ବ୍ୟକ୍ତିର ନେତୃତ୍ୱ ଗ୍ରହଣରେ ସମର୍ଥ ହୁଏ ।

ବୁଧ ଶନିଯୁକ୍ତ ହେଲେ ଜାତକ ପରକୁ ଠକିବା ବିଷୟରେ ପାରଙ୍ଗମ, ଗୁରୁଜନମାନଙ୍କ ଆଦେଶକୁ ଅମାନ୍ୟ କରିଥାଏ ।

ଗୁରୁ ଶୁକ୍ର ଯୁକ୍ତହେଲେ ଜାତକ ଉତ୍ତମ ବିଦ୍ୟା, ଧନ, ସ୍ତ୍ରୀ ତଥା ବହୁଗୁଣ ଯୁକ୍ତ ହୁଏ ।

ଗୁରୁ ଶନି ଯୁକ୍ତ ହେଲେ ଜାତକ କ୍ଷୌରବୃତ୍ତି, କୁମ୍ଭାରକାର୍ଯ୍ୟ କିମ୍ବା ପାଚକ ବୃତ୍ତି ଅବଲମ୍ବନ କରେ ।୪।

ଅସିତସିତସମାଗମେଽଲ୍ପଚକ୍ଷୁର୍ଯୁବତି ସମାଶ୍ରୟସଂପ୍ରବୃଦ୍ଧବିତ୍ତଃ
ଭବତି ଚ ଲିପିପୁସ୍ତକଚିତ୍ରବେତ୍ତା କଥିତଫଲୈଃ ପରତୋ ବିକଲ୍ପନୀୟାଃ ।୫।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ
ଦ୍ୱିଗ୍ରହଯୋଗାଽଧ୍ୟାୟଶ୍ଚତୁର୍ଦ୍ଦଶଃ ॥

ଶୁକ୍ର ଶନିଯୁକ୍ତ ହେଲେ ଦୃଷ୍ଟିଶକ୍ତି କ୍ଷୀଣହୁଏ । ସ୍ତ୍ରୀର ଆଶ୍ରୟରୁ ଧନବୃଦ୍ଧି ହୁଏ । ସେ ଲିଖନ ଓ ଚିତ୍ର ଅଙ୍କନ ଉଭୟରେ ଦକ୍ଷତା ଲାଭ କରେ ।

ଏକରୁ ଅଧିକ ଗ୍ରହ ଥିଲେ ଅଲଗା ଅଲଗା ଦୁଇଟିର ଫଳ ଦେଖି ତାପରେ ସେ ସମସ୍ତ ଏକତ୍ର କରି ଫଳ କହିବେ, ମନେକର ଗୋଟିଏ ଜାତକରେ ବୁଧ, ଶୁକ୍ର ଓ ମଙ୍ଗଳ ଏକତ୍ର ଅଛନ୍ତି । ତେବେ ସେଥିରେ ବୁଧ, ଶୁକ୍ର; ବୁଧ, ମଙ୍ଗଳ ଓ ଶୁକ୍ର, ମଙ୍ଗଳ, ସମସ୍ତଙ୍କର ଫଳ ଘଟିବ ।

ଯୁକ୍ତ ହେବା ଗ୍ରହମାନଙ୍କର ସ୍ଥାନାଦି ବଳାନୁରୂପ ଯୋଗ ଫଳ ଘଟିବ । ମନେକର ଶୁକ୍ର ଓ ଶନି ମେଷରାଶିରେ ଯୁକ୍ତ ହେଲେ, ଏଠାରେ ଜାତକର ଦୃଷ୍ଟିଶକ୍ତି କ୍ଷୀଣହେବ, ସ୍ତ୍ରୀର ଆଶ୍ରୟରୁ ସେ ଅତିଅଳ୍ପ ଧନ ପାଇବ, ଲିଖନ ତଥା ଚିତ୍ରାଙ୍କନରେ ସାମାନ୍ୟ ଉପାର୍ଜନ କରିବ, କିନ୍ତୁ ଏହି ମିଶ୍ରଣ ଯଦି ବୃଷ ତୁଳା, ମକର ବା କୁମ୍ଭ ରାଶିରେ ହେବ ବା ଅନ୍ୟତ୍ର ବଳଯୁକ୍ତ ହୋଇ ହେବ ତେବେ ଏଥିରେ ଏହି ଫଳର ବହୁଳତା କଳ୍ପନା କରାଯିବ । ସେପରି ସ୍ଥଳେ ଜାତକ ଚିତ୍ରଅଙ୍କନ କରି ଦେଶଖ୍ୟାତ ମଧ୍ୟ ହୋଇ ପାରିବ, ଶନି ବୃହସ୍ପତି ସାଧାରଣ ଭାବେ ମିଶିଥିଲେ ଜାତକ ନିଜେ ରାନ୍ଧୁଣିଆ କାମ କରିବ, କିନ୍ତୁ ଏହି ଶନି ତଥା ବୃହସ୍ପତି ଉଚ୍ଚାଦି ବଳଯୁକ୍ତ ହୋଇଥିଲେ ଜାତକ ଗୋଟିଏ ଭୋଜନାଳୟ (ହୋଟେଲ)ର ମାଲିକ ହୋଇ ପାରିବ । ଯେଉଁ ଯୋଗର ସାଧାରଣ ବଳରେ ଜାତକ କୁମ୍ଭାର ହୋଇ ହାଣ୍ଡି ଗଢ଼ିବ ବା ତାହାର ବ୍ୟବସାୟ କରିବ । ତାହାର ବିଶେଷ ବଳରେ ସେ ମାଟିର ପାତ୍ର ପ୍ରସ୍ତୁତରେ ବୃହତ୍ ବ୍ୟବସାୟ କରି ଧନାର୍ଜନ କରିବ ।୫।

ଶ୍ରୀ ବରାହମିହିରକୃତ ବୃହଜ୍ଜାତକ ଗ୍ରନ୍ଥର ଦ୍ୱିଗ୍ରହଯୋଗାଧ୍ୟାୟ
ନାମକ ଚତୁର୍ଦ୍ଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



# ପ୍ରବ୍ରଜ୍ୟାଯୋଗାଧ୍ୟାୟଃ ପଞ୍ଚଦଶଃ

## ଚାରିଟି ବା ତତୋଧିକ ଗ୍ରହସଂଯୋଗ ହେତୁ ସନ୍ନ୍ୟାସ ଯୋଗ

ଏକସ୍ଥୈଶ୍ଚତୁରାଦିଭିର୍ବଲଯୁତୈର୍ଜାତାଃ ପୃଥଗ୍‌ବୀର୍ଯ୍ୟଗୈଃ
ଶାକ୍ୟାଜୀବକଭିକ୍ଷୁବୃଦ୍ଧଚରକା ନିର୍ଗ୍ରନ୍ଥବନ୍ୟାଶନାଃ
ମାହେୟଜ୍ଞଗୁରୁକ୍ଷପାକରସିତପ୍ରାଭାକରୀନୈଃ କ୍ରମାତ୍
ପ୍ରବ୍ରଜ୍ୟାବଲଭିଃ ସମାଃ ପରଜିତୈସ୍ତତ୍ସ୍ୱାମିଭିଃ ପ୍ରଚ୍ୟୁତଃ ।୧।

ଜନ୍ମକାଳରେ ଚାରି ବା ତହିଁରୁ ଅଧିକ ଗ୍ରହ ଏକ ରାଶିରେ ଥିଲେ ପ୍ରବ୍ରଜ୍ୟା ବା ସନ୍ୟାସ ଯୋଗ ସମ୍ଭବ ହୁଏ । ଏହି ଗ୍ରହମାନଙ୍କ ମଧ୍ୟରେ ଗୋଟିଏ ଗ୍ରହ ବଳବାନ୍ ଭାବେ ଥିଲେ, ସେହି ଗ୍ରହର ଲକ୍ଷଣାନୁରୂପ ସନ୍ନ୍ୟାସ ବା ପ୍ରବ୍ରଜ୍ୟା ଯୋଗ ହୁଏ । ଦୁଇଟି ଗ୍ରହ ବଳବାନ୍ ଥିଲେ ଦୁଇଟି ଗ୍ରହର ଲକ୍ଷଣାନୁରୂପ ପ୍ରବ୍ରଜ୍ୟା ଘଟେ । ଅଧିକ ଗ୍ରହ ବଳବାନ୍ ହୋଇଥିଲେ ସେମାନଙ୍କର ଅନୁରୂପ ପ୍ରବ୍ରଜ୍ୟା ହୁଏ ।

ଏହି ସଂଯୁକ୍ତ ଗ୍ରହମାନଙ୍କ ମଧ୍ୟରେ ମଙ୍ଗଳ ବଳିଷ୍ଠ ହୋଇଥିଲେ ଲାଲବସ୍ତ୍ର ପରିଧାନକାରୀ ସନ୍ନ୍ୟାସ, ବୁଧ ବଳିଷ୍ଠ ହେଲେ ଦଣ୍ଡ ଧାରଣକାରୀ ସନ୍ନ୍ୟାସ, ଗୁରୁ ବଳିଷ୍ଠ ହେଲେ ଭିକ୍ଷୁକ ସନ୍ନ୍ୟାସ, ଚନ୍ଦ୍ର ବଳିଷ୍ଠ ହେଲେ ବୃଦ୍ଧଶ୍ରାବକ ବା କାପାଳିକ ସନ୍ନ୍ୟାସ, ଶୁକ୍ର ବଳିଷ୍ଠ ହେଲେ ଚକ୍ରଧାରଣକାରୀ ସନ୍ୟାସ, ଶନି ବଳିଷ୍ଠ ହେଲେ ଦିଗମ୍ବର (ବସ୍ତ୍ରହୀନ) ସନ୍ନ୍ୟାସ ଓ ରବି ବଳବାନ୍ ହେଲେ ବନ୍ୟ ଫଳମୂଳ ଭୋଜି ସନ୍ୟାସ କରନ୍ତି ।

ଯୁକ୍ତ ଗ୍ରହମାନଙ୍କ ମଧ୍ୟରେ କୌଣସି ଗୋଟିଏ ଗ୍ରହ ବଳବାନ ନଥିଲେ ସନ୍ନ୍ୟାସ ଯୋଗ ହୁଏ ନାହିଁ ।

ପ୍ରବ୍ରଜ୍ୟା କାରକ ଗ୍ରହ ଗ୍ରହଯୁଦ୍ଧରେ ପରାଜିତ (ଏକାଂଶଗତ ଗ୍ରହମାନଙ୍କ ମଧ୍ୟରୁ ଯେ ଦକ୍ଷିଣ ଦିଗସ୍ଥ ଓ ଜ୍ୟୋତିହୀନ) ହେଲେ ଜାତକ ତାହାର ଦଶାନ୍ତର୍ଦଶାରେ ପ୍ରବ୍ରଜ୍ୟା ଗ୍ରହଣ କରି କିଛି ଦିନପରେ ତ୍ୟାଗ କରିଥାଏ । ଦୁଇଟି ଗ୍ରହ ପ୍ରବ୍ରଜ୍ୟା କାରକ ହେଲେ ଜାତକ ପ୍ରଥମ ଗ୍ରହର ଦଶାନ୍ତର୍ଦଶାରେ ତାହାର ପ୍ରବ୍ରଜ୍ୟା ଗ୍ରହଣ କରି ଅପର ପ୍ରବ୍ରଜ୍ୟା କାରକ ଗ୍ରହର ଦଶାନ୍ତର୍ଦଶାରେ ଅନ୍ୟ ପ୍ରବ୍ରଜ୍ୟା ଗ୍ରହଣ କରିଥାଏ ।

ଗୋଟିଏ ଗ୍ରହ ପ୍ରବ୍ରଜ୍ୟା କାରକ ହୋଇଥିବ, ସେ ଯଦି ପରାଜିତ ବା ଦୁର୍ବଳ ହୋଇ ନଥିବ, ତେବେ ଜୀବନ ତମାମ ସେହି ସନ୍ନ୍ୟାସ ଯୋଗ

ଅବଲମ୍ବନ କରି ଜାତକ ରହିବ । ଦୁଇଟି ଗ୍ରହ ବଳବାନ୍ ହେଲେ ପ୍ରଥମ ତ୍ୟାଗ କରି ଦ୍ୱିତୀୟ ଗ୍ରହର ସନ୍ନ୍ୟାସ ଅବଲମ୍ବନ କରି ଜୀବନ କଟାଇ ଦେବ ।୧।

## ଦୀକ୍ଷାହୀନ ସନ୍ନ୍ୟାସ ଯୋଗ

ରବିଲୁପ୍ତକରୈରଦୀକ୍ଷିତା ବଳିଭକ୍ତ୍ୟଦଗତଭକ୍ତୟୋ ନରାଃ
ଅଭିଯାଚିତମାତ୍ରଦୀକ୍ଷିତା ନିହତୈରନ୍ୟନିରୀକ୍ଷିତୈରପି ।୨।

ପ୍ରବ୍ରଜ୍ୟା ଯୋଗକାରକ ଗ୍ରହ ବଳବାନ୍ ହୋଇ ଅସ୍ତଂଗତ ହୋଇଥିଲେ (ଅସ୍ତାଂଶ ମଧ୍ୟରେ ଥିଲେ) ଜାତକ ମନ୍ତ୍ରୋପଦେଶ ଗ୍ରହଣ ନକରି ବନାଗୁଳୁରେ ସନ୍ନ୍ୟାସ ହୁଏ । ସେ ସେହି ଗ୍ରହାନୁରୂପ ପ୍ରବ୍ରଜ୍ୟାଧାରୀ ସନ୍ନ୍ୟାସୀଙ୍କର ଅନୁଗତ ହୁଏ ।

ପ୍ରବ୍ରଜ୍ୟାକାରକ ଗ୍ରହ ଦୁର୍ବଳ ହେଲେ–ଅନ୍ୟଗ୍ରହ ଦ୍ୱାରା ପରାଜିତ ହେଲେ ଓ ଅନ୍ୟଗ୍ରହ ଦ୍ୱାରା ଦୃଷ୍ଟହେଲେ ପ୍ରବ୍ରଜ୍ୟା କାରକ ଗ୍ରହାନୁରୂପ ସନ୍ନ୍ୟାସୀଙ୍କ ଠାରେ ମନ୍ତ୍ରୋପଦେଶ ପାଇଁ ପ୍ରାର୍ଥୀ ହେଲେହେଁ ଗୁରୁ ଅନୁଗ୍ରହ ଦେଖାନ୍ତି ନାହିଁ ।

ଜନ୍ମେଶୋଽନ୍ୟୈର୍ଯଦ୍ୟଦୃଷ୍ଟୋଽର୍କପୁତ୍ରଂ
ପଶ୍ୟତ୍ୟାର୍କିର୍ଜନ୍ମପଂ ବା ବଳୋନମ୍ ।
ଦୀକ୍ଷାଂ ପ୍ରାପ୍ନୋତ୍ୟାର୍କି ଦୃକ୍କାଣସଂସ୍ଥେ
ଭୌମାର୍କ୍ୟଂଶେ ସୌରଦୃଷ୍ଟେ ଚ ଚନ୍ଦ୍ରେ ।୩।

ଚନ୍ଦ୍ର ଥିବା ରାଶିର ଅଧିପତି ଅନ୍ୟଗ୍ରହଦ୍ୱାରା ଦୃଷ୍ଟ ନହୋଇ ଶନିଙ୍କ ଦ୍ୱାରା ଦୃଷ୍ଟହେଲେ ସନ୍ନ୍ୟାସ ଯୋଗ ହେବ । ଚନ୍ଦ୍ରସ୍ଥିତ ରାଶିପତି ଓ ଶନିଙ୍କ ମଧ୍ୟରେ ଯେ ବଳିଷ୍ଠ ସେହି ଦଶାରେହିଁ ସନ୍ନ୍ୟାସ ପ୍ରାପ୍ତି କହିବେ ।

ବଳବାନ୍ ଶନି ଚନ୍ଦ୍ରରାଶ୍ୟଧିପତିଙ୍କୁ ଦେଖିଲେ ମଧ୍ୟ ଶନିଙ୍କ ସମ୍ବନ୍ଧୀୟ ପ୍ରବ୍ରଜ୍ୟା ପ୍ରାପ୍ତି ଘଟେ ।

ଅନ୍ୟ କୌଣସି ଗ୍ରହଦ୍ୱାରା ଦୃଷ୍ଟ ନହେଉଥିବା ଶନି ଚନ୍ଦ୍ରଙ୍କୁ ଦେଖୁଥିବ, ଶନିଙ୍କ ଦ୍ରେକ୍କାଣରେ ଚନ୍ଦ୍ର ରହି ମଙ୍ଗଳ ବା ଶନିର ନବାଂଶରେ ଥିଲେ ପ୍ରବ୍ରଜ୍ୟା ଯୋଗ ଘଟିବ ।୩।

## ରାଜଯୋଗ ସହିତ ସନ୍ନ୍ୟାସ ଓ ଗ୍ରନ୍ଥକର୍ତ୍ତା ଯୋଗ

ସୁରଗୁରୁଶଶିହୋରାସ୍ୱାର୍କିଦୃଷ୍ଟାସୁ ଧର୍ମେ
ଗୁରୁରଥ ନୃପତୀନାଂ ଯୋଗଜସ୍ତୀର୍ଥକୃତ୍ସ୍ୟାତ୍

ନବମଭବନସଂସ୍ଥେ ମନ୍ଦଗେନୈ୍ୟରଦୃଷ୍ଟେ
ଭବତି ନରପଯୋଗେ ଦୀକ୍ଷିତଃ ପାର୍ଥିବେନ୍ଦ୍ରଃ ।୪।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ
ପ୍ରବ୍ରଜ୍ୟାଧ୍ୟାୟଃ ପଞ୍ଚଦଶଃ ।

ବୃହସ୍ପତି, ଚନ୍ଦ୍ର, ଲଗ୍ନ ଏମାନଙ୍କ ଉପରେ ଶନିଙ୍କର ଦୃଷ୍ଟିଥିଲେ, ଗୁରୁ ନବମରେ ଥିଲେ, ଜାତକରେ ରାଜଯୋଗ ଘଟିଥିଲେହେଁ ସେହି ଯୋଗର ଫଳରେ ରାଜାହୋଇ ମଧ୍ୟ ତୀର୍ଥ ଭ୍ରମଣକାରୀ ଓ ଶାସ୍ତ୍ର ପାରଙ୍ଗମ ହୁଏ ।

ଶନି ନବମ ଭାବରେ ଥାଇ କୌଣସି ଗ୍ରହ ଦ୍ୱାରା ଦୃଷ୍ଟ ନହେଲେ ରାଜଯୋଗ ଜାତ ବ୍ୟକ୍ତି ରାଜା ହୋଇ ସନ୍ୟାସ ଗ୍ରହଣକରେ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ପ୍ରବ୍ରଜ୍ୟା ଯୋଗ ନାମକ
ପଞ୍ଚଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



## ବୃଷଶୀଳାଧ୍ୟାୟଃ ଷୋଡ଼ଶଃ

### ଅଶ୍ୱିନୀ ଏବଂ ଦ୍ୱିଜାନକ୍ଷତ୍ରରେ ଜାତହେବା ଫଳ

ପ୍ରିୟଭୂଷଣଃ ସୁରୂପଃ ସୁଭଗୋ ଦକ୍ଷୋଽଶ୍ୱିନୀଷୁ ମତିମାଂଶ୍ଚ
କୃତନିଶ୍ଚୟଃ ସତ୍ୟପରୋ ଦକ୍ଷଃ ସୁଖୀତଶ୍ଚ ଭରଣୀଷୁ ।୧।

ଅଶ୍ୱିନୀ ନକ୍ଷତ୍ର ଜାତବ୍ୟକ୍ତି ଜାତକ ଅଳଙ୍କାର ତଥା ବେଶଭୂଷା ପ୍ରିୟ ହୁଏ । ସେ ସୁନ୍ଦର, ସମସ୍ତଙ୍କର ପ୍ରିୟ, କର୍ମଦକ୍ଷ ଓ ବୁଦ୍ଧିମାନ୍ ହୁଏ, ଦ୍ୱିଜାନକ୍ଷତ୍ର ଜାତବ୍ୟକ୍ତି ଦୃଢପ୍ରତିଜ୍ଞ ଅର୍ଥାତ୍ ଯେଉଁକାର୍ଯ୍ୟ ଇଚ୍ଛାକରେ ସେ ତାହା ଯେ କୌଣସି ଉପାୟରେ କରେ । ସେ ସତ୍ୟବାଦୀ, ଦକ୍ଷତା ସମ୍ପନ୍ନ ଓ ସୁଖୀ ହୁଏ ।୧।

### କୃତ୍ତିକା ଓ ରୋହଣୀ ନକ୍ଷତ୍ର ଜାତଫଳ

ବହୁଭୁକ୍ ପରଦାରରତସ୍ତେଜସ୍ୱୀ କୃତ୍ତିକାସୁ ବିଖ୍ୟାତଃ
ରୋହିଣ୍ୟାଂ ସତ୍ୟଶୁଚିଃ ପ୍ରିୟମ୍ବଦଃ ସ୍ଥିରମତିଃ ସୁରୂପଶ୍ଚ ।୨।

କୃତ୍ତିକା ନକ୍ଷତ୍ର ଜାତବ୍ୟକ୍ତି ବହୁଭୋଜୀ, ପରସ୍ତ୍ରୀରତ, ତେଜସ୍ୱୀ ଓ ବିଖ୍ୟାତ ହୁଏ ।

ରୋହିଣୀ ନକ୍ଷତ୍ର ଜାତବ୍ୟକ୍ତି ସତ୍ୟପ୍ରିୟ, ପବିତ୍ର, ପ୍ରିୟବାଦୀ, ସ୍ଥିରବୁଦ୍ଧି ଯୁକ୍ତ ଓ ସୁନ୍ଦର ହୁଏ ।

## ମୃଗଶିରା ଓ ଆର୍ଦ୍ରା ନକ୍ଷତ୍ର ଜାତଫଳ

ଚପଲଶ୍ଚତୁରୋଭୀରୁଃ ପଟୁରୁତ୍ସାହୀ ଧନୀ ମୃଗେ ଭୋଗୀ
ଶଠଗର୍ବିତଃ କୃତଘ୍ନୋ ହିଂସ୍ରଃ ପାପଶ୍ଚରୌଦ୍ରର୍କ୍ଷେ ।୩।

ମୃଗଶିରା ନକ୍ଷତ୍ର ଜାତ ବ୍ୟକ୍ତି ଚଞ୍ଚଳମନା, ଚତୁର, ଭୟାଳୁ, କର୍ମଦକ୍ଷ, ଉତ୍ସାହୀ, ଧନୀ ଓ ଭୋଗଯୁକ୍ତ ହୁଏ ।

ଆର୍ଦ୍ରା ନକ୍ଷତ୍ର ଜାତ ବ୍ୟକ୍ତି ଶଠ, ଗର୍ବିତ, କୃତଘ୍ନ, ହିଂସାପର ଓ ପାପ-କର୍ମରତ ହୁଏ ।୩।

## ପୁନର୍ବସୁ ନକ୍ଷତ୍ର ଜାତଫଳ

ଦାନ୍ତଃ ସୁଖୀ ସୁଶୀଳୋ ଦୁର୍ମେଧା ରୋଗଭାକ୍ ପିପାସୁଶ୍ଚ
ଅଳ୍ପେନ ଚ ସନ୍ତୁଷ୍ଟଃ ପୁନର୍ବସୌ ଜାୟତେ ମନୁଜଃ ।୪।

ପୁନର୍ବସୁ ନକ୍ଷତ୍ର ଜାତବ୍ୟକ୍ତି ଇନ୍ଦ୍ରିୟଜୟକାରୀ, ସୁଖୀ, ଉତ୍ତମ ସ୍ୱଭାବ, ମୋଟାବୁଦ୍ଧି, ରୋଗଯୁକ୍ତ, ସର୍ବଦା ପାନ ଇଚ୍ଛାଯୁକ୍ତ ଓ ଅଳ୍ପରେ ସନ୍ତୁଷ୍ଟ ହୁଏ ।୪।

## ପୁଷ୍ୟା ଓ ଅଶ୍ଳେଷା ନକ୍ଷତ୍ର ଜାତଫଳ

ଶାନ୍ତାତ୍ମା ସୁଭଗଃ ପଣ୍ଡିତୋ ଧନୀ ଧର୍ମସଂଯୁତଃ ପୁଷ୍ୟେ
ଶଠଃ ସର୍ବଭକ୍ଷଃ ପାପଃ କୃତଘ୍ନଧୂର୍ତ୍ତଶ୍ଚ ଭୌଜଙ୍ଗେ ।୫।

ପୁଷ୍ୟା ନକ୍ଷତ୍ର ଜାତବ୍ୟକ୍ତି ଶାନ୍ତ ପ୍ରକୃତି, ସମସ୍ତଙ୍କର ପ୍ରିୟ, ପଣ୍ଡିତ, ଧନୀ ଓ ଧର୍ମଯୁକ୍ତ ହୁଏ ।

ଅଶ୍ଳେଷା ନକ୍ଷତ୍ର ଜାତବ୍ୟକ୍ତି ଶଠ, ଖାଦ୍ୟାଖାଦ୍ୟ ବିଚାର ହୀନ, ପାପଯୁକ୍ତ, କୃତଘ୍ନ ଓ ଧୂର୍ତ୍ତ ହୁଏ ।୫।

## ମଘା ଓ ପୂର୍ବାଫାଲ୍‌ଗୁନୀ ନକ୍ଷତ୍ର ଜାତଫଳ

ବହୁଭୃତ୍ୟଧନୋ ଭୋଗୀ ସୁରପିତୃଭକ୍ତୋ ମହୋଦ୍ୟମଃ ପିତ୍ର୍ୟେ
ପ୍ରିୟବାଗ୍‌ଦାତା ଦ୍ୟୁତିମାନଟନୋ ନୃପସେବକୋ ଭାଗ୍ୟେ ।୬।

ମଘା ନକ୍ଷତ୍ର ଜାତବ୍ୟକ୍ତି ବହୁଭୃତ୍ୟ ଯୁକ୍ତ, ଧନ ଭୋଗଯୁକ୍ତ, ଦେବତା ଓ ପିତୃକର୍ମପର ଓ ବିଶେଷ ଚେଷ୍ଟା ଯୁକ୍ତ ହୁଏ ।

ପୂର୍ବାଫାଲ୍ଗୁନୀ ନକ୍ଷତ୍ର ଜାତ ବ୍ୟକ୍ତି ପ୍ରିୟବଚନ ବାଦୀ, ଦାତା, କାନ୍ତିଯୁକ୍ତ, ଭ୍ରମଣଶୀଳ ଓ ରାଜସେବକ ହୁଏ ।୬।

## ଉତ୍ତର ଫାଲ୍ଗୁନୀ ଓ ହସ୍ତା ନକ୍ଷତ୍ର ଜାତଫଳ

ସୁଭଗୋ ବିଦ୍ୟାପ୍ତଧନୋ ଭୋଗୀ ସୁଖଭାଗ୍ଦ୍ୱିତୀୟଫାଲ୍ଗୁନ୍ୟାମ୍
ଉତ୍ସାହୀ ଧୃଷ୍ଟଃ ପାନପୋଽଘୃଣୀ ତସ୍କରୋ ହସ୍ତେ ।୭।

ଉତ୍ତରଫାଲ୍ଗୁନୀ ନକ୍ଷତ୍ର ଜାତବ୍ୟକ୍ତି ସମସ୍ତଙ୍କର ପ୍ରିୟ, ବିଦ୍ୟାଦ୍ୱାରା ଧନୋପାର୍ଜନକାରୀ, ଭୋଗୀ ଓ ସୁଖୀ ହୁଏ ।

ହସ୍ତା ନକ୍ଷତ୍ର ଜାତ ବ୍ୟକ୍ତି ଉତ୍ସାହୀ, ବୁଦ୍ଧିଯୁକ୍ତ ବା ନିର୍ଲଜ୍ଜ, ମଦ୍ୟପ, ନିର୍ଦୟ ଓ ଚୌର୍ଯ୍ୟ ବୃତ୍ତି କରିଥାଏ ।୭।

## ଚିତ୍ରା ଓ ସ୍ୱାତୀ ନକ୍ଷତ୍ର ଜାତ ଫଳ

ଚିତ୍ରାମ୍ବରମାଲ୍ୟଧରଃ ସୁଲୋଚନାଙ୍ଗଶ୍ଚ ଭବତି ଚିତ୍ରାୟାମ୍ ।
ଦାନ୍ତୋ ବଣିକ୍କୃପାଲୁଃ ପ୍ରିୟବାଗ୍ଧର୍ମାଶ୍ରିତଃ ସ୍ୱାତୌ ।୮।

ଚିତ୍ରା ନକ୍ଷତ୍ର ଜାତବ୍ୟକ୍ତି ଅନେକ ରଙ୍ଗର ବସ୍ତ୍ର ତଥା ମାଲ୍ୟ ଧାରଣ କରେ, ତାହାର ଚକ୍ଷୁ ଓ ଶରୀର ସୌନ୍ଦର୍ଯ୍ୟ ଯୁକ୍ତ ହୁଏ ।

ସ୍ୱାତୀ ନକ୍ଷତ୍ର ଜାତ ବ୍ୟକ୍ତି ଇନ୍ଦ୍ରିୟ ବଶକାରୀ, ବାଣିଜ୍ୟ କର୍ମକାରୀ, କୃପାଯୁକ୍ତ, ପ୍ରିୟବାଦୀ ଓ ଧର୍ମକୁ ଆଶ୍ରୟ କରିଥାଏ ।୮।

## ବିଶାଖା ଓ ଅନୁରାଧା ନକ୍ଷତ୍ର ଜାତ ଫଳ

ଈର୍ଷ୍ୟାଲୁର୍ଲୁବ୍ଧୋ ଦ୍ୟୁତିମାନ୍ ବଚନପଟୁଃ କଲହକୃଦ୍ୱିଶାଖାସୁ ।
ଆଢ୍ୟୋ ବିଦେଶବାସୀ କ୍ଷୁଧାଲୁରଟନୋଽନୁରାଧାସୁ ।୯।

ବିଶାଖା ନକ୍ଷତ୍ର ଜାତ ବ୍ୟକ୍ତି ଅପରର ଉନ୍ନତି ଦେଖିଲେ ସହିପାରେ ନାହିଁ, ସେ କାନ୍ତିମାନ୍, ବଚନପଟୁ ଓ କଳହ ପ୍ରିୟ ହୁଏ ।

ଅନୁରାଧା ନକ୍ଷତ୍ର ଜାତ ବ୍ୟକ୍ତି ଧନବାନ୍, ପରଦେଶବାସୀ, ଅଧିକ କ୍ଷୁଧା-ଯୁକ୍ତ ଓ ଭ୍ରମଣଶୀଳ ହୁଏ ।୯।

## ଜ୍ୟେଷ୍ଠା ଓ ମୂଳା ନକ୍ଷତ୍ର ଜାତଫଳ

ଜ୍ୟେଷ୍ଠାସୁ ନ ବହୁମିତ୍ରଃ ସନ୍ତୁଷ୍ଟୋ ଧର୍ମକୃତ୍ ପ୍ରଚୁରକୋପଃ ।
ମୂଲେ ମାନୀ ଧନବାନ୍ସୁଖୀ ନ ହିଂସ୍ରଃ ସ୍ଥିରୋ ଭୋଗୀ ।୧୦।

ଜ୍ୟେଷ୍ଠା ନକ୍ଷତ୍ର ଜାତ ବ୍ୟକ୍ତି ଅଳ୍ପମିତ୍ରଯୁକ୍ତ, ସନ୍ତୁଷ୍ଟ, ଧର୍ମକାରୀ ଓ ବିଶେଷ କ୍ରୋଧଯୁକ୍ତ ହୁଏ ।

ମୂଳାନକ୍ଷତ୍ର ଜାତ ବ୍ୟକ୍ତି ମାନୀ, ଧନବାନ୍, ସୁଖୀ, ହିଂସାକର୍ମବିହୀନ, ସ୍ଥିରବୁଦ୍ଧିଯୁକ୍ତ ଓ ଭୋଗୀ ହୁଏ ।୧୦।

### ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା ନକ୍ଷତ୍ର ଜାତ ଫଳ

ଇଷ୍ଟାନନ୍ଦକଳତ୍ରୋ ମାନୀ ଦୃଢ଼ସୌହୃଦଶ୍ଚ ଜଳଦୈବେ ।
ବୈଶ୍ୱେ ବିନୀତଧାର୍ମିକ ବହୁମିତ୍ରକୃତଜ୍ଞସୁଭଗଶ୍ଚ ।୧୧।

ପୂର୍ବାଷାଢ଼ା ନକ୍ଷତ୍ର ଜାତବ୍ୟକ୍ତି ଇଚ୍ଛାନୁରୂପ ଆନନ୍ଦ ପ୍ରାପ୍ତି କାରଣୀ ସ୍ତ୍ରୀ ଯୁକ୍ତ ହୁଏ । ସେ ମାନୀ ଓ ଦୃଢ଼ ମିତ୍ରଯୁକ୍ତ ହୁଏ ।

ଉତ୍ତରାଷାଢ଼ା ନକ୍ଷତ୍ର ଜାତବ୍ୟକ୍ତି ବିଶେଷନମ୍ର, ଧାର୍ମିକ, ବହୁମିତ୍ର, କୃତଜ୍ଞ (ଯେ ପରର ଉପକାର ମନେରଖେ) ଓ ସମସ୍ତଙ୍କର ପ୍ରିୟପାତ୍ର ହୁଏ ।୧୧।

### ଶ୍ରବଣା ଓ ଧନିଷ୍ଠା ନକ୍ଷତ୍ର ଜାତ ଫଳ

ଶ୍ରୀମାଂଚ୍ଛ୍ରବଣେ ଶ୍ରୁତବାନୁଦାରଦାରୋ ଧନାନ୍ୱିତଃ ଖ୍ୟାତଃ ।
ଦାତାଢ଼୍ୟଶୂରଗୀତପ୍ରିୟୋ ଧନିଷ୍ଠାସୁ ଧନଲୁବ୍ଧଃ ।୧୨।

ଶ୍ରବଣା ନକ୍ଷତ୍ର ଜାତବ୍ୟକ୍ତି ଶ୍ରୀମାନ୍, ପଣ୍ଡିତ, ଉଦାରଗୁଣ ସ୍ତ୍ରୀଯୁକ୍ତ, ଧନଯୁକ୍ତ ଓ ଖ୍ୟାତ ହୁଏ ।

ଧନିଷ୍ଠା ନକ୍ଷତ୍ର ଜାତବ୍ୟକ୍ତି ଦାତା, ଧନୀ, ଶୂର, ଗୀତପ୍ରିୟ ଓ ଧନ ଲୋଭୀ ହୁଏ ।୧୨।

### ଶତଭିଷା ଓ ପୂର୍ବଭାଦ୍ର ନକ୍ଷତ୍ର ଜାତ ଫଳ

ସ୍ଫୁଟବାଗ୍‌ବ୍ୟସନୀ ରିପୁହା ସାହସିକଃ ଶତଭିଷଜି ଦୁର୍ଗ୍ରାହ୍ୟଃ ।
ଭାଦ୍ରପଦାସୂଦ୍‌ବିଗ୍ନଃ ସ୍ତ୍ରୀଜିତଧନୀ ପଟୁରଦାତାଚ ।୧୩।

ଶତଭିଷା ନକ୍ଷତ୍ର ଜାତ ବ୍ୟକ୍ତି ସ୍ପଷ୍ଟବାଦୀ, ବ୍ୟସନାସକ୍ତ, ଶତ୍ରୁନାଶକ, ସାହସୀ ଓ କାହାର ଅନୁଗତ ହୁଏ ନାହିଁ ।

ପୂର୍ବଭାଦ୍ରପଦ ନକ୍ଷତ୍ର ଜାତ ବ୍ୟକ୍ତି ଦୁଃଖିତ ଚିତ୍ତ ହୁଏ, ସ୍ତ୍ରୀର ବଶରେ ରହେ, ଧନୀ, ପଣ୍ଡିତ ଓ କୃପଣ ହୁଏ ।୧୩।

## ଉତ୍ତରଭାଦ୍ରପଦ ଓ ରେବତୀ ନକ୍ଷତ୍ର ଜାତ ଫଳ

ବକ୍ତା ସୁଖୀ ପ୍ରଜାବାନ୍ ଜିତଶତ୍ରୁର୍ଧାର୍ମିକୋ ଦ୍ୱିତୀୟାସୁ ।
ସଂପୂର୍ଣ୍ଣାଙ୍ଗଃ ସୁଭଗଃ ଶୂରଃ ଶୁଚିରର୍ଥବାନ୍ ପୌଷ୍ଣେ ।୧୪।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ଋକ୍ଷଶିଳାଧ୍ୟାୟଃ ଷୋଡ଼ଶଃ ।

ଉତ୍ତରଭାଦ୍ରପଦ ନକ୍ଷତ୍ର ଜାତବ୍ୟକ୍ତି ବକ୍ତା, ସୁଖୀ, ସନ୍ତାନଯୁକ୍ତ, ଶତ୍ରୁଜୟକାରୀ ଓ ଧର୍ମାଚରଣକାରୀ ହୁଏ ।

ରେବତୀ ନକ୍ଷତ୍ର ଜାତବ୍ୟକ୍ତି ସୁନ୍ଦର, ସମସ୍ତଙ୍କର ପ୍ରିୟ, ଶୂର, ପବିତ୍ର ଓ ଧନଯୁକ୍ତ ହୁଏ ।୧୪।

ଦ୍ରଃ—ଚନ୍ଦ୍ରର ବଳାନୁରୂପ ନକ୍ଷତ୍ର ଫଳର ପୂର୍ଣ୍ଣ, ମଧ୍ୟମ ବା ହୀନତା କଳ୍ପନା କରିବେ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଋକ୍ଷଶିଳାଧ୍ୟାୟ ନାମକ
ଷୋଡ଼ଶ ଅଧ୍ୟାୟର ସୁବୋଧିନୀ ଭାଷା ଟୀକା ଶେଷ ହେଲା ।

# ରାଶିଶିଳାଧ୍ୟାୟଃ ସପ୍ତଦଶଃ

## ମେଷରାଶି ଜାତବ୍ୟକ୍ତିର ସ୍ୱଭାବାଦ ବର୍ଣ୍ଣନ

ବୃତ୍ତତାମ୍ରଦୃଗୁଷ୍ଣଶାକଲଘୁଭୁକ୍ କ୍ଷିପ୍ରପ୍ରସାଦୋଽଟନଃ
କାମୀ ଦୁର୍ବଲଜାନୁରସ୍ଥିରଧନଃ ଶୂରୋଽଙ୍ଗନାବଲ୍ଲଭଃ ।
ସେବାଜ୍ଞଃ କୁନଖୀ ବ୍ରଣାଙ୍କିତଶିରା ମାନୀସହୋତ୍ଥାଗ୍ରଜଃ
ଶକ୍ତ୍ୟା ପାଣିତଲେଽଙ୍କିତୋଽତିଚପଲସ୍ତୋୟେଽଚ ଭୀରୁଃ କ୍ରିୟେ ।୧।

ଚନ୍ଦ୍ର ମେଷରାଶିରେ ଥିଲେ ଜାତକର ନେତ୍ର ଗୋଲ ଓ ରକ୍ତବର୍ଣ୍ଣ ହୁଏ । ସେ ଉଷ୍ଣଦ୍ରବ୍ୟ, ଶାକାଦ ଭୋଜନ କରେ, ଅଳ୍ପ ଭୋଜୀ ହୁଏ । ଅଳ୍ପ ସମୟରେ ତାକୁ ବଶୀଭୂତ କରାଯାଇପାରେ, ସେ ଭ୍ରମଣ ପ୍ରିୟ ହୁଏ । ସେ କାମପ୍ରିୟ, ଦୁର୍ବଳ ଜାନୁଯୁକ୍ତ, କେତେବେଳେ ଧନଯୁକ୍ତ, କେତେବେଳେ ବା ନିର୍ଦ୍ଧନ ହୁଏ, ସେ ଯୁଦ୍ଧପ୍ରିୟ, ସ୍ତ୍ରୀ ପ୍ରିୟ, ସେବା କର୍ମରେ ପଟୁ, ଅସୁନ୍ଦର ନଖଯୁକ୍ତ, ମସ୍ତକରେ ବ୍ରଣାଦ ଚିହ୍ନ ଯୁକ୍ତ, ଅଭିମାନଯୁକ୍ତ, ଭ୍ରାତାମାନଙ୍କ ମଧ୍ୟରେ ଶ୍ରେଷ୍ଠ, ହସ୍ତରେ ଶକ୍ତି ରେଖାଚିହ୍ନ, ଅତି ଚଞ୍ଚଳ ପ୍ରକୃତି ଓ ଜଳକୁ ଭୟକରେ ।୧।

## ବୃଷରାଶି ଜାତବ୍ୟକ୍ତିର ସ୍ୱଭାବାଦି ବର୍ଣ୍ଣନ

କାନ୍ତଃ ଖେଳଗତିଃ ପୃଥୁରୁବଦନଃ ପୃଷ୍ଠାସ୍ୟପାର୍ଶ୍ୱାଙ୍କିତ-
ସ୍ତ୍ୟାଗୀ କ୍ଳେଶସହଃ ପ୍ରଭୁଃ କକୁଦବାନ୍ କନ୍ୟାପ୍ରଜଃ ଶ୍ଳେଷ୍ମଳଃ ।
ପୂର୍ବୈର୍ବନ୍ଧୁଧନାତ୍ମଜୈର୍ବିରହିତଃ ସୌଭାଗ୍ୟଯୁକ୍ତଃ କ୍ଷମୀ
ଦୀପ୍ତାଗ୍ନିଃ ପ୍ରମଦାପ୍ରିୟଃ ସ୍ଥିରସୁହୃନ୍ମଧ୍ୟାନ୍ତ୍ୟ ସୌଖ୍ୟୋ ଗବି ।୨।

ବୃଷରାଶି ଜାତବ୍ୟକ୍ତି–ସୁନ୍ଦର ଶରୀର, କ୍ରୀଡ଼ାପ୍ରିୟ, ପୃଥୁଳଜଂଘ ଓ ପୃଥୁଳ ମୁଖ, ପିଠି, ମୁହଁ ତଥା ପଖା (ପଞ୍ଜରା)ରେ କୌଣସି ପ୍ରକାର ଚିହ୍ନଯୁକ୍ତ, ଦାତା, କ୍ଳେଶସହିଷ୍ଣୁ, ପ୍ରଭୁତାଯୁକ୍ତ, ଶ୍ୱେତଚ୍ଛତ୍ରାଦି ଆଡ଼ମ୍ବର ଯୁକ୍ତ, ବହୁ କନ୍ୟାର ପିତା ଓ ଶ୍ଳେଷ୍ମାଯୁକ୍ତ ହୁଏ । ପ୍ରଥମ ଭାଗରେ ବନ୍ଧୁ, ଧନ ଓ ପୁତ୍ର ବିହୀନ, ସମସ୍ତଙ୍କର ପ୍ରିୟ, କ୍ଷମାଗୁଣଯୁକ୍ତ, ବହୁଭୋଜୀ, ସ୍ତ୍ରୀ ପ୍ରିୟ, ସ୍ଥିରମିତ୍ର ଯୁକ୍ତ ହୁଏ । ତାହାର ମଧ୍ୟ ଓ ଶେଷକାଳ ସୁଖରେ କଟିଥାଏ ।୨।

ଦ୍ର:—'କକୁଦବାନ୍' ଶବ୍ଦର ଟୀକାରେ ଭଟ୍ଟୋତ୍ପଳ କେବଳ 'କକୁଦ ସଂଯୁକ୍ତ' ବୋଲି ଲେଖିଛନ୍ତି । କକୁଦ ଶବ୍ଦର ଅର୍ଥ ଶବ୍ଦ କଳ୍ପଦ୍ରୁମାନୁସାରେ– ପ୍ରାଧାନ୍ୟ, ରାଜଚିହ୍ନ ଅର୍ଥାତ୍ ଶ୍ୱେତଚ୍ଛତ୍ରାଦି, ଷଣ୍ଢର ଗ୍ରୀବାଂଶ, ପର୍ବତର ଅଗ୍ରଭାଗ ଆଦି ଅଛି । ଏଥିରୁ କେହି କେହି ମୋଟା ବେକ (ବୃଷଭତୁଲ୍ୟ) କେହି ରାଜଚିହ୍ନ ଶ୍ୱେତଚ୍ଛତ୍ରାଦି ଯୁକ୍ତ ବୋଲି ବୁଝନ୍ତି ।

## ମିଥୁନରାଶି ଜାତବ୍ୟକ୍ତିର ସ୍ୱଭାବାଦି ବର୍ଣ୍ଣନ

ସ୍ତ୍ରୀଲୋଲଃ ସୁରତୋପଚାରକୁଶଳସ୍ତାମ୍ରେକ୍ଷଣଃ ଶାସ୍ତ୍ରବିଦ୍—
ଦୂତଃ କୁଞ୍ଚିତମୂର୍ଦ୍ଧଜଃ ପଟୁମତିର୍ହାସ୍ୟେଙ୍ଗିତଦ୍ୟୂତବିତ୍ ।
ଚାର୍ବଙ୍ଗଃ ପ୍ରିୟବାକ୍ପ୍ରଭକ୍ଷଣରୁଚିର୍ଗୀତପ୍ରିୟୋ ନୃତ୍ୟବିତ୍
କ୍ଳୀବୈର୍ଯାତି ରତିଂ ସମୁନ୍ନତନସଶ୍ଚନ୍ଦ୍ରେ ତୃତୀୟର୍କ୍ଷଗେ ।୩।

ମିଥୁନରାଶି ଜାତ ବ୍ୟକ୍ତି ସ୍ତ୍ରୀପ୍ରିୟ, କାମଶାସ୍ତ୍ର କୁଶଳ, ଲାଲବର୍ଣ୍ଣ ଚକ୍ଷୁ, ଶାସ୍ତ୍ରଜ୍ଞାନ ଯୁକ୍ତ, ଦୂତକର୍ମକାରୀ, କୁଞ୍ଚ କୁଞ୍ଚିଆ କେଶ ଯୁକ୍ତ, ଚତୁର, ହାସ୍ୟ ଓ ଇଙ୍ଗିତରୁ ପରଚିତ୍ତ ବୋଧକାରୀ, ଦ୍ୟୂତ କ୍ରୀଡ଼ାରେ ଦକ୍ଷ, ସୁନ୍ଦରଶରୀର, ପ୍ରିୟବାଦୀ, ବହୁଭୋଜୀ, ଗୀତପ୍ରିୟ, ନୃତ୍ୟଜ୍ଞ, କ୍ଳୀବସହ କ୍ରୀଡ଼ାକାରୀ ବା କ୍ଳୀବପ୍ରିୟ ଓ ଉନ୍ନତ ନାସିକା ଯୁକ୍ତ ହୁଏ ।୩।

## କର୍କଟରାଶି ଜାତ ବ୍ୟକ୍ତିର ସ୍ୱଭାବାଦି ବର୍ଣ୍ଣନ

ଅବକ୍ରଦ୍ରୁତଗଃ ସମୁନ୍ନତକଟିଃ ସ୍ତ୍ରୀନିର୍ଜିତଃ ସତ୍ସୁହୃ-
ଦ୍ଦୈବଜ୍ଞଃ ପ୍ରଚୁରାଳୟଃ କ୍ଷୟଧନୈଃ ସଂଯୁଜ୍ୟତେ ଚନ୍ଦ୍ରବତ୍ ।
ହ୍ରସ୍ୱଃ ପୀନଗଳଃ ସମେତି ଚ ବଶଂ ସାମ୍ନା ସୁହୃଦ୍‌ବତ୍ସଳ—
ସ୍ତୋୟୋଦ୍ୟାନରତଃ ସ୍ୱବେଶ୍ମସହିତେ ଜାତଃ ଶଶାଙ୍କେ ନରଃ ।୪।

କର୍କଟ ରାଶି ଜାତ ବ୍ୟକ୍ତି ବକ୍ରଗତିରେ ଗମନ କରେ ଓ ଚଞ୍ଚଳ ଗୃଲେ, ତାହାର କଟି ଉନ୍ନତ, ସେ ସ୍ତ୍ରୀର ଅଧୀନ, ସଦ୍‌ବନ୍ଧୁଯୁକ୍ତ, ଜ୍ୟୋତିଃ ଶାସ୍ତ୍ରକୁଶଳ, ବହୁଗୃହଯୁକ୍ତ, କେତେବେଳେ ଧନଯୁକ୍ତ କେତେବେଳେ ଧନକ୍ଷୟରେ ପୀଡ଼ିତ (ଚନ୍ଦ୍ରର କ୍ଷୟ ତଥା ବୃଦ୍ଧି ଭଳି) କ୍ଷୁଦ୍ରଶରୀର, ମୋଟାଗ୍ରୀବା, ପ୍ରୀତିରେ ବଶତାପ୍ରାପ୍ତ, ମିତ୍ରପ୍ରିୟ, ଓ ଜଳ ତଥା ଉଦ୍ୟାନରେ ପ୍ରିୟତାଯୁକ୍ତ ହୁଏ ।୪।

## ସିଂହରାଶି ଜାତ ବ୍ୟକ୍ତିର ସ୍ୱଭାବାଦି ବର୍ଣ୍ଣନ

ତୀକ୍ଷ୍ଣଃ ସ୍ଥୂଳହନୁର୍ବିଶାଳବଦନଃ ପିଙ୍ଗେକ୍ଷଣୋଽଲ୍ପାତ୍ମଜଃ
ସ୍ତ୍ରୀଦ୍ୱେଷୀ ପ୍ରିୟମାଂସକାନନନଗଃ କୁପ୍ୟତ୍ୟକାର୍ଯ୍ୟେ ଚିରମ୍ ।
କ୍ଷୁତ୍‌ତୃଷ୍ଣୋଦରଦନ୍ତମାନସରୁଜା ସଂପୀଡ଼ିତସ୍ତ୍ୟାଗବାନ୍
ବିକ୍ରାନ୍ତଃ ସ୍ଥିରଧୀଃ ସୁଗର୍ବିତମନା ମାତୁର୍ବିଧେୟୋଽର୍କଭେ ।୫।

ସିଂହରାଶି ଜାତ ବ୍ୟକ୍ତି ତୀକ୍ଷ୍ଣସ୍ୱଭାବ ଯୁକ୍ତ, ବୃହତ୍ କପୋଳ (ଗାଲଗୁଣ୍ଡିକ ଫୁଲାଲାଭଳି ଦେଖାଯାଏ) ବୃହତ୍‌ମୁଖ, କପିଳବର୍ଣ୍ଣ ନେତ୍ର, ଅଳ୍ପସନ୍ତାନ ଯୁକ୍ତ, ସ୍ତ୍ରୀ ବିଦ୍ୱେଷୀ, ମାଂସପ୍ରିୟ, ବନପର୍ବତ ବିହାରୀ, କ୍ରୋଧ ବହୁକାଳ ପର୍ଯ୍ୟନ୍ତ ରଖିଥାଏ, କ୍ଷୁଧା ତଥା ପିପାସାରେ ପୀଡ଼ିତ ହୁଏ । ଉଦର ଓ ଦନ୍ତ ରୋଗରେ କଷ୍ଟପାଏ, ମାନସିକ କ୍ଲେଶ ଭୋଗକରେ । ସେ ତ୍ୟାଗୀ, ବିକ୍ରମଯୁକ୍ତ, ସ୍ଥିରବୁଦ୍ଧି, ଗର୍ବିତମନା ଓ ମାତୃଭକ୍ତ ହୁଏ ।୫।

## କନ୍ୟାରାଶି ଜାତ ବ୍ୟକ୍ତିର ସ୍ୱଭାବାଦି ବର୍ଣ୍ଣନ

ବ୍ରୀଡ଼ାମନ୍ଥରଚାରୁବୀକ୍ଷଣଗତିଃ ସ୍ରସ୍ତାଂସବାହୁଃ ସୁଖୀ
ଶ୍ଲକ୍ଷ୍ଣଃ ସତ୍ୟରତଃ କଳାସୁ ନିପୁଣଃ ଶାସ୍ତ୍ରାର୍ଥବିଦ୍ଧାର୍ମିକଃ
ମେଧାବୀ ସୁରତପ୍ରିୟଃ ପରଗୃହୈର୍ବିତ୍ତୈଶ୍ଚ ସଂଯୁଜ୍ୟତେ
କନ୍ୟାୟାଂ ପରଦେଶଗଃ ପ୍ରିୟବଚଃ କନ୍ୟାପ୍ରଜୋଽଲ୍ପାତ୍ମଜଃ ।୬।

କନ୍ୟାରାଶି ଜାତ ବ୍ୟକ୍ତିର ଗତି ଓ ଦୃଷ୍ଟି ସଲଜ୍ଜ ଅର୍ଥାତ୍ ଲଜ୍ଜାଯୁକ୍ତ ହୁଏ । କାନ୍ଧ ଓ ହସ୍ତ ଝୁଙ୍କି ପଡ଼ିଲାଭଳି ଦେଖାଯାଏ, ସେ ସୁଖୀ, ପ୍ରିୟବଚନ-

ଯୁକ୍ତ, ସତ୍ୟବାଦୀ, ପରମାର୍ଥ ପରାୟଣ, କଳାନିପୁଣ (ନୃତ୍ୟଗୀତ, ବାଦ୍ୟ ପୁସ୍ତକ ଲେଖନ ଓ ଶିଳ୍ପକର୍ମାଦିରେ ଦକ୍ଷ) ଶାସ୍ତ୍ରାର୍ଥ ବିଦ୍, ଧାର୍ମିକ, ବୁଦ୍ଧିମାନ୍, ରତିପ୍ରିୟ, ଅନ୍ୟର ଗୃହତଥା ଧନ ଅଧିକାର କରିଥାଏ । ସେ ବିଦେଶରେ ରହେ ଓ କୋମଳ ବଚନ କହେ । ତାହାର ବହୁକନ୍ୟା ଓ ଅଳ୍ପପୁତ୍ର ହୁଅନ୍ତି ।୬।

## ତୁଳାରାଶି ଜାତ ବ୍ୟକ୍ତିର ସ୍ୱଭାବାଦି ବିଚାର

ଦେବବ୍ରାହ୍ମଣସାଧୁ ପୂଜନରତଃ ପ୍ରାଜ୍ଞଃ ଶୁଚିଃସ୍ତ୍ରୀଜିତଃ
ପ୍ରାଂଶୁଶ୍ଚୋନ୍ନତନାସିକଃ କୃଶଚଳଦ୍ଗାତ୍ରୋଽଟନୋଽର୍ଥାନ୍ୱିତଃ ।
ହୀନାଙ୍ଗଃ କ୍ରୟବିକ୍ରୟେଷୁ କୁଶଳୋ ଦେବଦ୍ୱିନାମା ସରୁଗ୍
ବନ୍ଧୂନାମୁପକାରକୃଦ୍ୱିରୁଷିତସ୍ତ୍ୟକ୍ତସ୍ତୁ ତୈଃ ସପ୍ତମେ ।୭।

ତୁଳାରାଶି ଜାତ ବ୍ୟକ୍ତି ଦେବତା, ବ୍ରାହ୍ମଣ ତଥା ସାଧୁମାନଙ୍କ ପୂଜା ନିରତ ହୁଏ । ସେ ମେଧାବୀ, ପବିତ୍ରମନା ତଥା ସ୍ତ୍ରୀର ବଶୀଭୂତ ହୁଏ । ସେ ଉଚ୍ଚତା ବିଶିଷ୍ଟ, ଉନ୍ନତ ନାସିକା, କୃଶ ଶରୀର, ଦୁର୍ବଳ, ଭ୍ରମଣଶୀଳ ଓ ଓ ଧନଯୁକ୍ତ ହୁଏ । ତାହାର କୌଣସି ଅଙ୍ଗହାନି ହୋଇଥାଏ, କ୍ରୟ ତଥା ବିକ୍ରୟରେ ଚତୁର ହୁଏ । ସେ ଦେବ ପର୍ଯ୍ୟାୟ ବାଚକ ଅପର ନାମରେ ଯୁକ୍ତ ହୁଏ; ଅର୍ଥାତ୍ ରାମଚନ୍ଦ୍ର ନାମ ନହୋଇ ଦାଶରଥୀ, ସୀତାକାନ୍ତ କିମ୍ବା ଶିବ ନାମ ନହୋଇ ଗଙ୍ଗାଧର, ଶୂଳପାଣି ଏଭଳିନାମ ଥାଏ । ସେ ରୋଗଯୁକ୍ତ ଓ ବନ୍ଧୁଙ୍କ ଉପକାର କଲେସୁଦ୍ଧା, ସେହି ବନ୍ଧୁମାନଙ୍କ ଠାରୁ ଅପମାନ ପାଇଥାଏ । ସେମାନେ ତାକୁ ତ୍ୟାଗ କରନ୍ତି ଅର୍ଥାତ୍ ଆପଦ ବିପଦରେ ସାହାଯ୍ୟ କରନ୍ତି ନାହିଁ ।୭।

## ବୃଶ୍ଚିକ ରାଶିଜାତ ବ୍ୟକ୍ତିର ଶୁଭାଶୁଭ ବିଚାର

ପୃଥୁଳନୟନବକ୍ଷା ବୃତ୍ତଜଂଘୋରୁଜାନୁ-
ର୍ଜନକଗୁରୁବିଯୁକ୍ତଃ ଶୈଶବେ ବ୍ୟାଧିତଶ୍ଚ ।
ନରପତିକୁଲପୂଜ୍ୟଃ ପିଙ୍ଗଳଃ କ୍ରୂରଚେଷ୍ଟୋ
ଝଷକୁଲିଶଖଗାଙ୍କଶ୍ଛନ୍ନପାପୋଽଳିଜାତଃ ।୮।

ବୃଶ୍ଚିକରାଶି ଜାତ ବ୍ୟକ୍ତିର ଚକ୍ଷୁ ବୃହତ୍ ହୁଏ ଓ ବକ୍ଷ ବିଶାଳ ହୁଏ । ଜଂଘ, ଉରୁ ତଥା ଜାନୁ ସୁଗୋଲ ହୋଇଥାଏ । ସେ ପିତୃ ମାତୃ ତଥା ଗୁରୁଙ୍କ ଆଶ୍ରୟ ପାଏନାହିଁ ଓ ବାଲ୍ୟ ବୟସରେ ପୀଡ଼ିତ ହୁଏ । ସେ ରାଜକୁଳ ପୂଜିତ, ପିଙ୍ଗଳ ଶରୀର, କ୍ରୂରସ୍ୱଭାବ ଯୁକ୍ତହୁଏ । ତାହାର ମତ୍ସ୍ୟ, ବଜ୍ର ଓ ପକ୍ଷୀ ଚିହ୍ନ ହସ୍ତ ବା ପାଦରେ ଥାଏ, ସେ ଗୁପ୍ତରେ ପାପକର୍ମକରେ ।୮।

## ଧନୁରାଶି ଜାତ ବ୍ୟକ୍ତିର ସ୍ୱଭାବାଦ ବର୍ଣ୍ଣନ

ବ୍ୟାଦୀର୍ଘାସ୍ୟଶିରୋଧରଃ ପିତୃଧନସ୍ତ୍ୟାଗୀ କବିର୍ବୀର୍ଯ୍ୟବାନ୍
ବକ୍ତା ସ୍ଥୂଳରଦଶ୍ରବାଧରନସଃ କର୍ମୋଦ୍ୟତଃ ଶିଳ୍ପବିତ୍ ।
କୁବ୍ଜାଂସଃ କୁନଖୀ ସମାଂସଲଭୁଜଃ ପ୍ରାଗଲ୍ଭ୍ୟବାନ୍ ଧର୍ମବିଦ୍—
ବନ୍ଧୁଦ୍ୱିଟ୍ ନ ବଳାତ୍ପ୍ରମେତି ଚ ବଶଂ ସାମ୍ନୈକସାଧ୍ୟୋଶ୍ୱଜଃ ।୯।

ଧନୁରାଶି ଜାତ ବ୍ୟକ୍ତିର ମୁଖ ଓ ଗ୍ରୀବାଦେଶ ବଡ଼ ହୁଏ । ସେ ପିତୃଧନ ଭୋଗୀ, ଦାନୀ, କବି, ବଳବାନ୍ ଓ ବକ୍ତା ହୁଏ । ତାହାର ଦାନ୍ତ ମୋଟା, କାନବଡ଼, ଅଧର ସ୍ଥୂଳ, ନାକ ମୋଟା ହୋଇଥାଏ । ସେ କାର୍ଯ୍ୟରେ ଉଦ୍ୟମଶୀଳ, ଶିଳ୍ପ ବିଦ୍ୟାରେ ଅଭିଜ୍ଞ ହୁଏ । ତାହାର କାନ୍ଧ କୁଜାଳିଆ ଓ ନଖଗୁଡ଼ିକ ଅସୁନ୍ଦର ଏବଂ ବାହୁ ସ୍ଥୂଳ ହୁଏ । ସେ ପ୍ରତିଭାବାନ୍, ଧର୍ମଜ୍ଞ, ବନ୍ଧୁମାନଙ୍କ ଅପ୍ରୀତିକାରୀ ଓ କେହି ବଳଦ୍ୱାରା ସେ ଲୋକକୁ ବଶ କରି ନପାରେ, କେବଳ ସାମ୍ୟନୀତିରେ ସେ ବଶହୁଏ ।୯।

## ମକର ରାଶି ବ୍ୟକ୍ତିର ସ୍ୱଭାବାଦ ବର୍ଣ୍ଣନ

ନିତ୍ୟଂ ଲାଳୟତି ସ୍ୱଦାରତନୟାନ୍ ଧର୍ମଧ୍ୱଜୋଧଃ କୃଶଃ
ସ୍ୱକ୍ଷଃ କ୍ଷାମକଟିର୍ଗୃହୀତବଚନଃ ସୌଭାଗ୍ୟଯୁକ୍ତୋଽଲସଃ ।
ଶୀତାଳୁର୍ମନୁଜୋଽଟନଶ୍ଚ ମକରେ ସତ୍ତ୍ୱାଧିକଃ କାବ୍ୟକୃ—
ଲ୍ଲୁବ୍ଧୋଽଗମ୍ୟ ଜରାଙ୍ଗନାସୁ ନିରତଃ ସନ୍ତ୍ୟକ୍ତ ଲଜ୍ଜୋଽଘୃଣଃ ।୧୦।

ମକର ରାଶିଜାତ ବ୍ୟକ୍ତି ନିଜର ସ୍ତ୍ରୀ ତଥା ପୁତ୍ରଙ୍କୁ ସର୍ବଦା ପ୍ରୀତ ରଖିବାରେ ଲାଗିଥାଏ । ସେ ଧର୍ମଧ୍ୱଜୀ ଅର୍ଥାତ୍ ଦେଖାଇ ହେବା ପାଇଁ କପଟ ଧର୍ମାଚରଣ କରେ । ସେ ବ୍ୟକ୍ତିର ଅଣ୍ଟାଠାରୁ ତଳଦେଶ ଦୁର୍ବଳ ହୁଏ । ତାହାର ଚକ୍ଷୁ ସୁନ୍ଦର, ଅଣ୍ଟାସରୁ, ବିଷୟ ବୋଧ କରିବାରେ ଚତୁର, ସର୍ବଜନ ପ୍ରିୟ, ଆଳସ୍ୟ ପରାୟଣ, ଥଣ୍ଡା ସହ୍ୟ କରିବାରେ ଅକ୍ଷମ, ଭ୍ରମଣଶୀଳ, ଉଦାର ଚେଷ୍ଟାଯୁକ୍ତ ବା ବଳାଧିକ ଯୁକ୍ତ, ବିଦ୍ୱାନ୍, ଲୋଭଭିଭୂତ, ହୀନଜାତୀୟା ସ୍ତ୍ରୀ ତଥା ବୃଦ୍ଧାସ୍ତ୍ରୀ ଠାରେ ଆସକ୍ତ, ଲଜ୍ଜାହୀନ, ଓ ନିର୍ଦ୍ଦୟ ହୁଏ ।୧୦।

## କୁମ୍ଭରାଶି ଜାତ ବ୍ୟକ୍ତିର ସ୍ୱଭାବାଦ ବର୍ଣ୍ଣନ

କରଭଗଳଃ ଶିରାଳୁଃ ଖରଲୋମଶଦୀର୍ଘତନୁଃ
ପୃଥୁତରଶୋରୁପୃଷ୍ଠଜଘନାସ୍ୟକଟିର୍ଜରଠଃ ।

ପରବନିତାର୍ଥପାପନିରତଃ କ୍ଷୟବୃଦ୍ଧି ଯୁତଃ
ପ୍ରିୟକୁସୁମାନୁଲେପନ ସୁହୃଦ୍ଦ୍ବଂଜୋଽଧ୍ୱସହଃ ।୧୧।

କୁମ୍ଭରାଶି ଜାତ ବ୍ୟକ୍ତିର ଗ୍ରୀବାଦେଶ ଦୀର୍ଘ (ଓଟ ପରି), ଶିରା ଗୁଡ଼ିକ ପ୍ରକାଶ ପାଉଥାଏ, ଝାଣୁଆଲୋମ ଯୁକ୍ତ ଦୀର୍ଘଶରୀର, ପାଦ, ଉରୁଦେଶ, ପିଠି, ଜଂଘା ଓ ଅଣ୍ଟା ପୃଥୁଳ ହୁଏ । ତାହାର ବୋଧଶକ୍ତି କ୍ଷୀଣ ହୁଏ । ସେ ପରସ୍ତ୍ରୀ ତଥା ପରଧନରେ ଆସକ୍ତହୁଏ, ପାପ କର୍ମକରେ, ତାହାର ଭାଗ୍ୟ କେତେବେଳେ ହାନି କେତେବେଳେ ବା ବୃଦ୍ଧି ହୁଇଥାଏ, ସେ ପୁଷ୍ପଚନ୍ଦନାଦିର ବେଶକୁ ଭଲପାଏ, ବହୁ ବ୍ୟକ୍ତିସହ ତାହାର ମିତ୍ରତା ଥାଏ । ସେ ପରିଭ୍ରମଣ କରିବାରେ କଷ୍ଟବୋଧ କରେ ନାହିଁ ।୧୧।

## ମୀନରାଶି ଜାତ ବ୍ୟକ୍ତିର ସ୍ୱଭାବାଦ ବର୍ଣ୍ଣନ

ଜଳପରଧନଭୋକ୍ତା ଦାରବାସୋନୁରକ୍ତଃ
ସମରୁଚିରଶରୀରସ୍ତୁଙ୍ଗନାସୋ ବୃହଲ୍ଲଃ ।
ଅଭିଭବତି ସପତ୍ନାସ୍ତ୍ରୀଜିତଶ୍ଚାରୁଦୃଷ୍ଟି—
ଦ୍ୟୁତିନିଧିଧନଭୋଗୀ ପଣ୍ଡିତଶ୍ଚାନ୍ତ୍ୟରାଶୌ ।୧୨।

ମୀନରାଶି ଜାତବ୍ୟକ୍ତି ଜଳଜାତ ଦ୍ରବ୍ୟରୁ ଧନପାଏ । ସେ ପରଧନ ଭୋଗ କରେ । ସେ ନିଜର ପତ୍ନୀ ପ୍ରତି ଅନୁରକ୍ତ ହୁଏ । ବସନରେ ଅତ୍ୟନ୍ତ ପ୍ରୀତିକରଥାଏ, ସୁନ୍ଦର ତଥା ତେଜଯୁକ୍ତ ଶରୀର ହୁଏ । ତାହାର ମସ୍ତକ ବୃହତ ସେ ଶତ୍ରୁଜୟକାରୀ, ସ୍ତ୍ରୀ ଠାରେ ବଶ, ସୁନ୍ଦର ଦୃଷ୍ଟିଯୁକ୍ତ, ସେ କାନ୍ତିଯୁକ୍ତ ଦ୍ରବ୍ୟ ତଥା ଭୂମିରେ ପୋତାଥିବା ଧନ ଭୋଗକରେ ଓ ଶାସ୍ତ୍ରାର୍ଥ ପାରଙ୍ଗମ ହୁଏ ।୧୨।

## ରାଶି ବଳକୁ ନେଇ ଫଳର ତାରତମ୍ୟ ବର୍ଣ୍ଣନ

ବଳବତି ରାଶୌ ତଦଧିପତୌ ଚ
ସ୍ୱବଳଯୁତଃ ସ୍ୟାଦ୍ୟଦି ତୁହିନାଂଶୁଃ
କଥିତଫଳାନାମବିକଳଦାତା
ଶଶିବଦତୋନ୍ୟେଽପ୍ୟନୁପରିଚିନ୍ତ୍ୟାଃ ।୧୩।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ଚନ୍ଦ୍ରରାଶି ଶୀଳଂ ନାମ ସପ୍ତଦଶୋଽଧ୍ୟାୟଃ ।

ଚନ୍ଦ୍ର ଜନ୍ମକାଳରେ ଯେଉଁ ରାଶିରେ ଥାଏ ତାହାର ନାମ ଜନ୍ମରାଶି, ଚନ୍ଦ୍ର ବଳବାନ, ସେହି ରାଶି ବଳଯୁକ୍ତ ଓ ସେ ରାଶିର ଅଧିପତି ବଳଯୁକ୍ତ

ହୋଇଥିଲେ ରାଶିର ଫଳ ପୂର୍ଣ୍ଣରୂପେ ଘଟିବ । ଏହି ତନୋଟିରୁ ଦୁଇଟି ବଳବାନ୍ ହେଲେ ମଧ୍ୟମ ଫଳ ଓ ଗୋଟିଏ ବଳବାନ୍ ହେଲେ ସାମାନ୍ୟ ଫଳ ମାତ୍ର ମିଳିବ, ଏହି ଭଳି ଅନ୍ୟ ଗ୍ରହମାନଙ୍କର ରାଶିସ୍ଥିତି ଫଳ ମଧ୍ୟ କଳ୍ପନା କରିବେ । ଅର୍ଥାତ୍ ରାଶି ଓ ତାହାର ଅଧିପତି ଓ ସେହି ରାଶିରେ ଥିବା ଗ୍ରହର ବଳକୁ ନେଇ ସେମାନଙ୍କର କଥିତ ରାଶି ଫଳର ତାରତମ୍ୟ କହିବେ ।୧୩।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଚନ୍ଦ୍ର ରାଶି ଶୀଳାଧ୍ୟାୟ
ନାମକ ସପ୍ତଦଶ ଅଧ୍ୟାୟର ସୁବୋଧିନୀ
ଭାଷାଟୀକା ସମାପ୍ତ ହେଲା ।



# ଗ୍ରହର୍ଶିଶିଳାଧ୍ୟାୟୋଽଷ୍ଟାଦଶଃ

## ରବିର ମେଷାଦି ରାଶିସ୍ଥିତ ଫଳ ବର୍ଣ୍ଣନ

ପ୍ରଥିତଶ୍ଚତୁରୋଽଟନୋଽଲ୍ପବିତ୍ତଃ କ୍ରିୟଗେ ତ୍ୱାୟୁଧଭୃତ୍ତଦ୍ୱିତୁଙ୍ଗଭାଗେ ।
ଗବି ବସ୍ତ୍ରସୁଗନ୍ଧପଣ୍ୟଜୀବୀ ବନିତାଦ୍ୱିଟ୍ କୁଶଳଶ୍ଚ ଗେୟବାଦ୍ୟେ ।୧।

ରବି ଉଚାଂଶରେ ନଥାଇ ମେଷରାଶିର ଅନ୍ୟଅଂଶରେ ଥିଲେ ଜାତକ ବିଖ୍ୟାତ, ଚତୁର, ଭ୍ରମଣକାରୀ, ଅଳ୍ପ ଧନଯୁକ୍ତ ଓ ଶସ୍ତ୍ରଧାରଣ କରିଥାଏ ।

ରବି ଉଚାଂଶରେ ଥିଲେ ପୂର୍ବ କଥିତ ସମସ୍ତ ଶୁଭ ଫଳର ବୃଦ୍ଧି ଘଟେ ଓ ମନ୍ଦ ଫଳର ହାନି ହୁଏ । ଜାତକ ବିଶେଷ ରୂପେ ଖ୍ୟାତ, ବିଶେଷ ଚତୁର, ଏକ ସ୍ଥାନରେ ବାସକାରୀ, ବହୁଧନ ଯୁକ୍ତ ଓ ଶସ୍ତ୍ରଧାରୀମାନେ ତାହାର ଅଜ୍ଞାବହ ହୋଇ ରହନ୍ତି ।

ରବି ବୃଷ ରାଶିରେ ଥିଲେ ଜାତକ ବସ୍ତ୍ର, ସୁଗନ୍ଧ ଦ୍ରବ୍ୟ ବ୍ୟବସାୟ ତଥା ଅନ୍ୟାନ୍ୟ ଦ୍ରବ୍ୟର କ୍ରୟ ବିକ୍ରୟ କରି ଧନୋପାର୍ଜନ କରେ । ସେ ସ୍ତ୍ରୀର ବିରୋଧୀ ଏବଂ ଗୀତବାଦ୍ୟାଦିରେ କୁଶଳ ହୁଏ ।୧।

ବିଦ୍ୟାଜ୍ୟୋତିଷବିତ୍ତବାନ୍ ମିଥୁନଗେ ଭାନୌ କୁଳୀରେ ସ୍ଥିତେ
ତୀକ୍ଷ୍ଣୋଽସ୍ୱଃ ପରକାର୍ଯ୍ୟକୃଚ୍ଛ୍ରମପଥକ୍ଲେଶୈଶ୍ଚ ସଂଯୁଜ୍ୟତେ ।
ସିଂହସ୍ଥେ ବନଶୈଳଗୋକୁଳରତିର୍ବୀର୍ଯ୍ୟାନ୍ୱିତୋଽଜ୍ଞଃ ପୁମାନ୍
କନ୍ୟାସ୍ଥେ ଲିପିଲେଖ୍ୟ କାବ୍ୟଗଣିତଜ୍ଞାନାନ୍ୱିତଃ ସ୍ତ୍ରୀବପୁଃ ।୨।

ରବି ମିଥୁନରେ ଥିଲେ ଜାତକ ବିଦ୍ୱାନ ହୁଏ । ଜ୍ୟୋତିଷ ଶାସ୍ତ୍ରଜ୍ଞ ହୁଏ ଓ ଧନବାନ୍ ହୁଏ । କର୍କଟରେ ଥିଲେ ଜାତକ ଉଗ୍ରସ୍ୱଭାବ ଯୁକ୍ତ, ଦରିଦ୍ର, ପରର ଗୃହକର୍ କରି ବଞ୍ଚେ, ପଥ ଭ୍ରମଣ ହେତୁ କ୍ଳେଶ ଭୋଗ କରେ ।

ରବି ସିଂହରେ ଥିଲେ ଜାତକ ବନ, ପର୍ବତ, ଗୋରୁ ରହିବା ସ୍ଥାନରେ ରହିବାକୁ ଭଲ ପାଏ । ସେ ବଳବାନ୍ ଓ ମୂର୍ଖ ହୁଏ । କନ୍ୟା ରାଶିରେ ଥିଲେ ଜାତକ ଲେଖକ, ଚିତ୍ରକର, କବି କିମ୍ବା ଗଣିତଜ୍ଞ ହୁଏ । ତାହାର ରୂପ ସ୍ତ୍ରୀ ତୁଲ୍ୟ ହୁଏ ।୨।

ଜାତସ୍ତୌଲିନି ଶୌଣ୍ଡିକୋଽଧ୍ୱନିରତୋ ହୈରଣ୍ୟକୋ ନୀଚକୃତ୍
କ୍ରୂରଃ ସାହସିକୋ ବିଷାର୍ଜିତଧନଃ ଶସ୍ତ୍ରାନ୍ତଗୋଽଲିସ୍ଥିତେ ।
ସତ୍ପୂଜ୍ୟୋ ଧନବାନ୍ଧନୁର୍ଦ୍ଧରଗତେ ତୀକ୍ଷ୍ଣୋ ଭିଷକ୍କାରୁକୋ
ନୀଚୋଽଜ୍ଞଃ କୁବଣିଙ୍ମୃଗେଽଲ୍ପଧନବାନ୍ଲୁବ୍ଧୋଽନ୍ୟଭାଗ୍ୟେ ରତଃ ।୩।

ରବି ତୁଳା ରାଶିରେ ଥିଲେ ଜାତକ ମଦ୍ୟ ବିକେତା ବା ମଦ୍ୟପ ହୁଏ । ସେ ଭ୍ରମଣଶୀଳ ଏବଂ ସ୍ୱର୍ଣ୍ଣକାର ତଥା ନୀଚକର୍ମରେ ଆସକ୍ତ ହୋଇ ଜୀବିକା ଉପାର୍ଜନ କରେ । ରବି ବୃଶ୍ଚିକ ରାଶିରେ ଥିଲେ ଜାତକ କ୍ରୂରସ୍ୱଭାବ ଯୁକ୍ତ, ସାହସୀ, ବିଷ ସମ୍ପର୍କୀୟ ଦ୍ରବ୍ୟାଦିର କ୍ରୟ ବିକ୍ରୟରୁ ବା ବିଷପ୍ରୟୋଗରୁ ଧନ-ପାଏ, ତାହାର ଧନ ଚୋରାଦି ଦ୍ୱାରା ନଷ୍ଟ ହୁଏ, ସେ ଶସ୍ତ୍ର ଚାଳନାରେ ପାରଙ୍ଗମ ହୁଏ । ରବି ଧନୁରେ ଥିଲେ ଜାତକ ସଜ୍ଜନ ପୂଜିତ, ଧନବାନ୍, ଉଗ୍ରସ୍ୱଭାବ ଯୁକ୍ତ, ବୈଦ୍ୟ ବିଦ୍ୟାରେ ଦକ୍ଷ ଓ ଶିଳ୍ପକର୍ମରେ ପାରଙ୍ଗମ ହୁଏ । ରବି ମକରରେ ଥିଲେ ଜାତକ ନିନ୍ଦ୍ୟ କାର୍ଯ୍ୟକାରୀ, ମୂର୍ଖ, ଅଳ୍ପଧନଯୁକ୍ତ, ଲୋଭୀ ଓ ଅପରର ଧନାଦି ଭୋଗ କରିଥାଏ ।୩।

ନୀଚୋ ଘଟେ ତନୟଭାଗ୍ୟପରିଚ୍ୟୁତୋଽସ୍ୱ-
ସ୍ତୋୟୋତ୍ଥପଣ୍ୟବିଭବୋ ବନିତାଦୃତୋଽନ୍ତ୍ୟେ ।
ନକ୍ଷତ୍ରମାନବତନୁଃ ପ୍ରତିମେ ବିଭାଗେ
ଲକ୍ଷ୍ମ୍ୟାଦିଶେତ୍ତୁହିନରଶ୍ମିଦିନେଶଯୁକ୍ତେ ।୪।

ରବି କୁମ୍ଭରାଶିରେ ଥିଲେ ଜାତକ ନୀଚ କର୍ମ କରେ । ପୁତ୍ର ତଥା ଭାଗ୍ୟରେ ହୀନ ହୁଏ । ସେ ନିର୍ଦ୍ଧନ ହୁଏ । ରବି ମୀନରେ ଥିଲେ ଜାତକ ଜଳଜାତ ଦ୍ରବ୍ୟର ବ୍ୟବସାୟରୁ ଧନଲାଭ କରେ ଓ ସ୍ତ୍ରୀମାନଙ୍କ ଦ୍ୱାରା ପୂଜିତ ହୁଏ ।

ରବି ଓ ଚନ୍ଦ୍ର ଯଦି ଏକତ୍ର ଥାଆନ୍ତି, ସେହି ରାଶି କାଳ ପୁରୁଷର ଅଙ୍ଗ-ବିଭାଗ କ୍ରମେ ଯେ ଅଙ୍ଗରେ ପଡ଼ିବ ସେଥିରେ ଚିହ୍ନ (ତିଳ, ମଶକ) ଥାଏ ।୪।

## ମଙ୍ଗଳର ମେଷାଦି ଦ୍ୱାଦଶ ରାଶିସ୍ଥିତ ଫଳ ବର୍ଣ୍ଣନ

ନରପତିସତ୍କୃତୋଽଟନଶ୍ଚମୂପବଣିକ୍ସଧନାଃ-
କ୍ଷତତନୁଶ୍ଚୌରଭୂରିବିଷୟାଂଶ୍ଚ କୁଜଃ ସ୍ୱଗୃହେ ।
ଯୁବତିଜିତାନ୍ସୁହୃତ୍ସୁ ବିଷମାନ୍ ପରଦାରରତାନ୍
କୁହକସୁବେଷଭୀରୁପରୁଷାନ୍ସିତଭେ ଜନୟେତ୍ ।୫।

ମଙ୍ଗଳ ତାର ସ୍ୱଗୃହ (ମେଷ ବା ବିଛା)ରେ ଥିଲେ ଜାତକ ରାଜପୂଜିତ, ଭ୍ରମଣଶୀଳ, ସେନାପତି, ବେପାରୀ ଓ ଧନୀ ହୁଏ । ସେ କ୍ଷତଯୁକ୍ତ ଦେହ, ଚୌର୍ଯ୍ୟ କର୍ମକାରୀ ଓ ବହୁ ବିଷୟରେ ପ୍ରବେଶ କରେ ।

ମଙ୍ଗଳ ଶୁକ୍ରର ଗୃହ (ବୃଷ ବା ତୁଳା) ରେ ଥିଲେ ଜାତକ ସ୍ତ୍ରୀବଶରେ ରହେ, ମିତ୍ରସହ ବିରୋଧ କରେ, ଅନ୍ୟ ସ୍ତ୍ରୀ ସହ ସଂସର୍ଗ କରେ, ଇନ୍ଦ୍ରଜାଲ-ବିଦ୍ୟା ଜାଣେ, ବେଶପ୍ରିୟ ହୁଏ । ଭୟାଳୁ, କର୍କଶ ହୃଦୟ ଓ ସ୍ନେହହୀନ ହୁଏ ।୫।

ବୌଧେଽପହସ୍ତନୟବାନ୍ ବିଯୁତ୍ତୃହକୃତଜ୍ଞୋ
ଗାନ୍ଧର୍ବଯୁଦ୍ଧକୁଶଳଃ କୃପଣୋଽଭୟୋଽର୍ଥୀ ।
ଚାନ୍ଦ୍ରେଽର୍ଥବାନ୍ସଲିଳଯାନସମାର୍ଜିତସ୍ୱଃ
ପ୍ରାଜ୍ଞଶ୍ଚଭୂମିତନୟେ ବିକଳଃ ଖଳଶ୍ଚ ।୬।

ମଙ୍ଗଳ ବୁଧର ଗୃହରେ (ମିଥୁନ, କନ୍ୟା) ଥିଲେ ଜାତକ ତେଜସ୍ୱୀ, ପୁତ୍ରବାନ୍, ମିତ୍ରହୀନ, କୃତଜ୍ଞ (ପରୋପକାରଶୀଳ) ଗୀତ କୁଶଳ, ଯୁଦ୍ଧ-ବିଦ୍ୟାରେ ପାରଙ୍ଗମ, କୃପଣ, ନିର୍ଭୟ, ଯାଚକ ବୃତ୍ତି କରିଥାଏ ।

ମଙ୍ଗଳ କର୍କଟ ରାଶିରେ ଥିଲେ ଜାତକ ଧନବାନ୍, ନୌକା ଦ୍ୱାରା ବା ଭ୍ରମଣ ଦ୍ୱାରା ଧନ ଉପାର୍ଜନ କରେ । ସେ ପାଣ୍ଡିତ୍ୟଯୁକ୍ତ, ଅଙ୍ଗ ହୀନ ଏବ ଦୁଷ୍ଟ ହୁଏ ।୬।

ନିଃସ୍ୱଃ କ୍ଲେଶସହୋ ବନାନ୍ତରଚରଃ ସିଂହେଽଲ୍ପଦାରାତ୍ମଜଃ
ଜୈବେ ନୈକରିପୁର୍ନରେନ୍ଦ୍ରସଚିବଃ ଖ୍ୟାତୋଽଭୟୋଽଲ୍ପାତ୍ମଜଃ
ଦୁଃଖାର୍ତ୍ତୋ ବିଧନୋଽଟନୋଽନୃତରତସ୍ତୀକ୍ଷ୍ଣଶ୍ଚ କୁମ୍ଭସ୍ଥିତେ
ଭୌମେ ଭୂରିଧନାତ୍ମଜୋ ମୃଗଗତେ ଭୂପୋଽଥବା ତତ୍ସମଃ ।୭।

ମଙ୍ଗଳ ସିଂହରାଶିରେ ଥିଲେ ଜାତକ ନିର୍ଦ୍ଧନ, କଷ୍ଟସହିଷ୍ଣୁ, ବନରେ ଭ୍ରମଣକାରୀ (ବନ୍ୟ ବିଭାଗୀୟ କର୍ମଚାରୀ) ସନ୍ତାନ ତଥା ସ୍ତ୍ରୀ ସୁଖ ସ୍ୱଳ୍ପଭୋଗ କରେ ।

ଧନୁ ବା ମୀନରାଶିରେ ଥିଲେ ଜାତକ ବହୁ ଶତ୍ରୁ ଯୁକ୍ତ, ରାଜାର ମନ୍ତ୍ରଣାଦାତା, ବିଖ୍ୟାତ, ଭୟହୀନ ଓ ଅଳ୍ପସନ୍ତାନ ଯୁକ୍ତ ହୁଏ ।

ମଙ୍ଗଳ କୁମ୍ଭରାଶିରେ ଥିଲେ ଜାତକ ଦୁଃଖାଭିଭୂତ, ଧନହୀନ, ଭ୍ରମଣଶୀଳ, ମିଥ୍ୟାବାଦୀ ଓ ତୀକ୍ଷ୍ଣସ୍ୱଭାବ ଯୁକ୍ତ ହୁଏ । ମକର ରାଶିରେ ଥିଲେ ଜାତକ ବହୁଧନ ଯୁକ୍ତ, ବହୁପୁତ୍ର ଯୁକ୍ତ, ରାଜା ବା ରାଜତୁଲ୍ୟ ହୁଏ ।୭।

## ବୁଧର ମେଷାଦି ଦ୍ୱାଦଶ ରାଶିସ୍ଥ ଫଳ ବିଚାର

ଦ୍ୟୂତର୍ଣ୍ଣପାନରତନାସ୍ତିକଚୌରନିଃସ୍ୱାଃ
କୁସ୍ତ୍ରୀକକୂଟକୃଦସତ୍ୟରତାଃ କୁଜର୍କ୍ଷେ ।
ଆଚାର୍ଯ୍ୟଭୂରିସୁତଦାରଧନାର୍ଜନେଷ୍ଟାଃ
ଶୌକ୍ରେ ବଦାନ୍ୟଗୁରୁଭକ୍ତିରତାଶ୍ଚ ସୌମ୍ୟେ ।୮।

ବୁଧ ମଙ୍ଗଳର ଗୃହ (ମେଷ ବା ବୃଶ୍ଚିକ) ରେ ଥିଲେ ଜାତକ ଦ୍ୟୂତ କ୍ରିୟାସକ୍ତ, ଋଣକର୍ତ୍ତା, ମଦ୍ୟପ, ନାସ୍ତିକ, ଚୌର କର୍ମପର ଓ ଦରିଦ୍ର ହୁଏ । ସେ କୁତ୍ସିତ ସ୍ତ୍ରୀ ଯୁକ୍ତ, କୂଟକର୍ମକାରୀ ଓ ମିଥ୍ୟାବାଦୀ ହୁଏ ।

ବୁଧ ଶୁକ୍ରର ଗୃହ (ବୃଷ ବା ତୁଳା)ରେ ଥିଲେ ଜାତକ ଉପଦେଷ୍ଟା, ବହୁ ସନ୍ତାନ, ବହୁ ସ୍ତ୍ରୀ ଯୁକ୍ତ, ନିତ୍ୟ ଧନାର୍ଜନକାରୀ ଦାତା ଓ ଗୁରୁ ବର୍ଗରେ (ମାତା, ପିତା, ଗୁରୁ ଇତ୍ୟାଦିଙ୍କ ଠାରେ) ଭକ୍ତିଯୁକ୍ତ ହୁଏ ।୮।

ବିକତ୍ଥନଃ ଶାସ୍ତ୍ରକଳାବିଦଗ୍ଧଃ ପ୍ରିୟମ୍ବଦଃ ସୌଖ୍ୟରତସ୍ତୃତୀୟେ ।
ଜଳାର୍ଜିତସ୍ୱଃ ସ୍ୱଜନସ୍ୟ ଶତ୍ରୁଃ ଶଶାଙ୍କଜେ ଶୀତକରର୍କ୍ଷଯୁକ୍ତେ ।୯।

ବୁଧ ମିଥୁନରେ ଥିଲେ ଜାତକ ମିଥ୍ୟାବାଦୀ, ସେ ଶାସ୍ତ୍ରଜ୍ଞ, ସଙ୍ଗୀତ ବିଦ୍ୟା ତଥା ଶିଳ୍ପ କର୍ମାଦିରେ ଶିକ୍ଷିତ, ପ୍ରିୟ କଥନକାରୀ ଓ ସୁଖାସକ୍ତ ହୁଏ ।

ବୁଧ କର୍କଟରେ ଥିଲେ ଜାତକ ଜଳରୁ ଉତ୍ପନ୍ନ ଦ୍ରବ୍ୟ ବା ନାବ ବ୍ୟବସାୟ ଆଦିରୁ ଧନଲାଭ କରେ ଓ ସ୍ୱଜନମାନଙ୍କର ଶତ୍ରୁ ହୁଏ ।୯।

ସ୍ତ୍ରୀଦ୍ୱେଷ୍ୟୋ ବିଧନସୁଖାତ୍ମଜୋଽଟନୋଽଜ୍ଞଃ
ସ୍ତ୍ରୀଲୋଲଃ ସ୍ୱପରିଭବୋଽର୍କରାଶିଗେ ଜ୍ଞେ ।

ତ୍ୟାଗୀ ଜ୍ଞଃ ପ୍ରଚୁରଗୁଣଃ ସୁଖୀ କ୍ଷମାବାନ୍—
ଯୁକ୍ତିଜ୍ଞୋ ବିଗତଭୟଶ୍ଚ ଷଷ୍ଠରାଶୌ ।୧୦।

ବୁଧ ସିଂହରେ ଥିଲେ ଜାତ ସ୍ତ୍ରୀର ଅପ୍ରିୟ, ଧନ ସୁଖ ତଥା ସ୍ୱର ଭାବରେ ହୀନ, ଭ୍ରମଣଶୀଳ, ମୂର୍ଖତାଯୁକ୍ତ, ସେ ନିଜେ ସ୍ତ୍ରୀ ସଂସକ୍ତ ହେବା ପାଇଁ ଚେଷ୍ଟାଯୁକ୍ତ, ନିଜର ଲୋକଙ୍କ ଦ୍ୱାରା ପରାଭବ ପ୍ରାପ୍ତ ହୁଏ, ବୁଧ କନ୍ୟାରେ ଥିଲେ ଜାତକ ଦାତା, ପଣ୍ଡିତ, ବହୁ ଗୁଣଯୁକ୍ତ, ସୁଖୀ, କ୍ଷମାଶୀଳ, ଯୁକ୍ତଜ୍ଞ ଓ ନିର୍ଭୟ ହୁଏ ।୧୦।

ପରକର୍ମକୃଦସ୍ୱଶିଳ୍ପବୁଦ୍ଧୀ ଋଣବାନ୍‌ବିଷ୍ଟିକରୋ ବୁଧେଽର୍କଜର୍କ୍ଷେ
ନୃପସତ୍କୃତପଣ୍ଡିତାପ୍ତବାକ୍ୟୋ ନବମେଽନ୍ତ୍ୟେ ଜଡସେବକୋଽନ୍ତ୍ୟଶିଳ୍ପଃ ।୧୧।

ବୁଧ ମକର ବା କୁମ୍ଭରେ ଥିଲେ ଜାତକ ଅନ୍ୟର ଦାସ ହୁଏ । ସେ ଦରିଦ୍ର, ଶିଳ୍ପ କାର୍ଯ୍ୟରେ ଅନୁରକ୍ତ, ଋଣକର୍ତ୍ତା, ଆଜ୍ଞା ପାଳନକାରୀ ହୁଏ ।

ବୁଧ ଧନୁରେ ଥିଲେ ଜାତକ ରାଜପୂଜ୍ୟ, ପଣ୍ଡିତ ଓ ଯଥାର୍ଥ ବକ୍ତା ହୁଏ । ବୁଧ ମୀନରେ ଥିଲେ ଜାତକ ନିଜର ଅନୁଗତ ତଥା ସେବକମାନଙ୍କୁ ବଶୀଭୂତ କରିପାରେ ଓ ଯାହାର ସ୍ୱକୁଳର ଅନୁଚିତ ସେହିଭଳି ସାଧାରଣ ଶିଳ୍ପବିଦ୍ୟାରେ ନିରତ ହୁଏ ।୧୧।

## ବୃହସ୍ପତିର ମେଷାଦି ଦ୍ୱାଦଶରାଶି ସ୍ଥିତ ଫଳ କଥନ

ସେନାନୀବହୁବିତ୍ତଦାରତନୟୋ ଦାତା ସୁଭୃତ୍ୟଃ କ୍ଷମୀ
ତେଜୋଦାରଗୁଣାନ୍ୱିତଃ ସୁରଗୁରୌ ଖ୍ୟାତଃ ପୁମାନ୍ କୌଜଭେ ।
କଲ୍ୟାଙ୍ଗଃ ସଧନାର୍ଥମିତ୍ରତନୟସ୍ତ୍ୟାଗୀ ପ୍ରିୟଃ ଶୌକ୍ରଭେ
ବୌଧେ ଭୂରିପରିଚ୍ଛଦାତ୍ମଜସୁହୃତ୍ ସାଚିବ୍ୟଯୁକ୍ତଃ ସୁଖୀ ।୧୨।

ବୃହସ୍ପତି ମେଷ ବା ବୃଶ୍ଚିକରେ ଥିଲେ ଜାତକ ସେନା ନାୟକ, ବହୁ ଧନଯୁକ୍ତ, ବହୁ ସ୍ତ୍ରୀ ତଥା ସନ୍ତାନ ଯୁକ୍ତ (ବହୁ କୁଟୁମ୍ବୀ) ଦାତା, ଉତ୍ତମ ଭୃତ୍ୟ ଯୁକ୍ତ, କ୍ଷମାବାନ୍, ତେଜଯୁକ୍ତ ମନୋମତ ସ୍ତ୍ରୀ ଯୁକ୍ତ ଓ ଖ୍ୟାତିମାନ୍ ହୁଏ ।

ବୃହସ୍ପତି ବୃଷ ବା ତୁଳରେ ଥିଲେ ଜାତକ ସୁସ୍ଥଶରୀର, ସୁଖଯୁକ୍ତ, ମିତ୍ର ତଥା ପୁତ୍ରଯୁକ୍ତ, ଦାତା ଏବଂ ସର୍ବ ଜନପ୍ରିୟ ହୁଏ ।

ବୃହସ୍ପତି ମିଥୁନରେ ବା କନ୍ୟାରେ ଥିଲେ ଜାତକ ବହୁ ବସ୍ତ୍ରଗୃହ କୁଟୁମ୍ବ ଯୁକ୍ତ, ବହୁପୁତ୍ର, ବହୁମିତ୍ର, ମନ୍ତ୍ରୀତ୍ୱରେ ନିଯୁକ୍ତ ଓ ସୁଖୀ ହୁଏ ।୧୨।

ଗୃହେ ରତ୍ନସୁତସ୍ୱଦାରବିଭବପ୍ରଜ୍ଞାସୁଖୈରନ୍ୱିତଃ
ସିଂହେସ୍ୟାଦ୍‌ବଲନାୟକଃ ସୁରଗୁରୌ ପ୍ରୋକ୍ତଂ ଚ ଯଚ୍ଚନ୍ଦ୍ରଭେ ।
ସ୍ୱର୍କ୍ଷେ ମାଣ୍ଡଲିକୋ ନରେନ୍ଦ୍ରସଚିବଃ ସେନାପତିର୍ବା ଧନୀ
କୁମ୍ଭେ କର୍କଟବତ୍‌ଫଲାନି ମକରେ ନୀଚୋଽଲ୍ପବିତ୍ତୋଽସୁଖୀ ।୧୩।

ବୃହସ୍ପତି କର୍କଟରେ ଥିଲେ ଜାତକ ରତ୍ନଲାଭ କରେ । ସେ ପୁତ୍ର, ସ୍ତ୍ରୀ ଓ ଧନଯୁକ୍ତ ହୁଏ । ଜ୍ଞାନୀ ତଥା ସୁଖୀ ହୁଏ ।

ବୃହସ୍ପତି ସିଂହରେ ଥିଲେ ଜାତକ ରତ୍ନ, ପୁତ୍ର, ସ୍ତ୍ରୀ, ଧନ, ଜ୍ଞାନ ତଥା ସୁଖାଦିରେ ଯୁକ୍ତ ହୁଏ ଓ ସେନା ନାୟକ ହୁଏ ।

ବୃହସ୍ପତି ଧନୁ ବା ମୀନରେ ଥିଲେ ଜାତକ ମଣ୍ଡଳାଧିପତି, ମନ୍ତ୍ରୀ କିମ୍ବା ସେନାପତି ହୁଏ । ସେ ଧନଲାଭ କରେ ।

ବୃହସ୍ପତି କୁମ୍ଭରେ ଥିଲେ କର୍କଟରାଶିରେ ଥିବା ଭଳି ଫଳପ୍ରଦ ହୁଏ ମକରରେ ଥିଲେ ନୀଚକର୍ମପର, ଅଳ୍ପଧନ ଯୁକ୍ତ ଓ ସୁଖହୀନ ହୁଏ ।୧୩।

## ଶୁକ୍ରର ମେଷାଦି ଦ୍ୱାଦଶ ରାଶିସ୍ଥ ଫଳବିଚାର

ପରଯୁବତିରତସ୍ତଦର୍ଥବାଦୈର୍ହୃତବିଭବଃ କୁଲପାଂସନଃ କୁଜର୍କ୍ଷେ ।
ସ୍ୱବଲମତିଧନୋ ନରେନ୍ଦ୍ରପୂଜ୍ୟଃ ସ୍ୱଜନବିଭୁଃ ପ୍ରଥିତୋଽଭୟଃ ସିତେ ସ୍ୱେ ।୧୪।

ଶୁକ୍ର ମେଷ ବା ବୃଶ୍ଚିକରେ ଥିଲେ ଜାତକ ପରସ୍ତ୍ରୀଗାମୀ ଓ ସେଥିଲାଗି ବହୁଧନ ହାନି କରେ ଓ କୁଳରକଳଙ୍କ ସ୍ୱରୂପ ହୁଏ ।

ଶୁକ୍ର ବୃଷ ବା ତୁଳାରେ ଥିଲେ ଜାତକ ନିଜର ବଳ ତଥା ବୁଦ୍ଧି ପ୍ରୟୋଗ କରି ଧନାର୍ଜନ କରେ, ରାଜପୂଜ୍ୟ ହୁଏ, ସ୍ୱଜନ ତଥା ବନ୍ଧୁପ୍ରିୟ ହୁଏ, ଖ୍ୟାତ ଏବଂ ଭୟହୀନ ହୁଏ ।୧୪।

ନୃପକୃତ୍ୟକରୋଽର୍ଥବାନ୍‌କଲାବିନ୍ମିଥୁନେ ଷଷ୍ଠଗତେଽତିନୀଚକର୍ମା
ରବିଜର୍କ୍ଷଗତେଽମରେପୂଜ୍ୟେ ସୁଭଗଃ ସ୍ତ୍ରୀବିଜିତୋ ରତଃ କୁନାର୍ଯ୍ୟାମ୍ ।୧୫।

ଶୁକ୍ର ମିଥୁନରାଶିରେ ଥିଲେ ଜାତକ ରାଜକର୍ମରତ, ଧନବାନ୍ ଓ କଳାଜ୍ଞ (ଗୀତ, ବାଦ୍ୟ, ଚିତ୍ର) ହୁଏ । କନ୍ୟା ରାଶିରେଥିଲେ ଜାତକ ନୀଚକାର୍ଯ୍ୟ ରତ ହୁଏ ।

ଶୁକ୍ର ମକର ବା କୁମ୍ଭରେ ଥିଲେ ଜାତକ ସର୍ବଜନ ପ୍ରିୟହୁଏ, ସ୍ତ୍ରୀ ବଶରେ ରହେ ଓ କୁତ୍ସିତ ସ୍ତ୍ରୀ ଠାରେ ଆସକ୍ତ ହୁଏ ।୧୫।

ଦ୍ୱିଭାର୍ଯ୍ୟାର୍ଥୀ ଭୀରୁଃ ପ୍ରବଳମଦଶୋକାର୍ତ୍ତ ଶଶିଭେ
ହରୌ ଯୋଷାପ୍ତାର୍ଥଃ ପ୍ରବରଯୁବତର୍ମନ୍ଦତନୟଃ ।
ଗୁଣୈଃ ପୂଜ୍ୟଃ ସ୍ୱସ୍ଥୁରଗସହିତେ ଦାନବଗୁରୌ
ଝଷେ ବିଦ୍ୱାନାଢ୍ୟୋ ନୃପଜନିତପୂଜୋତିସୁଭଗଃ ।୧୭।

ଶୁକ୍ର କର୍କଟରାଶିରେ ଥିଲେ ଜାତକ ଦୁଇଟି ସ୍ତ୍ରୀ ଯୁକ୍ତ ହୁଏ । ସେ ଯାଚକ, ଭୟଯୁକ୍ତ, ପ୍ରବଳ ଅଭିମାନ ଯୁକ୍ତ ଓ ବହୁଦୁଃଖ ଯୁକ୍ତ ହୁଏ ।

ଶୁକ୍ର ସିଂହ ରାଶିରେ ଥିଲେ ଜାତକ ସ୍ତ୍ରୀ ହେତୁକ ଧନପାଏ, ଉତ୍ତମ ସ୍ତ୍ରୀ ପ୍ରାପ୍ତ ହୁଏ ଓ ଅଲ୍ପସନ୍ତାନ ଯୁକ୍ତ ହୁଏ ।

ଶୁକ୍ର ଧନୁ ରାଶିରେ ଥିଲେ ଜାତକ ନିଜର ଗୁଣ ଦ୍ୱାରା ସମ୍ମାନ ପାଏ ଓ ଧନଯୁକ୍ତ ହୁଏ ।

ଶୁକ୍ର ମୀନ ରାଶିରେ ଥିଲେ ଜାତକ ବିଦ୍ୱାନ, ଧନବାନ୍, ରାଜପୂଜ୍ୟ, ଓ ସର୍ବଜନ ଦ୍ୱାରା ଆଦରଣୀୟ ହୁଏ ।୧୭।

## ଶନିର ଦ୍ୱାଦଶରାଶିସ୍ଥ ଫଳ ବିଚାର

ମୂର୍ଖୋଽଟନଃ କପଟବାନ୍‌ବିସୁହୃଦ୍ୟମେଜେ
କୀଟେତ୍ତୁ ବନ୍ଧବଧଭାକ୍ ଚପଲୋଽଘୃଣଶ୍ଚ ।
ନିର୍ହ୍ରୀସୁଖାର୍ଥତନୟଃ ସ୍ଖଲିତଶ୍ଚ ଲେଖ୍ୟେ
ରକ୍ଷାପତିର୍ଭବତି ମୁଖ୍ୟପତିଶ୍ଚ ବୌଧେ ।୧୭।

ଶନି ମେଷରାଶିରେ ଥିଲେ ଜାତକ ମୂର୍ଖତାଯୁକ୍ତ, ଭ୍ରମଣ ଶୀଳ, କପଟ ଯୁକ୍ତ, ମିତ୍ରହୀନ ହୁଏ ।

ଶନି ବୃଶ୍ଚିକ ରାଶିରେ ଥିଲେ ଜାତକ ବନ୍ଧନଯୁକ୍ତ ଓ ତାଡ଼ନା (ଶାରୀରିକ ଦଣ୍ଡ) ଭୋଗକରେ, ସେ ଚଞ୍ଚଳ ଓ ନିର୍ଦ୍ଦୟ ହୁଏ ।

ଶନି ମିଥୁନ ବା କନ୍ୟାରାଶିରେ ଥିଲେ ଜାତକ ଲଜ୍ଜାହୀନ, ଦୁଃଖିତ, ଦରିଦ୍ର, ପୁତ୍ରହୀନ ଓ ଲେଖନ ଶକ୍ତି ରହିତ ହୁଏ । ସେ ବହୁଲୋକଙ୍କର ରକ୍ଷକ ହୁଏ ଓ ପ୍ରଧାନ ବ୍ୟକ୍ତି ହୋଇଥାଏ ।୧୭।

ଦ୍ରଃ—ଏଠାରେ ସନ୍ଦେହ ହୋଇପାରେ ଯେ ଧନହୀନ ଓ ଲେଖନ ଜ୍ଞାନ ଶୂନ୍ୟ ସେ ବ୍ୟକ୍ତି ରକ୍ଷାକାରୀ ଓ ପ୍ରଧାନବ୍ୟକ୍ତି କିପରି ହେବ । ଏପରି ବ୍ୟକ୍ତି ଆଦୌ ବିରଳ ନୁହନ୍ତି । ଏ ଶ୍ରେଣୀର ଲୋକେ "ଅଙ୍କ" ରୂପେ ପରିଚିତ

ହେଲେହେଁ ସମୟରେ ବହୁ ବ୍ୟକ୍ତିଙ୍କୁ ଅପଦରୁ ରକ୍ଷାକରି ଥାଆନ୍ତି ଏବଂ ଲୋକେ ତୁରି ମରି ଏମାନଙ୍କୁ ପ୍ରଧାନ ରୂପେ ମାନ୍ୟ କରନ୍ତି ।

ବର୍ଜ୍ୟସ୍ତ୍ରୀଷ୍ଟୋ ନ ବହୁବିଭବୋ ଭୂରିଭାର୍ଯ୍ୟୋ ବୃଷସ୍ଥେ
ଖ୍ୟାତଃ ସ୍ତ୍ରୈଚ୍ଛେ ଗଣପୁରବଲଗ୍ରାମପୂଜ୍ୟୋଽର୍ଥବାଂଶ୍ଚ ।
କର୍କିଣ୍ୟସ୍ୱୋ ବିକଲଦଶନୋ ମାତୃହୀନୋଽସୁତୋଽଜ୍ଞଃ
ସିଂହେଽନାର୍ଯ୍ୟୋ ବିସୁଖତନୟୋ ବିଷ୍ଟିକୃଦ୍ ସୂର୍ଯ୍ୟପୁତ୍ରେ ।୧୮।

ଶନି ବୃଷରାଶିରେ ଥିଲେ ଜାତକ ଅଗମ୍ୟ ସ୍ତ୍ରୀ ଠାରେଁ ଅସକ୍ତ ହୁଏ । ଅଳ୍ପ ଧନ ଯୁକ୍ତ ହୁଏ ଓ ଏକାଧିକ ସ୍ତ୍ରୀ ଯୁକ୍ତ ହୁଏ ।

ଶନି ତୁଳା ରାଶିରେ ଥିଲେ ଜାତକ ଖ୍ୟାତିଯୁକ୍ତ କୁଳର ମୁଖ୍ୟ ନଗରର ତଥା ସେନା ବାହିନୀରେ ବିଶିଷ୍ଟ ସ୍ଥାନ ପ୍ରାପ୍ତ, ଗ୍ରାମର ଅଧ୍ୟକ୍ଷ ଓ ଧନବାନ୍ ହୁଏ । ଶନି କର୍କଟରେ ଥିଲେ ଜାତକ ନିର୍ଦ୍ଧନ, ଦନ୍ତରୋଗ ଯୁକ୍ତ, ମାତୃହୀନ, ପୁତ୍ରହୀନ ଓ ଅଜ୍ଞ ହୁଏ ।

ଶନି ସିଂହ ରାଶିରେ ଥିଲେ ଜାତକ ମୂର୍ଖତା ଯୁକ୍ତ, ଦୁଃଖିତ, ପୁତ୍ରହୀନ ଓ ଭାର ବହନାଦି ହୀନକର୍ମ ଯୁକ୍ତ ହୁଏ ।୧୮।

ସ୍ୱାନ୍ତଃ ପ୍ରତ୍ୟୟିତୋ ନରେନ୍ଦ୍ରଭବନେ ସତ୍ପୁତ୍ରଜାୟାଧନୋ
ଜୀବକ୍ଷେତ୍ରଗତେଽର୍କଜେ ପୁରବଲଗ୍ରାମାଗ୍ରନେତାଥବା ।
ଅନ୍ୟସ୍ତ୍ରୀଧନସମ୍ବୃତଃ ପୁରବଲଗ୍ରାମାଗ୍ରଣୀର୍ମନ୍ଦଦୃକ୍
ସ୍ୱକ୍ଷେତ୍ରେ ମଲିନଃ ସ୍ଥିରାର୍ଥବିଭବୋ ଭୋକ୍ତା ଚ ଜାତଃପୁମାନ୍ ।୧୮।

ଶନି ଧନୁ ବା ମୀନ ରାଶିରେ ଥିଲେ ଜାତକର ଶେଷ ସମୟ ସୁଖରେ କଟେ ବା ସୁଖମୃତ୍ୟୁ ଘଟେ । ସେ ବ୍ୟକ୍ତି ରାଜାର ବିଶ୍ୱସ୍ତହୁଏ ସେ ସତ୍ପୁତ୍ର ତଥା ସୁଶୀଳାପତ୍ନୀ ଲାଭ କରି ଥାଏ । ସେ ଉତ୍ତମ ଧନ ଯୁକ୍ତ ହୁଏ । ନଗରି, ସେନା ବା ଗ୍ରାମମାନଙ୍କର ଆଧିପତ୍ୟ ଲାଭ କରେ ।

ଶନି ମକର ବା କୁମ୍ଭରେ ଥିଲେ ଜାତକ ପରସ୍ତ୍ରୀ ଯୁକ୍ତ, ପରଧନ ତଥା ପରଗୃହ ଭୋଗ କରିଥାଏ । ସେ ନଗର, ସୈନ୍ୟଶ୍ରେଣୀ ତଥା ଗ୍ରାମମାନଙ୍କର ମୁଖ୍ୟ ହୁଏ । ତାହାର ଦୃଷ୍ଟିଶକ୍ତି କ୍ଷୀଣ, ସେ ମଳିନ ଶରୀରଯୁକ୍ତ ସ୍ଥିର ସମ୍ପଦ ଯୁକ୍ତ ଓ ଭୋଗ ଶୀଳ ହୁଏ ।୧୯।

ଶଶିରବିକରସମାଗମେକ୍ଷଣାନାଂ ସଦୃଶଫଲଂ ପ୍ରବଦନ୍ତି ଲଗ୍ନଜାତମ୍
ଫଲମଧିକମିଦଂ ଯଦତ୍ରଭାବାଦ୍ଭବନଭନାଥଗୁଣୈର୍ବିଚିନ୍ତନୀୟାଃ ।୨୦।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ
ଗ୍ରହରାଶିଶୀଳାଧ୍ୟାୟୋଽଷ୍ଟାଦଶଃ ॥

ଚନ୍ଦ୍ର ଯେଉଁ ରାଶିରେ ରହିଲେ ଯେ ଫଳ ଘଟିବ ବୋଲି ଷୋଡ଼ଶ ଅଧ୍ୟାୟରେ କହାଯାଇଅଛି, ଠିକ୍ ସେହିଭଳି ଫଳ ମଧ୍ୟ ସେହି ରାଶି ଲଗ୍ନହେଲେ କହିବେ । ଅର୍ଥାତ୍ ଚନ୍ଦ୍ର ମେଷରେ ଥିଲେ ଯେ ଫଳ, ମେଷ ଲଗ୍ନରେ ଜନ୍ମହେବା ବ୍ୟକ୍ତିର ମଧ୍ୟ ଲଗ୍ନର ଫଳ ତାହା ଅଟେ । ଏହି ପରି ସବୁ ରାଶି ଓ ଲଗ୍ନ ବୁଝିବେ ।

ପର ଅଧ୍ୟାୟରେ ମେଷାଦି ରାଶିରେ ଥିବା ଚନ୍ଦ୍ରଙ୍କୁ ଅନ୍ୟ ଗ୍ରହମାନେ ଦେଖିଲେ କି ଫଳ ହୁଏ ତାହା କହାଯିବ । ମେଷାଦି ଲଗ୍ନକୁ ସେହି ସେହି ଗ୍ରହମାନେ ଦେଖିଲେ ମଧ୍ୟ ଫଳ ସେହି ଭଳି ଅର୍ଥାତ୍ ମେଷସ୍ଥ ଚନ୍ଦ୍ରକୁ ଦେଖୁଥିବା ଗ୍ରହର ଫଳ ମାନ ହେବ ।

ଚନ୍ଦ୍ରର ରାଶି ଫଳ ଠାରୁ ଲଗ୍ନାଦି ଦ୍ୱାଦଶ ଭାବ ଫଳର ବିଶେଷତ୍ୱ ଏହି ଯେ ଭାବ ତଥା ଭାବାଧିପତିର ବଳାନୁରୂପ ଫଳାଫଳ ଉତ୍ତମ, ମଧ୍ୟମ ବା ଅଧମ ଭାବରେ ଘଟିବ । ଲଗ୍ନ ତଥା ଲଗ୍ନାଧିପତି ଉଭୟେ ବଳବାନ୍ ହେଲେ ଲଗ୍ନ ଭାବଜନିତ ସମସ୍ତ ଫଳ ଶୁଭ ହେବ । ଏହିଭଳି ସବୁ ଭାବମାନଙ୍କୁ ଜାଣିବେ ।

ଦ୍ରଷ୍ଟବ୍ୟ:—ମହାମତି ସତ୍ୟାଚାର୍ଯ୍ୟଙ୍କ ପ୍ରମାଣକୁ ଗ୍ରନ୍ଥକର୍ତ୍ତା ବହୁ ସ୍ଥଳରେ ଗ୍ରହଣ କରିଛନ୍ତି । ତାଙ୍କର ଲଗ୍ନ ଜାତ ଫଳଗୁଡ଼ିକ ଟୀକାକାର ଭଟ୍ଟୋତ୍ପଳ ନିଜ ଟୀକାରେ ଯେପରି ଉଲ୍ଲେଖ କରିଛନ୍ତି ତାହା ଏଠାରେ ଦିଆଗଲା । ଏହା ଯେପରି ବସ୍ତୁତ ସେଭଳି ଘଟିବା ଦେଖାଯାଏ ।

## ସତ୍ୟାଚାର୍ଯ୍ୟଙ୍କ ମତରେ ମେଷାଦି ଦ୍ୱାଦଶ ଲଗ୍ନଜାତ ଫଳ

ମେଷବିଲଗ୍ନେ କ୍ରୂରଶ୍ଚୀ ଯୁଦ୍ଧେଷଣୋ ଭେଦକୃତସ୍ଥଲତ୍ରବାକ୍ୟଃ
ପିତ୍ତାନିଲଭୂଯିଷ୍ଠଃ କୃପଣୋଽତିବହୁବ୍ୟଥସ୍ତୈଵ ।୧।
ରହିତୋ ବାଲ୍ୟେ ଗୁରୁଭିର୍ମନ୍ଦସୁତଃ ସ୍ୱଜନସହାଚ୍ଛିତକର୍ତ୍ତା
ଧର୍ମସ୍ଥିତୋ ବିଦେଶୋପଗଶ୍ଚ କର୍ମାରଭତ୍ୟଫଲମ୍ ।୨।
ମାତୃଂ ବା ପିଶୁନାଂ ବା ବିକଲାଂ ଲଭତେଽନ୍ୟପୂର୍ବିକାଂ ଭାର୍ଯ୍ୟାମ୍
ସହଜସମାନ୍ୟପି ମିତ୍ରାଣି ଦୃଷ୍ୟ ବନ୍ଧୁଭିମୁପଯାନ୍ତି ।୩।
ଶସ୍ତ୍ରେଣ ବା ବିଷେଣ ବା ମରଣଂ ପିତ୍ତୋଭବୈର୍ବିକାରୈର୍ବା
ସ୍ୱାପୃଷ୍ଠାଜଳନାଦ୍‌ବା ବର୍ଷାଦ୍ଦୁର୍ଗାପତନାଦ୍‌ବା ।୪।

ମେଷ ଲଗ୍ନ ଜାତ ବ୍ୟକ୍ତି ଅସୁନ୍ଦର ନଖ ଯୁକ୍ତ, କୋପନ ସ୍ୱଭାବ, ଭେଦ ସଂଜାତକାରୀ, ଖନା ବା କଥା କହୁ କହୁ ତୁଣ୍ଡ ଲଗିବା, ପିତ୍ତ ତଥା ବାତ ପ୍ରକୃତକ, କୃପଣ, ରୋଗହେତୁ ବହୁ ଦୁଃଖଭୋଗୀ, ବାଲ୍ୟ ବୟସରେ ପିତୃ ମାତୃ ହୀନ, ଅଳ୍ପ ସନ୍ତାନ ଯୁକ୍ତ, ଭ୍ରାତା ତଥା ବନ୍ଧୁମାନଙ୍କର ଉପକାରୀ, ଧର୍ମ ତୀର୍ଥକାରୀ, ବିଦେଶ ଯାତ୍ରାକାରୀ, କର୍ମକର ଫଳ ନପାଇବା, ପୂର୍ବରୁ ବିବାହିତା ବା ବାଗ୍‌ଦତ୍ତା, ଯାହାର ସ୍ୱଭାବ କୁତ୍ସିତ ଯେ ପରନିନ୍ଦା ପରାୟଣା ବା ଅଙ୍ଗହୀନା ଏ ଭଳି ସ୍ତ୍ରୀକୁ ବିବାହ କରେ, ଭାଇ ତଥା ବନ୍ଧୁମାନେ ତାହାର ବରାବର ହିତକାମୀ ହୋଇ ରହନ୍ତି, ଶସ୍ତ୍ର ଦ୍ୱାରା, ବିଷ ଦ୍ୱାରା କିମ୍ବା ନିଜର ଲୋକଙ୍କ ଷଡ଼୍‌ଯନ୍ତ୍ର ହେତୁ ଅଥବା ପିତ୍ତ ବିକାର, ଅଗ୍ନି ବୃଷ୍ଟି କିମ୍ବା ପତନ ହେତୁକ ମୃତ୍ୟୁ ଘଟିଥାଏ ।

ବୃଷଭ ବିଲଗ୍ନେ ସ୍ଥୁଳୋଷ୍ଠଗଣ୍ଡନାସୋ ମହାଲଲାଟଶ୍ଚ
ଶ୍ଳେଷ୍ମାନିଲଭୂୟିଷ୍ଠସ୍ତ୍ୟାଗୀ ବହୁଶୋ ବ୍ୟୟରତଶ୍ଚ ।୧।
କନ୍ୟାପ୍ରଜୋଽଳ୍ପପୁତ୍ରଃ ପିତୁର୍ଜନନ୍ୟାଶ୍ଚ ଦୋଷକୃଦ୍‌ବହୁଶଃ
କର୍ମାଣି ସତତଂ ସକ୍ତୋ ବିଧର୍ମଯୁକ୍ତୋଽର୍ଥଭାକ୍‌ଚୈବ ।୨।
ନିତ୍ୟଂ କଳତ୍ରକାଂକ୍ଷୀ ଶସ୍ତ୍ରବିଘାତୀ ସଦା ସ୍ୱଜନହର୍ତ୍ତା
ମୃତ୍ୟୁଃ ଶସ୍ତ୍ରୈଃ ପାଶୈର୍ମୃଗୈଶ୍ଚ ଲଭତେନ୍ୟଦେଶେଷୁ ।୩।
ଦେହଶ୍ରମୈର୍ଜଳୈର୍ବା ଶୂଳୈର୍ବାପ୍ୟଟନନରସର୍ପୈଶ୍ଚୈବ
ପୁରୁଷସ୍ତୁଷ୍ପଦୈର୍ବା ବଳାନ୍ୱିତାନ୍ମୃତ୍ୟୁମୁପଯାତି ।୪।

ବୃଷ ଲଗ୍ନ ଜାତବ୍ୟକ୍ତିର ଓଷ୍ଠ, ଗଣ୍ଡ ଓ ନାସା ସ୍ଥୂଳ, କପାଳ ବିସ୍ତୃତ ହୁଏ । ସେ ବାତ ଶ୍ଳେଷ୍ମ ପ୍ରକୃତକ, ଦାନୀ, ବହୁ ପ୍ରକାରେ ବ୍ୟୟକରେ । ତାହାର କନ୍ୟା ବହୁତ, ପୁତ୍ର ଅଳ୍ପ, ସେ ପିତା ଓ ମାତାକୁ କଷ୍ଟଦିଏ, ସବୁବେଳେ କର୍ମପର ହୁଏ, ଅନୁଚିତ କର୍ମାସକ୍ତ ଓ ଧନ ପ୍ରାପ୍ତ ହୁଏ, ସେ ନିତ୍ୟ ସ୍ତ୍ରୀ ସମ୍ଭୋଗ ଇଚ୍ଛାକରେ, ଶସ୍ତ୍ର ଘାତ ଭୋଗ କରେ, ସ୍ୱଜନର ଅହିତ କରେ, ତାହାର ଶସ୍ତ୍ର ହେତୁ, ପାଶ ହେତୁ, ପଶୁହେତୁ, ଅତ୍ୟଧିକ ଶ୍ରମହେତୁ, ଜଳ ହେତୁ, ଶୂଳ ହେତୁ, ଭ୍ରମଣ ହେତୁ, ମନୁଷ୍ୟ ହେତୁ ବା ଚତୁଷ୍ପଦ ଜୀବ ହେତୁ ବିଦେଶରେ ମୃତ୍ୟୁ ଘଟେ ।

ପୂର୍ବବିଲଗ୍ନେ ମିଥୁନେ ହୀନାଙ୍ଗଃ ସୁଯୁତୋଽଧିକାଙ୍ଗୋବା
ପ୍ରିୟବାଗ୍‌ବିଶିଷ୍ଟକର୍ମା ମିଶ୍ରପ୍ରକୃତର୍ଦ୍ୱିଜନମୀକଃ ।୧।

ଅଳ୍ପମତିରଳ୍ପକାୟଃ ସତାଂ ଚ ମହତୋ ଗୁରୁଣାଂ ଚ
ଅଳ୍ପସହଜୋଽଳ୍ପଚେଷ୍ଟଃ ପରବମର୍ଦ୍ଦୀ ଗୁଣଯୁତଷ୍ଟ ।୨।
କର୍ମସୁ ବହୁଷ୍ୱଭିରତୋ ଧର୍ମଂ ସାଧୟତି ନଙ୍ଗ୍ୟ ଧର୍ମେଣ
ପ୍ରାପ୍ତାଁ ଲ୍ଲାଭାନ୍ବିଧାଡ଼ୋଦେଟିସ୍ତ୍ରୈଶ୍ଚୈଷ୍ଟ ନାଶୟତି ।୩।
ବହ୍ୱୀଃ ପତ୍ନୀର୍ଲଭତେ ରୋଗାଂଷ୍ଟଦାରୁଣାଞ୍ଚାୟତି
ବ୍ୟାଳଦ୍ୱିଷାତ୍ମଗାଦ୍ୱାପ୍ୟୁଦକାଦ୍ୱା ମୃତ୍ୟୁମୁପଯାତି ।୪।

ମିଥୁନ ଲଗ୍ନରେ ଜାତବ୍ୟକ୍ତି ହୀନାଙ୍ଗ ବା ହ୍ରସ୍ୱାଙ୍ଗ କିମ୍ବା ଅଧିକାଙ୍ଗ (ଷଡଙ୍ଗୁଳ ପ୍ରଭୃତି) ବା ଦୀର୍ଘାଙ୍ଗ ଯୁକ୍ତ ହୁଏ ଅର୍ଥାତ୍ ଏହି ବ୍ୟକ୍ତିର ଶରୀର ଗଠନରେ କିଛି ବୈଶିଷ୍ଟ୍ୟ ଥାଏ, ସେ ପ୍ରିୟବାଦୀ, ବଶିଷ୍ଟ କର୍ମକର୍ତ୍ତା, ମିଶ୍ରଣ ପ୍ରକୃତି ଓ ମାତୃଦ୍ୱୟ (ଜନ୍ମଦାତ୍ରୀ-ପୋଷଣକର୍ତ୍ତ୍ରୀ କିମ୍ବା ବିମାତାଯୁକ୍ତ) ଯୁକ୍ତ ହୁଏ। ସେ ଅଳ୍ପ ବୁଦ୍ଧିଯୁକ୍ତ, ଶରୀର ହ୍ରସ୍ୱ, ସଜ୍ଜନ ତଥା ଗୁରୁବର୍ଗରେ ଭକ୍ତି ଯୁକ୍ତ ହୁଏ । ତାହାର ଭ୍ରାତା ଅଳ୍ପ ହୁଅନ୍ତି, ସେ ଅଳ୍ପ ଚେଷ୍ଟା ଯୁକ୍ତ, ଶତ୍ରୁ ନାଶକାରୀ ଓ ଗୁଣବାନ୍ ହୁଏ । ବହୁ କର୍ମକରେ, ଧର୍ମ କ୍ରିୟା ପାଳନକରେ କିନ୍ତୁ ଧନାର୍ଜନରେ ଅଧର୍ମକାର୍ଯ୍ୟ କରିବାକୁ ନପଛାଇଲେହେଁ ସେହି ଧନଦ୍ୱାରା ଧର୍ମକାର୍ଯ୍ୟ ମଧ୍ୟ କରିଥାଏ । ସେ ବହୁ ସ୍ତ୍ରୀ ଯୁକ୍ତ ଓ ବହୁରୋଗ ଯୁକ୍ତ ହେଲେହେଁ ସବୁଥିରୁ ରକ୍ଷାପାଏ । ସର୍ପହେତୁ, ଶତ୍ରୁହେତୁ, ଜନ୍ତୁଦ୍ୱାରା କିମ୍ବା ଜଳରେ ତାହାର ମୃତ୍ୟୁ ଘଟେ ।

କର୍କିଣି ପୂର୍ବବଲସ୍ତ୍ରୈଣୈକାଗ୍ରୋଗୁହ୍ୟରୋଗବାନ୍ ଭୀରୁଃ
ଉରସି କୃତାଭିଜ୍ଞାନଃ କଫାନିଲାମ୍ନା ଦୃଢଗ୍ରାହୀ ।୧।
ପାପାନହିତାନ୍ଭଜତେ ପରସ୍ୱମପି କ୍ଷିପଦ୍ବ୍ୟୟେନ ସନ୍ତତ
ସ୍ୱଜନାଦ୍ଦୁଃଖଃ ସ୍ୱଜନୈର୍ବିଭର୍ତ୍ତିତୋ ହ୍ୟସ୍ଥିରପ୍ରସବଃ ।୨।
ତୀକ୍ଷ୍ଣଂ କର୍ମବିଦେଶେ ନିତ୍ୟଂ ହ୍ୟର୍ଦ୍ଧୋଦିତଃ ପରସ୍ୱାମୀ
ଅସଦ୍ୱୃଶଦାରୋ ରିପୁନିର୍ଜିତଷ୍ଟ ପୂଜ୍ୟଃ ସମୂହାନାମ୍ ।୩।
କଣ୍ଠାପୀଡ଼ାଦ୍ରୁଜ୍ୟାକଫୋଦୟାଦସ୍ଥିଭଞ୍ଜନାଚ୍ଛେଦାତ୍
ଦେହଚ୍ଛେଦାଦଥବା ଜଲୋଦରାନ୍ମୃତ୍ୟୁମାପ୍ନୋତି ।୪।

କର୍କଟ ଲଗ୍ନରେ ଜାତ ହେବା ବ୍ୟକ୍ତି ଏକାଗ୍ରତାବିହୀନ, ଗୁହ୍ୟ-ରୋଗଯୁକ୍ତ, ଭୟାଳୁ, ବକ୍ଷରେ ତିଳଚିହ୍ନାଦିଯୁକ୍ତ, ବାତକଫଦେହୀ, ଶୀଘ୍ରବିଷୟବୋଧକାରୀ, ପାପଯୁକ୍ତ, ଶତ୍ରୁହେତୁକ କଷ୍ଟପ୍ରାପ୍ତ, ପରଧନକୁ ଇଚ୍ଛାନୁସାରେ ବ୍ୟୟକାରୀ, ସ୍ୱଜନଠାରୁ ଆଦର ପାଏ ନାହିଁ ଓ କଷ୍ଟଭୋଗ

କରେ । ସେ ପୁରୁଷ ହୋଇଥିଲେ ତାର ସ୍ତ୍ରୀ ଗର୍ଭସ୍ରାବ ଦୁଃଖ ଭୋଗ କରେ । ସ୍ତ୍ରୀ ହୋଇଥିଲେ ତାହାର ଗର୍ଭସ୍ରାବ ହୁଏ । ସେ ବିଦେଶରେ ବହୁଶ୍ରମ କରେ । ନୈଋତ୍ୱ ଗ୍ରହଣ କରିଥାଏ, ଉପଯୁକ୍ତ ସ୍ତ୍ରୀ ପାଏ ନାହିଁ । ପରାଜିତ କଷ୍ଟ ଭୋଗ କରେ, ବହୁଲୋକରେ ପୂଜ୍ୟ ହୁଏ । କଣ୍ଠପୀଡ଼ା, ଦଉଡ଼ି ହେତୁ, କଫରୋଗରୁ, ଅଗ୍ନିଭଙ୍ଗରୁ, ବସନ୍ତ ରୋଗରୁ, କାଟି ହୋଇଯିବା ହେତୁ ବା ଜଳୋଦର ରୋଗରୁ ତାହାର ମୃତ୍ୟୁ ହୁଏ ।

ସିଂହବିଲଗ୍ନେ କଠିନଃ ପ୍ରିୟାମିଷଃ ପୈତ୍ତିକୋ ବିତତନାଶଃ
ବହ୍ୱାରମ୍ଭକୁଟୁମ୍ବଃ କୃପଣସ୍ତ୍ୱଥ ସମତଃ ଖ୍ୟାତଃ ।୧।
ସହଜବିଷାଦୀ ସ୍ୱଜନସ୍ୟ ଘାତକୋ ବିକମୈଃ ସ୍ୱକୈର୍ଯୁକ୍ତଃ
ଅବିଷାଦୀ କର୍ମକରେ ବିଵିଧୋପାୟୈସ୍ତ୍ୱଧର୍ମିଷ୍ଠଃ ।୨।
ଭାର୍ଯ୍ୟା ବହ୍ୱୀର୍ଲଭତେ ବନ୍ଧ୍ୟାଦ୍ୱିବିଧାଃ କୁଲୈରୁପେତାଶ୍ଚ
କଟ୍ୟାଂ ରୁଜଶ୍ଚ ବହୁଶୋଜାନ୍ୱୋର୍ଦଶନେଷୁ ଗୃହ୍ଣୋତି ।୩।
ମୃତ୍ୟୁଃଶସ୍ତ୍ରୈଃ ପାପୈର୍ବିଷୈଶ୍ଚ କାଷ୍ଠୈରଥାମୟୈଶ୍ଚାପି
ଅମ୍ବୁଚରୈର୍ବା ସତ୍ତ୍ୱୈର୍ବୁଭୁକ୍ଷୟା ହାସମୁପଯାତି ।୪।

ସିଂହ ଲଗ୍ନଜାତ ବ୍ୟକ୍ତି କଠିନ ସ୍ୱଭାବ, ଆମିଷପ୍ରିୟ, ପିତ୍ତଧାତୁକ, ବହୁଷତ ଭୋଗକାରୀ, ବହୁକାର୍ଯ୍ୟରେ ନିବିଷ୍ଟ, ବହୁ କୁଟୁମ୍ବୀ, କୃପଣ, ବିଶିଷ୍ଟ-ଲୋକଙ୍କ ପ୍ରିୟ, ଖ୍ୟାତିଯୁକ୍ତ, ଭ୍ରାତାମାନଙ୍କୁ ଦୁଃଖଦାତା, ନିଜର ବ୍ୟକ୍ତିମାନଙ୍କ ବିନାଶକର୍ତ୍ତା, ବିକମଯୁକ୍ତ, ବିଷାଦହୀନ, ବିବିଧ ଉପାୟରେ କର୍ମସିଦ୍ଧି ବିଷୟରେ ଚେଷ୍ଟାକାରୀ, ଅଧାର୍ମିକ ହୁଏ । ସେ ବହୁ କୁଳରୁ ଭାର୍ଯ୍ୟା ଗ୍ରହଣ କରେ, କଟି ଦେଶରେ ପୀଡ଼ାଯୁକ୍ତ ହୁଏ । ଜାନୁ ଓ ଦନ୍ତପୀଡ଼ା ଭୋଗ କରେ । ତାହାର ମୃତ୍ୟୁ ଶସ୍ତ୍ର, ପାପକର୍ମ, ବିଷ, କାଷ୍ଠ, କଫଜନିତ ରୋଗ, ଜଳଜନ୍ତୁ, ସତ୍ତ୍ୱହୀନତା ଓ କ୍ଷୁଧାହେତୁକ ଘଟିଥାଏ ।

ଷଷ୍ଠବିଲଗ୍ନେ ପ୍ରିୟବାକ୍ ତନୁଜ୍ଜ୍ୱଲଦୀର୍ଘକରଚରଣଃ ।
ମିଶ୍ରପ୍ରକୃତଷ୍ଟାର୍ଯ୍ୟାକୃତବର୍ତ୍ତୀ ଗୃର୍ଥବାନ୍ କୃପଣଃ ।୧।
ସ୍ୱଜନସେ୍ୟଷ୍ଟଃ କନ୍ୟାବହୁପ୍ରଜୋ ଭ୍ରାତୃଭିର୍ବିରୁଦ୍ଧଶ୍ଚ ।
ଧର୍ମପ୍ରିୟୋଲ୍ପଲଭଃ କର୍ମଣି ନିପୁଣଃ ସମାଚରତି ।୨।
ବିବିଧାଇତୁଷ୍ପଦଗଣାଜ୍ଜ୍ୱରାତ୍ ପିତ୍ତୈର୍ଭବାଦ୍ରୋଗାତ୍ ।
ଶୋକାତ୍ସଂପାତାଦ୍ୱା ମୃତ୍ୟୁଂ ଗୃହ୍ଣୋତି ପାଶାଦ୍ୱା ।୩।

କନ୍ୟାଲଗ୍ନ ଜାତବ୍ୟକ୍ତି ପ୍ରିୟବାକ୍ୟଯୁକ୍ତ, ସୁନ୍ଦର ଶରୀର, ପାଦ ଓ ହସ୍ତଗୁଡ଼ିକ ଦୀର୍ଘାକାର, ମିଶ୍ରିତ ପ୍ରକୃତି, ଶୁଭଦର୍ଶନ, ବ୍ରଣଯୁକ୍ତଶରୀର, ଧନଯୁକ୍ତ ଓ କୃପଣ ହୁଏ । ସେ ସ୍ୱଜନ ପୋଷକ, ବହୁକନ୍ୟାର ଜନକ, ଭ୍ରାତୃବିରୋଧଯୁକ୍ତ, ଧର୍ମପ୍ରିୟ, ଅଳ୍ପ ଲାଭଯୁକ୍ତ ଓ କର୍ମ ନିପୁଣ ହୁଏ । ତାହାର ମୃତ୍ୟୁ ପଶୁହେତୁକ, ଶସ୍ତ୍ର ହେତୁକ, ପିତ୍ତ ଜନିତ ରୋଗ ହେତୁ, ଶୋକ ବା ପତନ ହେତୁକ କିମ୍ବା ପାଶ (ଦାଉଡ଼ି) ହେତୁକ ଘଟେ ।

ସପ୍ତମରାଶୌ ଲଗେ ବିଷମାଙ୍ଗଃ ସୁଯୁତେ ବିଷମଶୀଳଃ ।
କଫବାତକଃ ସୁଚପଲୋ ହ୍ରସ୍ୱଗ୍ରୀବଃ କୃତଙ୍କଶ୍ଚ ।୧।
ଅର୍ଥାନ୍ ବିପୁଲାନ୍ ଲଭତେ ବ୍ୟୟେନ ସଂପୂଜ୍ୟେତ ଯଶଃପ୍ରାୟଃ ।
ଗୁରୁସେବୀସ୍ୟାଂ ନରତଃ ପିତାନ୍ୟଜନସହଜପୂଜ୍ୟଃ ।୨।
ଅଧ୍ୱରୁଚିର୍ଧର୍ମିଷ୍ଠୋ ବିନାଶମାୟାତି ପୀଡ଼ନୈଃ ସ୍ୱୈଃ ସ୍ୱୈଃ ।
ମୃତଭାର୍ଯ୍ୟଃ କଳହରୁଚିର୍ବହୁଶଃ ଶୋକାଦଭିଃ କ୍ଲିଷ୍ଟଃ ।୩।
ମୃତ୍ୟୁଃ ଖ୍ୟାତାତ୍ପୁରୁଷାତ୍ସ୍ୱଜନାଚ୍ଚୌମ୍ୟାଇତୁଷ୍ପଦାଦ୍‌ବାପି ।
ଖେଦାଇ ବିପ୍ରୟୋଗାଦୁପବାସାନ୍ମାର୍ଗଯୋଗାଦ୍‌ବା ।୪।

ତୁଲାଲଗ୍ନ ଜାତବ୍ୟକ୍ତି ବିଷମାଙ୍ଗ, ଅନିଷ୍ଟ ପରାୟଣ, କଫବାତ ଦେହୀ, ଚଞ୍ଚଳ, ବେଙ୍କଟି ବେକ, କୃତଜ୍ଞ, ବହୁଧନପ୍ରାପ୍ତ, ବହୁବ୍ୟୟ କରି ଯଶଲାଭ କରେ । ସେ ଗୁରୁସେବା ପରାୟଣ, ପିତା, ଭ୍ରାତା ତଥା ଅନ୍ୟବ୍ୟକ୍ତିମାନଙ୍କ ଦ୍ୱାରା ଆଦର ପ୍ରାପ୍ତ, ଭ୍ରମଣେଚ୍ଛାଯୁକ୍ତ, ଧର୍ମକର୍ମୀ, ନିଜର ବ୍ୟକ୍ତିମାନଙ୍କ ହେତୁ କଷ୍ଟପ୍ରାପ୍ତ, ଭାର୍ଯ୍ୟାହାନି କଷ୍ଟଭୋଗକାରୀ, କଳହପ୍ରିୟ, ବହୁଶୋକରେ ଆତୁର ହୁଏ । ବଶିଷ୍ଟ ବ୍ୟକ୍ତି ଦ୍ୱାରା, ନିଜର ଲୋକ ଦ୍ୱାରା, ଗୃହପାଳିତ ପଶୁଦ୍ୱାରା, ଦୁଃଖହେତୁ, ସ୍ୱଜନ ବିଚ୍ଛିନ୍ନ ହୋଇ ରହିବା ହେତୁ, ଉପବାସାଦି ହେତୁ କିମ୍ବା ମାର୍ଗ ଭ୍ରମଣ କ୍ଳେଶ ହେତୁ ମରଣ ଘଟିଥାଏ ।

ଅଷ୍ଟମରାଶୌ ଲଗ୍ନେ ବିଶାଳରକ୍ତାନନୋଦରଃ କ୍ରୂରଃ ।
ପିତ୍ତପ୍ରକୃତଃ ପିଙ୍ଗେକ୍ଷଣୋ ମୃଦୁଦ୍ରୁତଗତଃ ପରସ୍ୱାମୀ ।୧।
ସ୍ତ୍ରୀତକୁଟୁମ୍ବସ୍ୱଜନୋନ୍ତକଶ୍ଚ ବହୁବ୍ୟୟୋ ବହୁପ୍ରସବଃ ।
ସୁଶରହତୋ ଭ୍ରାତୃବୈରୀ ନୃପସେବୀ ଧର୍ମହୀନଶ୍ଚ ।୨।
ଭାର୍ଯ୍ୟାନିମିତ୍ତବିମୁଖୀ ଶତ୍ରୋରର୍ଥାନ୍ନ ଦଦାତି ବହୁଶଶ୍ଚ ।
ସ୍ୱକୁଳୋଦ୍ଭୂତାଂଶ୍ଚିହ୍ନଂ ଲଭତେ ରୋଗାଂଶ୍ଚ ନୈକବିଧାନ୍ ।୩।

ଗାବଚ୍ଛେଦୈଃ ଶବୋର୍ଦ୍ଧଶଙ୍କତୋ ବନ୍ଧନୈଃ ପ୍ରହାରୈଶ୍ଚ
ଚୋରୈର୍ବା ପାପକୃତୈର୍ଜ୍ଜ୍ୱଲନାଦ୍‌ବା ମୃତ୍ୟୁମୁପଯାତି ।୪।

ବୃଶ୍ଚିକଲଗ୍ନଜାତବ୍ୟକ୍ତି ବୃହତ୍ ନାସାଯୁକ୍ତ ତାହାର ଉଦର ଓ ମୁଖ ବୃହତ୍ ହୁଏ । ସେ କ୍ରୂର, ପିତ୍ତପ୍ରକୃତିଯୁକ୍ତ, ଯମ ତଥା ଦ୍ରୁତ ଗତିଶୀଳ, ପରଦ୍ରବ୍ୟାଧିକାରୀ, ବହୁକୁଟୁମ୍ବୀ, ସ୍ୱଜନପୀଡ଼ନକାରୀ, ବହୁବ୍ୟୟଶୀଳ ଓ ବହୁ-ସନ୍ତାନ ଯୁକ୍ତ ହୁଏ । ସେ ସୁଖହୀନ, ଭ୍ରାତୃସୌଖ୍ୟଯୁକ୍ତ, ଗୋସେବାପରାୟଣ ଓ ଧର୍ମହୀନ ହୁଏ । ସେ ଭାର୍ଯ୍ୟାଜନିତନ୍ତେ ଦୁଃଖ ଭୋଗକରେ, ଶତ୍ରୁ ନାଶକରେ । ଅନ୍ନ ତଥା ଧନ ଦାନ କରିବାରେ କୃଣ୍ଠା ପ୍ରକାଶକରେ । ନିଜ କୁଟୁମ୍ବଲୋକେ ତାହାର ଶତ୍ରୁ ହୁଅନ୍ତି, ସେ ବହୁରୋଗ ଭୋଗକରେ, ତାହାର ଦେହ କାଟି-ହେବାଦ୍ୱାରା, ଶତ୍ରୁଙ୍କ ଦ୍ୱାରା, ପ୍ରହାର ତଥା ବନ୍ଧନ ଭୋଗିବା ଦ୍ୱାରା, ଜ୍ୱରାଦ ଦ୍ୱାରା, ପାପରୋଗ ତଥା ଅଗ୍ନି ହେତୁ ତାହାର ମୃତ୍ୟୁ ଘଟିଥାଏ ।

ସ୍ଥୂଲୋଷ୍ଠଦଶନନାସା ନବମେ ଲଗ୍ନେ କଫାନିଲପ୍ରକୃତିଃ
ମାଂସଲଗୁହ୍ୟୋରୁଭୁଜଃ କୁନଖୀ କର୍ମୋଦ୍ୟତଃ ଶୂରଃ ।୧।
କ୍ଷୁଦ୍ରାନ୍ନୀଚୈର୍ଭକ୍ତେ ଚୌର୍ଯ୍ୟାଦନଳାନ୍ନୃପାଚ୍ଚ ନଷ୍ଟଧନଃ
ବିଜ୍ଞାନାନାଂ ପ୍ରସବୋ ବହୁପୂଜ୍ୟୋ ଭ୍ରାତୃଘାତରୁଚିଃ ।୨।
କର୍ମବିଦେଶେଷ୍ୱିଷ୍ଟଃ କୁରୁତେ ଚିହ୍ନା ଗୃହୀତ ନୃପେଭ୍ୟଃ ।
ଧର୍ମେ ତୁ ମଧ୍ୟମମତର୍ଦାରୈଶ୍ଚ ବିରୋଧମୁପଯାତି ।୩।
ରୋଗାନ୍ୱଦନେ ଲଭତେ ଚତୁଷ୍ପଦାଚ୍ଚାମ୍ବୁନଃ ସମାପ୍ନୋତି ।
ମୃତ୍ୟୁଂ ବିଲେଶୟାଦ୍‌ବା ନୃପାଚ୍ଚ ବନ୍ଧାଜ୍ଜନାଦ୍‌ବାପି ।୪।

ଧନୁଲଗ୍ନ ଜାତବ୍ୟକ୍ତିର ଓଷ୍ଠସ୍ଥୁଳ, ଦାନ୍ତବଡ଼ ଓ ନାକଟି ମୋଟା ହୋଇ-ଥାଏ । ତାହାର ବାତକଫ ପ୍ରକୃତି ହୁଏ । ଜନନେନ୍ଦ୍ରିୟ ବୃହତ୍, ବିଶାଳ ଉରୁ ଓ ବାହୁ ହୋଇଥାଏ । ତାହାର ନଖ ଅସୁନ୍ଦର, କର୍ମରେ ଉଦ୍ୟମୀ ଓ ଶୁଭ ହୁଏ । ହୀନ ତଥା ନୀଚ ମନୋବୃତ୍ତିର ଲୋକଙ୍କ ସହିତ ସଙ୍ଗ ହୁଏ, ଚୌର, ଅଗ୍ନି ତଥା ରାଜାହେତୁକ ଧନକ୍ଷୟ ହୁଏ । ସେ ଜ୍ଞାନୀ, ବହୁଲୋକରେ ପୂଜ୍ୟ, ଭ୍ରାତୃଘାତୀ ଅର୍ଥାତ୍ ଭାଇମାନଙ୍କ ପକ୍ଷେ ଅନିଷ୍ଟକାରୀ ହୁଏ । ସେ ବିଦେଶ ଯାତ୍ରାକାରୀ, ରାଜାଠାରୁ ଧନପ୍ରାପ୍ତ, ଦାନଧର୍ମରେ ମଧ୍ୟମ-ଭାବେ ଶ୍ରଦ୍ଧା, ସ୍ତ୍ରୀ ସହ କଳହକାରୀ, ମୁଖରେ ପୀଡ଼ାଯୁକ୍ତ ହୁଏ । ତାହାର ମୃତ୍ୟୁ ଚତୁଷ୍ପଦ ଜୀବ ବା ସର୍ପାଦ ଦ୍ୱାରା କିମ୍ବା ବନ୍ଧନ ବା ବହୁତ ଲୋକ ଦ୍ୱାରା ଘଟିଥାଏ ।

ଦଶମବଲଗ୍ନେଭନୁନାସିକାମୁଖନ୍ସା ଦୀର୍ଘବକ୍ତ୍ରକରଚରଣଃ ।
ବାତ୍ମାତ୍ମକୋ ମୃଗାସ୍ୟୋ ଭୀରୁଶ୍ଚପଳୋଽଥ ବନ୍ଧନଭାକ୍ ।୧।
କ୍ଷୁଦ୍ରକୁଟୁମ୍ବୋଽଲ୍ପଧନଃ କୃପଣଃ କନ୍ୟାପ୍ରଜୋ ମୃତସ୍ୱଜନଃ ।
ସହଜସମୃଦ୍ଧଃ ଶୌର୍ଯ୍ୟନୃପାଦରଂଣ୍ୟାଇ ଲବ୍ଧଧନଃ ।୨।
ଉପବାସବ୍ରତଶୀଳୋ ନୀଚୃମିଷ୍ଟାମ୍ବାପ୍ନୁୟାଦ୍ଭାର୍ଯ୍ୟାମ୍ ।
ବହୁବଲ୍ଗହୋଽଲ୍ପକେଶୋ ଦୁର୍ବଲଜାନୁଶ୍ଚ ରୋଗାର୍ତ୍ତଃ ।୩।
ବାଲାଦନିଲାଚ୍ଛସ୍ତ୍ରାନ୍ନୃପାଦ୍ଦ୍ୱିଷାସ୍ତ୍ରପତନାଦ୍ଗଜାଦ୍ୱାପି ।
ପିତ୍ତୋଦଯ୍ୟାଦଜୀର୍ଣ୍ଣାତ୍ମ୍ରିୟତେ ଚ ମାର୍ଚବେଭ୍ରଷ୍ଟଃ ।୪।

ମକରଲଗ୍ନ ଜାତବ୍ୟକ୍ତିର ଶରୀର, ନାସା, ମୁଖ, ହସ୍ତ ତଥା ପାଦ ଦୀର୍ଘ ହୁଏ । ସେ ବାତ ପ୍ରକୃତିକ, ମୃଗମୁଖ, ଭୟାଳୁ, ଚଞ୍ଚଳ ଓ ବନ୍ଧନଯୁକ୍ତ ହୁଏ । ତାହାର କୁଟୁମ୍ବ ଅଳ୍ପ ଓ ସେ ଧନର ଅଭାବରେ ପଡ଼େ । ସେ କୃପଣ, ବହୁ-କନ୍ୟାର ପିତା, ସେ ସ୍ୱଜନ ମରଣ କ୍ଳେଶ ବିଶେଷ ଭାବରେ ଭୋଗେ । ତାହାର ବହୁଭ୍ରାତା ହୁଅନ୍ତି, ଶୌର୍ଯ୍ୟ ହେତୁ, ରାଜାଠାରୁ ତଥା ଦ୍ରବ୍ୟାଦରୁ ସେ ଧନ ପାଇଥାଏ । ସେ ଉପବାସ ବ୍ରତ ପରାୟଣ, ନିଜର ଇଚ୍ଛା ବିରୋଧୀ ଭାର୍ଯ୍ୟାପ୍ରାପ୍ତ, ବହୁକଳହକାରୀ, ଅଳ୍ପକେଶଯୁକ୍ତ, ଦୁର୍ବଳ ଜାନୁଯୁକ୍ତ ଓ ରୋଗାର୍ତ୍ତ ହୁଏ । ଅଳ୍ପ ଦୟସ (ବାଲକାଦ) ବ୍ୟକ୍ତି ହେତୁ, ବାୟୁରୋଗରୁ, ଶସ୍ତ୍ରରୁ, ରାଜଦ୍ୱେଷରୁ, ପତନରୁ, ହସ୍ତୀଦ୍ୱାରା, ପିତ୍ତ ରୋଗରୁ, ଅଜୀର୍ଣ୍ଣ ହେତୁ କିମ୍ବା ବାଟ ଭୁଲିଯିବା ଫଳରେ ମୃତ୍ୟୁ ଘଟିଥାଏ ।

ଏକାଦଶେ ବିଲଗ୍ନେ ସ୍ତବ୍ଧଃ କ୍ରୂରଃ କୁଲାଗ୍ରଜଃ ପୁରୁଷଃ
ପିତ୍ତାନିଲରୁଗ୍ୟୁକ୍ତସ୍ତିଲପୁଷ୍ପସମାନ ନାସଶ୍ଚ ।୧।
ପ୍ରାପ୍ତାନାଶଯ୍ୟତେଽର୍ଥାନ୍ ବହୁଭୃତ୍ୟଃ ସାଧ୍ୟତେ ବ୍ୟୟୈଶ୍ଚାପି
କ୍ଷୀଣଃ ସ୍ୱଗୋତ୍ରଗୁରୁଜନପରପକ୍ଷ ସୁହୃତ୍ସ୍ୱଜନ ଶତ୍ରୁଃ ।୨।
କର୍ମଣିପାପେ ସକ୍ତସ୍ତନୂଶ୍ଚ କାନ୍ତାନବାପ୍ନୁୟାଲ୍ଲାଭାନ୍
ଧର୍ମଧ୍ୱଜପ୍ରବୃତ୍ତୌ ଦୈବତପୂଜଶ୍ଚ କାରଯୁତ ଭାର୍ଯ୍ୟାମ୍ ।୩।
ବିଗ୍ରହଶୀଲାଂ ଲଭତେ ବିବିଧାନ୍ ରୋଗାନ୍କଫୋତ୍ଥାନୁରପି
ମ୍ରିୟତେ ଚ ଜଠରରୋଗାଦ୍ଭ୍ରମନାତ୍ସ୍ତ୍ରୀଣାଂ ପ୍ରୟୋଗାଦ୍ୱା ।୪।

କୁମ୍ଭଲଗ୍ନ ଜାତବ୍ୟକ୍ତି ଆଳସ୍ୟ ପରାୟଣ, କ୍ରୂର, କୁଳମୁଖ୍ୟ, ବାତପିତ୍ତ-ଦେହୀ, ତିଳପୁଷ୍ପ ତୁଲ୍ୟ ନାସାଯୁକ୍ତ ଓ ଉପାର୍ଜନ କରି ସମସ୍ତ ବ୍ୟୟକରେ ।

ତାହାର ବହୁଭୃତ୍ୟ ରହନ୍ତି ଓ ବହୁବ୍ୟୟ ଫଳରେ ସେ ଆର୍ଥିକ ଦୁଃସ୍ଥିତି ଭୋଗ କରେ । ସେ ସ୍ୱଗୋତ୍ର, ମାତୃବର୍ଗ, ଆତ୍ମୀୟ ତଥା ମିତ୍ରାଦିଙ୍କର ଶତ୍ରୁ ହୁଏ । ସେ ପାପକର୍ମରେ ଆସକ୍ତ, ମନୋମତ ସ୍ତ୍ରୀ ଲାଭ କରିପାରେ ନାହିଁ । ସେ ଦାନ ଧର୍ମରେ ଦେଖାଇ ହୁଏ । ଦେବପୂଜା କରେ, ସ୍ତ୍ରୀର ବିରୋଧୀ ହୁଏ । ତାହାର ମରଣ ବହୁବିଧ ରୋଗ, ବିଶେଷତଃ କଫଜନିତ ରୋଗ, ବକ୍ଷସ୍ଥଳ (ଫୁସ୍‌ଫୁସ୍ ଇତ୍ୟାଦି) ଜାତରୋଗ, ଉଦର ରୋଗ, ବମନ ରୋଗ କିମ୍ବା ସ୍ତ୍ରୀ ହେତୁକ ଘଟିଥାଏ ।

ଦ୍ୱାଦଶଗେ ପ୍ରାଗ୍‌ଲଗ୍ନେ ସ୍ଥୂଲୋଷ୍ଠୋ ମୀନଦୃଙ୍ ମହାନାସଃ ।
କଫବାତକୋ ମହାତ୍ମା ଭ୍ରୂଗ୍‌ରୋଷୀ ନୈକମତଚେଷ୍ଟଃ ।୧।
ଶିକ୍ଷାଦ୍ୟବ୍ୟୟଭୃତ୍ୟୈଃ ସ୍ୱଜନ ସ୍ତ୍ରୀପୂଜିତଃ ସହଜନାଥଃ ।
କର୍ମଣି ଧର୍ମେଯୁକ୍ତଃ ପିତୋପଚୟଃ ସୁଦାରଶ୍ଚ ।୨।
ମାତୃଗୃହଂ ଭାର୍ଯ୍ୟାଂ ଲଭତେ ଚ ରିପୂନ୍‌ସୁଦାରୁଣାନ୍‌କ୍ରୂରାନ୍ ।
ରୋଗାସ୍ରଶୋଣିତାଦାପ୍ନୁୟାଦ୍‌ଭୟଂ ବ୍ୟାଳସିଂହେଭ୍ୟ ।୩।
ମୃତ୍ୟୁଂ ପୂରୁଦଷୈର୍ଗଣରୁନ୍ଧପୂଜକଟୈର୍ଗୁହ୍ୟଜୈର୍ବିକାରୈର୍ବା ।
ବିଦେଷୌଷଧପ୍ରୟୋଗାଦୁପବାସାନ୍ମାର୍ଗଦୋଷାଦ୍‌ବା ।୪।

ମୀନଲଗ୍ନ ଜାତବ୍ୟକ୍ତି ସ୍ଥୂଳୋଷ୍ଠ, ମୀନଭଳି ନିର୍ମଳ ଚକ୍ଷୁ, ଉନ୍ନତ-ନାସିକା ଯୁକ୍ତ ହୁଏ । ସେ କଫବାତ ଦେହୀ, ମାହାତ୍ମ୍ୟ ଯୁକ୍ତ, ଚମ୍ପ ରୋଗଯୁକ୍ତ, ଚଞ୍ଚଳ ଚିତ୍ତ ଓ କୌଣସି ଚେଷ୍ଟାରେ ସମ୍ପୂର୍ଣ୍ଣ ଶକ୍ତି ନିୟୋଗ କରେ ନାହିଁ । ସେ ଧନ ଉପାର୍ଜନ କରି ବ୍ୟୟ କରେ, ବହୁଭୃତ୍ୟଯୁକ୍ତ ହୁଏ । ସେ ସ୍ୱଜନ ତଥା ସ୍ତ୍ରୀମାନଙ୍କ ଦ୍ୱାରା ପୂଜାଯୁକ୍ତ, ଭ୍ରାତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଧର୍ମକାର୍ଯ୍ୟରେ ନିଯୁକ୍ତ, ପିତୃଧନଯୁକ୍ତ, ସୁନ୍ଦରୀ ସ୍ତ୍ରୀ ଲାଭକରେ । ତାହାର ସ୍ତ୍ରୀର ଆଗ୍ରହ ବ୍ୟବହାର ନିମ୍ନଧରଣର ହୁଏ, ସେ ବହୁ ବଳିଷ୍ଠ ତଥା କ୍ରୂର ଶତ୍ରୁଯୁକ୍ତ ହୁଏ । ତାହାର ଦୂଷିତ ରକ୍ତ ରୋଗ, ସର୍ପହେତୁକ, ସିଂହାଦି ହେତୁ, ବଣିଷ୍ଟ ଲୋକ ଦ୍ୱାରା, ଗୁହ୍ୟ ରୋଗ ଦ୍ୱାରା, ଔଷଧ (ବିଷାକ୍ତ) ସେବନ ଫଳରେ, ଉପବାସ ହେତୁ କିମ୍ବା ମାର୍ଗ ଭ୍ରମଣ ବା ଅମାର୍ଗରେ ଯିବା ଫଳରେ ମରଣ ଘଟିଥାଏ ।

ଦ୍ରଷ୍ଟବ୍ୟ:—ଭାବ ତଥା ଭାବାଧିପତିର ବଳକୁ ନେଇ ଭାବର ପୁଷ୍ଟି ତଥା ହାନି କଥା କହିବେ ଏକଥା ଅଗରୁ ଲେଖା ଯାଇଅଛି । ଏ ସମ୍ବନ୍ଧେ ମହାମତି ଯବନେଶ୍ୱର କହିଛନ୍ତି:—

ଷଡ଼ବେଶଭାବଗରାଶିଭସ୍ୱଭାବପ୍ରଧାନମଧ୍ୟାଧମଦର୍ଶନାଦ୍ୟୈଃ
ତଦ୍ଭାବଜଂଫଲଂ ବିପତ୍ୟୁଚ୍ଚାଦ୍ୟୈର୍ନୈର୍ଷ୍ଟ୍ରାଦ୍ୱିକଂପାକମୁପୈତିପୁଂସାମ୍ ॥

କିନ୍ତୁ ଷଷ୍ଠ, ଅଷ୍ଟମ ତଥା ବ୍ୟୟଭାବ ବିଚାରରେ ଏହାର ବିପରୀତ ବିଚାର କରିବେ । ଷଷ୍ଠାଧିପତି ତଥା ଷଷ୍ଠଭାବ ଦୁର୍ବଳ ହେଲେ ଷଷ୍ଠଭାବ ଜନିତ ଦୁଷ୍ଟ ଫଳମାନ ବିନାଶ ହେବ । ତାର ଫଳରେ ଭଲହେବ କିନ୍ତୁ ଷଷ୍ଠାଧିପ ତଥା ଷଷ୍ଠସ୍ଥାନ ବଳଯୁକ୍ତ ହେଲେ ସେହି ଭାବୋକ୍ତ ମନ୍ଦ ଫଳ ବୃଦ୍ଧି ହେବ । ଏହିପରି ଅଷ୍ଟମ ତଥା ବ୍ୟୟଭାବ ବିଷୟ ବିଚାର କରିବେ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକଗ୍ରନ୍ଥର ରାଶିଶୀଳ ନାମକ
ଅଷ୍ଟାଦଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତହେଲା ।

---

# ଦୃଷ୍ଟିଫଳାଧ୍ୟାୟ ଏକୋନବିଂଶଃ

## ମେଷ, ବୃଷ, ମିଥୁନ ଓ କର୍କଟ ରାଶିରେ ଥିବା ଚନ୍ଦ୍ରପ୍ରତି ଗ୍ରହମାନଙ୍କର ଦୃଷ୍ଟିଫଳ

ଚନ୍ଦ୍ରେ ଭୂପବୁଧୌ ନୃପୋପମଗୁଣୀ ସ୍ତେନୋଽଧନଶ୍ଚାଜଗେ
ନିଃସ୍ୱଃ ସ୍ତେନନୃମାନ୍ୟଭୂପଧନିନଃ ପ୍ରେଷ୍ୟଃ କୁଜାଦ୍ୟୈର୍ଗବି ।
ନୃସ୍ଥେଽୟୋବ୍ୟବହାରପାର୍ଥିବବୁଧାଭୀସ୍ତନ୍ତୁବାୟୋଽଧନୋ
ସ୍ୱର୍କ୍ଷେ ଯୋଦ୍ଧୃକବିଜ୍ଞଭୂମିପତୟୋଽୟୋଜୀବଦୃଗ୍ରୋଗିଣୌ ।୧।

ମେଷ ରାଶିସ୍ଥ ଚନ୍ଦ୍ରକୁ ମଙ୍ଗଳ ଦେଖିଲେ ଜାତକ ରାଜା, ବୁଧ ଦେଖିଲେ ପଣ୍ଡିତ, ଗୁରୁ ଦେଖିଲେ ନୃପତୁଲ୍ୟ, ଶୁକ୍ର ଦେଖିଲେ ଗୁଣବାନ୍, ଶନି ଦେଖିଲେ ଚୋର, ରବି ଦେଖିଲେ ଦରିଦ୍ର ହୁଏ । ବୃଷ ରାଶିସ୍ଥ ଚନ୍ଦ୍ରକୁ ମଙ୍ଗଳ ଦେଖିଲେ ଜାତକ ଦରିଦ୍ର, ବୁଧ ଦେଖିଲେ ଚୋର, ଗୁରୁ ଦେଖିଲେ ଲୋକପୂଜ୍ୟ, ଶୁକ୍ର ଦେଖିଲେ ରାଜା, ଶନି ଦେଖିଲେ ଧନୀ ଓ ରବି ଦେଖିଲେ ସେବକ ହୁଏ । ମିଥୁନ ରାଶିସ୍ଥ ଚନ୍ଦ୍ରକୁ ମଙ୍ଗଳ ଦେଖିଲେ ଜାତକ ଶସ୍ତ୍ର ବିକ୍ରୟକାରୀ ବୁଧ ଦେଖିଲେ ରାଜା, ଗୁରୁ ଦେଖିଲେ ପଣ୍ଡିତ, ଶୁକ୍ର ଦେଖିଲେ ନିର୍ଭୟ ଶନି ଦେଖିଲେ ତନ୍ତୁବାୟ (ଲୁଗାବୁଣା କାର୍ଯ୍ୟ) ଓ ରବି ଦେଖିଲେ ନିର୍ଦ୍ଧନ ହୁଏ ।

କର୍କଟସ୍ଥ ଚନ୍ଦ୍ରକୁ ମଙ୍ଗଳ ଦେଖିଲେ ଜାତକ ଯୋଦ୍ଧା, ବୁଧ ଦେଖିଲେ କାବ୍ୟକର୍ତ୍ତା, ଗୁରୁ ଦେଖିଲେ ପଣ୍ଡିତ, ଶୁକ୍ର ଦେଖିଲେ ଭୂପତି, ଶନି

ଦେଖିଲେ ଅୟୁଧ ବିକ୍ରୟକାରୀ [ଲୌହ ସମ୍ବନ୍ଧ ଦ୍ରବ୍ୟ ବ୍ୟବସାୟୀ] ଓ ରବି ଦେଖିଲେ ନେତ୍ରରୋଗ ଯୁକ୍ତ ହୁଏ ।୧।

## ସିଂହ, କନ୍ୟା, ତୁଳା ଓ ବୃଛ୍ଚା ରାଶିରେ ଥିବା ଚନ୍ଦ୍ର ପ୍ରତି ଗ୍ରହମାନଙ୍କର ଦୃଷ୍ଟିଫଳ

ଜ୍ୟୋତିର୍ଜ୍ଞାଢ୍ୟନରେନ୍ଦ୍ରନାପିତନୃପକ୍ଷ୍ମେଶା ବୁଧାଦ୍ୟୈର୍ହରୌ
ତଦ୍‌ବଦ୍ ଭୂପଚମୂପନୈପୁଣଯୁତାଃ ଷଷ୍ଠେଽଶୁଭୈଃ ସ୍ତ୍ରୀଶ୍ରୟଃ ।
ଜୂକେ ଭୂପସୁବର୍ଣ୍ଣକାରବଣିଜଃ ଶେଷେକ୍ଷିତେ ନୈକୃତୀ
କୀଟେ ଯୁଗ୍ମପିତା ନତଶ୍ଚ ରଜକୋ ବ୍ୟଙ୍ଗୋଽଧନୋ ଭୂପତିଃ ।୨।

ସିଂହ ରାଶିସ୍ଥ ଚନ୍ଦ୍ରକୁ ବୁଧ ଦେଖିଲେ ଜାତକ ଜ୍ୟୋତିଷଜ୍ଞ, ଗୁରୁ ଦେଖିଲେ ଧନବାନ୍, ଶୁକ୍ର ଦେଖିଲେ ରାଜା, ଶନି ଦେଖିଲେ ନାପିତ କର୍ମକାରୀ, ରବି ଦେଖିଲେ ରାଜା ଓ ମଙ୍ଗଳ ଦେଖିଲେ ଭୂମିପତି ହୁଏ ।

କନ୍ୟା ରାଶିସ୍ଥ ଚନ୍ଦ୍ରକୁ ବୁଧ ଦେଖିଲେ ଜାତକ ରାଜା, ଗୁରୁ ଦେଖିଲେ ସେନାପତି, ଶୁକ୍ର ଦେଖିଲେ ସର୍ବ କର୍ମରେ ନିପୁଣ, ଶନି ମଙ୍ଗଳ ବା ରବି ଦେଖିଲେ ଜାତକ ସ୍ତ୍ରୀର ଆଶ୍ରୟରେ ରହେ ।

ତୁଳା ରାଶିସ୍ଥ ଚନ୍ଦ୍ରକୁ ବୁଧ ଦେଖିଲେ ରାଜା, ଗୁରୁ ଦେଖିଲେ ସୁବର୍ଣ୍ଣାଦି ଦ୍ରବ୍ୟ ନିର୍ମାଣକାରୀ ବା ବ୍ୟବସାୟୀ, ଶୁକ୍ର ଦେଖିଲେ ବାଣିଜ୍ୟକାରୀ ଓ ଶନି, ମଙ୍ଗଳ ବା ରବି ଦେଖିଲେ ଜୀବନାଶକାରୀ ହୁଏ ।

ବୃଶ୍ଚିକ ରାଶିସ୍ଥ ଚନ୍ଦ୍ରକୁ ବୁଧ ଦେଖିଲେ ଜାତକ ଦୁଇ ପିତା ଲାଭ କରେ ଅର୍ଥାତ୍ ସେ ଦତ୍ତପୁତ୍ର ହୁଏ । ଗୁରୁ ଦେଖିଲେ ନମ୍ର ସ୍ୱଭାବ, ଶୁକ୍ର ଦେଖିଲେ ରଜକର ବ୍ୟବସାୟକାରୀ, ଶନି ଦେଖିଲେ ଅଙ୍ଗହୀନ, ରବି ଦେଖିଲେ ନିର୍ଦ୍ଧନ ଓ ମଙ୍ଗଳ ଦେଖିଲେ ରାଜା ହୁଏ ।୨।

## ଧନୁ, ମକର, କୁମ୍ଭ, ମୀନରେ ଥିବା ଚନ୍ଦ୍ର ପ୍ରତି ଗ୍ରହ ଦୃଷ୍ଟି ଫଳ

ଜ୍ଞାତ୍ୟୁର୍ବୀଶଜନାଶ୍ରୟଶ୍ଚ ତୁରଗେ ପାପୈଃ ସଦମ୍ଭଃ ଶଠ
ଶ୍ଚାତ୍ୟୁର୍ବୀଶନରେନ୍ଦ୍ର ପଣ୍ଡିତଧନୀ ଦ୍ରବ୍ୟୋନଭୂପୋ ମୃଗେ ।
ଭୂପୋ ଭୂପସମୋଽନ୍ୟଦାରନିରତଃ ଶେଷୈଶ୍ଚ କୁମ୍ଭସ୍ଥିତେ
ହାସ୍ୟଜ୍ଞୋ ନୃପତିର୍ବୁଧଶ୍ଚ ଝଷଗେ ପାପାଶ୍ଚ ପାପେକ୍ଷିତେ ।୩।

ଧନୁ ରାଶିସ୍ଥ ଚନ୍ଦ୍ରକୁ ବୁଧ ଦେଖିଲେ ଜାତକ ସ୍ୱଜନ ପୋଷଣକାରୀ, ଗୁରୁ ଦେଖିଲେ ରାଜା, ଶୁକ୍ର ଦେଖିଲେ ବହୁଲୋକଙ୍କର ଆଶ୍ରୟ ଦାତା, ଶନି,

ରବି, ଓ ମଙ୍ଗଳ ଦେଖିଲେ ଦାମ୍ଭିକ ଓ ଶଠତା ଆଚରଣ କରେ, ମକର ରାଶିସ୍ଥ ଚନ୍ଦ୍ରଙ୍କୁ ବୁଧ ଦେଖିଲେ ଜାତକ ବଶିଷ୍ଟ ରାଜା, ଗୁରୁ ଦେଖିଲେ ରାଜା, ଶୁକ୍ର ଦେଖିଲେ ପଣ୍ଡିତ, ଶନି ଦେଖିଲେ ଧନୀ, ରବି ଦେଖିଲେ ନିର୍ଦ୍ଧନ ଓ ମଙ୍ଗଳ ଦେଖିଲେ ଭୂପତି ହୁଏ ।

କୁମ୍ଭ ରାଶିସ୍ଥ ଚନ୍ଦ୍ରଙ୍କୁ ବୁଧ ଦେଖିଲେ ଜାତକ ରାଜା, ଗୁରୁ ଦେଖିଲେ ରାଜତୁଲ୍ୟ, ଶୁକ୍ର ଦେଖିଲେ ପରସ୍ତ୍ରୀଠାରେ ଆସକ୍ତ, ଶନି, ମଙ୍ଗଳ ତଥା ରବି ଦେଖୁଥିଲେ ମଧ୍ୟ ପରସ୍ତ୍ରୀ ନିରତ ହୁଏ ।

ମୀନ ରାଶିସ୍ଥ ଚନ୍ଦ୍ରଙ୍କୁ ବୁଧ ଦେଖିଲେ ଜାତକ ହାସ୍ୟଜ୍ଞ, ଗୁରୁ ଦେଖିଲେ ରାଜା, ଶୁକ୍ର ଦେଖିଲେ ପଣ୍ଡିତ, ଶନି, ରବି ଓ ମଙ୍ଗଳ ଦେଖିଲେ ପାପକର୍ମକାରୀ ହୁଏ ।୩।

## ହୋରା, ଦ୍ରେକ୍କାଣ ତଥା ଦ୍ୱାଦଶାଂଶରେ ଥିବା ଚନ୍ଦ୍ରପ୍ରତି ଗ୍ରହ ଦୃଷ୍ଟିଫଳ

ହୋରେଶର୍କ୍ଷଦଳାଶ୍ରିତୈଃ ଶୁଭକରୋ ଦୃଷ୍ଟଃ ଶଶୀ ତଦ୍‌ଗତ–
ସ୍ତ୍ର୍ୟଂଶେ ତତ୍ପତିଭିଃ ସୁହୃଦ୍‌ଭବନଗୈର୍ବା ବୀକ୍ଷିତଃ ଶସ୍ୟତେ ।
ଯତ୍ପ୍ରୋକ୍ତଂ ପ୍ରତିରାଶି ବୀକ୍ଷଣଫଳଂ ତଦ୍ଦ୍ୱାଦଶାଂଶେ ସ୍ମୃତଂ
ସୂର୍ଯ୍ୟାଦ୍ୟୈରବଲୋକିତେପି ଶଶିନି ଜ୍ଞେୟଂ ନବାଂଶେଷ୍ୱତଃ ।୪।

ଚନ୍ଦ୍ର ନିଜର ହୋରାରେ ଥିଲେ, ତାହାର ହୋରାରେ ଥିବା ଅନ୍ୟ ଗ୍ରହମାନେ ଚନ୍ଦ୍ରଙ୍କୁ ଦେଖିବା ଶୁଭକର ଅଟେ, କିନ୍ତୁ ରବି ହୋରାରେ ଥିବା ଗ୍ରହମାନେ ଚନ୍ଦ୍ରଙ୍କୁ ଦେଖିବା ଶୁଭକର ନୁହେ । ସେପରି ଚନ୍ଦ୍ର ରବି ହୋରାରେ ଥିଲେ ରବି ହୋରାରେ ଥିବା ଅନ୍ୟ ଗ୍ରହମାନେ ଚନ୍ଦ୍ରଙ୍କୁ ଦେଖିବା ଶୁଭପ୍ରଦ ହୁଏ କିନ୍ତୁ ଚନ୍ଦ୍ରର ହୋରାରେ ଥିବା ଗ୍ରହମାନେ ଚନ୍ଦ୍ରଙ୍କୁ ଦେଖିବା ଶୁଭକାରକ ନୁହେ ।

ଚନ୍ଦ୍ର ଯେଉଁଗ୍ରହର ଦ୍ରେକ୍କାଣରେ ଅଛି, ସେହି ଗ୍ରହର ଦୃଷ୍ଟିରେ ରହିବା ଶୁଭକର ଅଟେ । ମିତ୍ର ଗୃହରେ ଥିବା ଗ୍ରହମାନେ ଚନ୍ଦ୍ରଙ୍କୁ ଦେଖିବା ଶୁଭକାରକ

ମେଷାଦି ରାଶିମାନଙ୍କରେ ଥିବା ଚନ୍ଦ୍ରପ୍ରତି ଯେଉଁଭଳି ଗ୍ରହ ଦୃଷ୍ଟିର ଫଳ ପୂର୍ବରୁ ଉକ୍ତ ହୋଇଅଛି ଚନ୍ଦ୍ର ସେହି ସେହି ରାଶିର ଦ୍ୱାଦଶାଂଶରେ ଥିଲେ ମଧ୍ୟ ଗ୍ରହ ଦୃଷ୍ଟି ଫଳ ସେହି ସେହି ରାଶିର ତୁଲ୍ୟ ବୋଲି ବୁଝିବେ ।

ଚନ୍ଦ୍ର ସ୍ଥିତ ନବାଂଶ ଫଳ ରବିଆଦି ଗ୍ରହମାନଙ୍କର ଦୃଷ୍ଟିରେ କିପରି ଘଟେ, ତାହା ଏଠାରେ ବର୍ଣ୍ଣିତ ହେବ ।୪।

## ବିଭିନ୍ନ ନବାଂଶରେ ଥିବା ଚନ୍ଦ୍ର ପ୍ରତି ଗ୍ରହଦୃଷ୍ଟି ଫଳ

ଆରକ୍ଷିକୋ ବଧରୁଚିଃ କୁଶଲୋ ନିଯୁଦ୍ଧେ
ଭୂପୋଽର୍ଥବାନ୍ କଲହକୃତ୍ କ୍ଷିତିଜାଂଶସଂସ୍ଥେ ।
ମୂର୍ଖୋଽନ୍ୟଦାରନିରତଃ ସୁକବିଃ ସିତାଂଶେ
ସତ୍କାବ୍ୟକୃତ୍ ସୁଖପରୋଽନ୍ୟକଲତ୍ରଗଶ୍ଚ ।୫।

ଚନ୍ଦ୍ର ମେଷ ବା ବୃଶ୍ଚିକ ନବାଂଶରେ ଥାଇ ରବିର ଦୃଷ୍ଟିରେ ଥିଲେ ଜାତକ ନଗର ରକ୍ଷାକାରୀ; ମଙ୍ଗଳ ଦୃଷ୍ଟିରେ ଥିଲେ ଜୀବଘାତୀ; ବୁଧ ଦୃଷ୍ଟିରେ ଥିଲେ ମଲ୍ଲ ଯୁଦ୍ଧରେ ନିପୁଣ; ଗୁରୁଦୃଷ୍ଟିରେ ଥିଲେ ରଜା; ଶୁକ୍ର ଦୃଷ୍ଟିରେ ଥିଲେ ଧନବାନ୍; ଶନି ଦୃଷ୍ଟିରେ ଥିଲେ କଳହପ୍ରିୟ ହୁଏ ।

ଚନ୍ଦ୍ର ବୃଷ ବା ତୁଳା ନବାଂଶରେ ଥାଇ ରବିର ଦୃଷ୍ଟିରେ ଥିଲେ ଜାତକ ମୂର୍ଖତା ଯୁକ୍ତ, ମଙ୍ଗଳ ଦେଖିଲେ ପରସ୍ତ୍ରୀ ନିରତ, ବୁଧ ଦେଖିଲେ ଉତ୍ତମକବି, ଗୁରୁ ଦେଖିଲେ କାବ୍ୟକର୍ତ୍ତା, ଶୁକ୍ର ଦେଖିଲେ ସୁଖୀ ଓ ଶନି ଦେଖିଲେ ପରଦାରଗାମୀ ହୁଏ ।୫।

ବୌଧେ ହି ରଙ୍ଗଚରଚୌରକବୀନ୍ଦ୍ରମନ୍ତ୍ରୀ
ଗେୟଜ୍ଞଶିଲ୍ପନିପୁଣଃ ଶଶିନି ସ୍ଥିତେଂଶେ ।
ସ୍ୱାଂଶେଽଲ୍ପଗାତ୍ରଧନଲୁବ୍ଧତପସ୍ୱିମୁଖ୍ୟଃ
ସ୍ତ୍ରୀପୋଷ୍ୟକୃତ୍ୟନିରତଶ୍ଚ ନିରୀକ୍ଷମାଣେ ।୬।

ଚନ୍ଦ୍ର ମିଥୁନ ବା କନ୍ୟା ନବାଂଶରେ ଥାଇ ରବିର ଦୃଷ୍ଟିରେ ଥିଲେ ଜାତକ ମଲ୍ଲକ୍ରୀଡ଼ା ନିପୁଣ; ମଙ୍ଗଳ ଦୃଷ୍ଟିରେ ଥିଲେ ଚୌର କର୍ମନିପୁଣ; ବୁଧ ଦୃଷ୍ଟିରେ ଥିଲେ କବିଶ୍ରେଷ୍ଠ; ଗୁରୁଦୃଷ୍ଟିରେ ଥିଲେ ମନ୍ତ୍ରୀ; ଶୁକ୍ର ଦୃଷ୍ଟିରେ ଥିଲେ ସଙ୍ଗୀତ ବିଶାରଦ; ଶନି ଦେଖିଲେ ଚିତ୍ର ବିଦ୍ୟା ବା ଶିଳ୍ପାଦିରେ ନିପୁଣ ହୁଏ ।

କର୍କଟ ନବାଂଶରେ ଥିବା ଚନ୍ଦ୍ର ପ୍ରତି ରବିର ଦୃଷ୍ଟି ଥିଲେ ଜାତକ କୃଶ ଶରୀର; ମଙ୍ଗଳ ଦୃଷ୍ଟିରେ ଥିଲେ କୃପଣ; ବୁଧ ଦୃଷ୍ଟିରେ ଥିଲେ ତପସ୍ୱୀ; ଗୁରୁ ଦୃଷ୍ଟିରେ ଥିଲେ ପ୍ରଧାନ ବ୍ୟକ୍ତି, ଶୁକ୍ର ଦୃଷ୍ଟିରେ ଥିଲେ ସ୍ତ୍ରୀ ଦ୍ୱାରା ପାଳିତ; ଶନି ଦୃଷ୍ଟିରେ ଥିଲେ କର୍ମନିରତ ହୁଏ ।

ସକ୍ରୋଧୋ ନରପତିସମ୍ମତୋ ନିଧୀଶଃ ସିଂହାଂଶେ ପ୍ରଭୁରସୁତୋତିହିଂସ୍ରକର୍ମା
ଜୀବାଂଶେ ପ୍ରଥିତବଲୋ ରଣୋପଦେଷ୍ଟା ହାସ୍ୟଜ୍ଞଃ ସଚିବବିକାମବୃଦ୍ଧଶୀଳଃ ।୭।

ସିଂହ ନବାଂଶରେ ଥିବା ଚନ୍ଦ୍ରପ୍ରତି ରବିର ଦୃଷ୍ଟିଥିଲେ ଜାତକ କ୍ରୋଧଯୁକ୍ତ; ମଙ୍ଗଳର ଦୃଷ୍ଟି ଥିଲେ ରାଜପ୍ରିୟ; ବୁଧର ଦୃଷ୍ଟିଥିଲେ ପୋତାହୋଇଥିବା ଧନ ପ୍ରାପ୍ତ; ଗୁରୁର ଦୃଷ୍ଟିଥିଲେ ଆଦେଶ ଅମାନ୍ୟ କରିବାକୁ କାହାର ଶକ୍ତି ନଥାଏ; ଶୁକ୍ରର ଦୃଷ୍ଟିଥିଲେ ପୁତ୍ରହୀନ; ଶନିର ଦୃଷ୍ଟିରେ ଥିଲେ ଅତିଶୟ କ୍ରୂରକର୍ମା ହୁଏ।

ଧନୁ ବା ମୀନ ନବାଂଶରେ ଥିବା ଚନ୍ଦ୍ରପ୍ରତି ରବିର ଦୃଷ୍ଟିଥିଲେ ଜାତକ ବଳରେ ଖ୍ୟାତି ପାଏ; ମଙ୍ଗଳର ଦୃଷ୍ଟିଥିଲେ ସେନାବ୍ୟୂହରଚନା ପ୍ରବୀଣ; ବୁଧର ଦୃଷ୍ଟିରେ ଥିଲେ ହାସ୍ୟଜ୍ଞ; ଗୁରୁର ଦୃଷ୍ଟିଥିଲେ ମନ୍ତ୍ରୀ; ଶୁକ୍ରର ଦୃଷ୍ଟିଥିଲେ ପୁରୁଷତ୍ୱହୀନ; ଶନିର ଦୃଷ୍ଟିଥିଲେ ଜାତକ ଧର୍ମଶୀଳ ହୁଏ ।୭।

ଅଲ୍ପାପତ୍ୟୋ ଦୁଃଖିତଃ ସତ୍ୟପି ସ୍ୱେ ମାନାସକ୍ତଃ କର୍ମଣିସ୍ୱେନୁରକ୍ତଃ
ଦୁଷ୍ଟସ୍ତ୍ରୀଷ୍ଟଃ କୃପଣଶ୍ଚାର୍କିଭାଗେ ଚନ୍ଦ୍ରେ ଭାନୌ ତଦ୍ୱଦାଦ୍ୟାଦଦୃଷ୍ଟେ ।୮।

ମକର ବା କୁମ୍ଭ ନବାଂଶରେ ଥିବା ଚନ୍ଦ୍ରକୁ ରବି ଦେଖିଲେ ଜାତକ ଅଲ୍ପ ସନ୍ତାନ ଯୁକ୍ତ; ମଙ୍ଗଳ ଦେଖିଲେ ଧନ ଯୁକ୍ତ ସତ୍ତ୍ୱେ ଦୁଃଖପ୍ରାପ୍ତ; ବୁଧ ଦେଖିଲେ ଗର୍ବିତ; ଗୁରୁ ଦେଖିଲେ କୁଳାନୁରୂପ କର୍ମକର୍ତ୍ତା; ଶୁକ୍ର ଦେଖିଲେ ମନ୍ଦ ଚରିତ୍ରା ସ୍ତ୍ରୀଠାରେ ଆସକ୍ତ; ଶନି ଦେଖିଲେ କୃପଣ ହୁଏ ।

ଏହିଭଳି ଲଗ୍ନ ଯେ ନବାଂଶରେ ଅଛି ଚନ୍ଦ୍ରପରି ମଧ୍ୟ ତାହାର ଦୃଷ୍ଟି ଫଳ କହିବେ, କିନ୍ତୁ କର୍କଟ ନବାଂଶରେ ଲଗ୍ନଥିଲେ ଚନ୍ଦ୍ରର ଦୃଷ୍ଟି ଶୁଭପ୍ରଦ ହୁଏ । ଅନ୍ୟରାଶି ନବାଂଶରେ ଥିବା ଲଗ୍ନକୁ ଚନ୍ଦ୍ର ଦେଖିବା ଶୁଭକର ନୁହେଁ, ରବି ମଧ୍ୟ ଯେ ନବାଂଶରେ ଥାଏ ତାହାର ପ୍ରତି ଗ୍ରହମାନଙ୍କର ଦୃଷ୍ଟି ଚନ୍ଦ୍ରପ୍ରତି ଯେ ଫଳ ସେହି ଫଳ ଦେଇଥାଏ । ରବିର ଯେ ଦୃଷ୍ଟିଫଳ ଯେ ନବାଂଶରେ ଲେଖାଯାଇଅଛି ସେ ସମସ୍ତ ମଧ୍ୟ ରବିପ୍ରତି ଚନ୍ଦ୍ରର ଦୃଷ୍ଟିଫଳ ବୋଲି ବୁଝିବାକୁ ହେବ ।

ମେଷ ନବାଂଶ ବା ବୃଶ୍ଚିକ ନବାଂଶସ୍ଥ ଚନ୍ଦ୍ରକୁ ରବି ଦେଖିଲେ ଜାତକ ନଗର ରକ୍ଷାକାରୀ ହୁଏ। ସେହିଭଳି ମେଷ ନବାଂଶସ୍ଥ ରବିକୁ ଚନ୍ଦ୍ର ଦେଖିଲେ ମଧ୍ୟ ଜାତକ ନଗର ରକ୍ଷାକାରୀ ହେବ। ଏହିପରି ଅନ୍ୟ ରାଶିର ନବାଂଶରେ ରବି ଥାଇ ଚନ୍ଦ୍ର ଦୃଷ୍ଟିରେ ଥିଲେ ସେହି ସେହି ନବାଂଶର ପୂର୍ବ କଥିତ ଫଳ ଘଟିବ ଅର୍ଥାତ୍ ବୃଷ ବା ତୁଳା ନବାଂଶରେ ଥିବା ରବିକୁ ଚନ୍ଦ୍ର ଦେଖିଲେ ଜାତକ

ମୂର୍ଖତା ଯୁକ୍ତ; ମିଥୁନ ବା କନ୍ୟା ନବାଂଶସ୍ଥ ରବି ଚନ୍ଦ୍ର ଦୃଷ୍ଟହେଲେ ମଲ୍ଲକ୍ରୀଡ଼ା ନିପୁଣ; ସିଂହ ନବାଂଶସ୍ଥ ରବି ଚନ୍ଦ୍ର ଦୃଷ୍ଟ ହେଲେ କ୍ରୋଧଯୁକ୍ତ; ଧନୁ ବା ମୀନ ନବାଂଶସ୍ଥ ରବି ଚନ୍ଦ୍ର ଦୃଷ୍ଟହେଲେ ବଳରେ ଖ୍ୟାତିପ୍ରାପ୍ତ, ମକର ବା କୁମ୍ଭ ନବାଂଶରେ ଥିବା ରବିକୁ ଚନ୍ଦ୍ର ଦେଖିଲେ ଜାତକ ଅଳ୍ପ ସନ୍ତାନ ଯୁକ୍ତ ହୁଏ ।୮।

ବର୍ଗୋତ୍ତମସ୍ୱପରଗେଷୁ ଶୁଭଂ ଯଦୁକ୍ତଂ ତତ୍ପୁଷ୍ଟମଧ୍ୟଲଘୁତାଶୁଭମୁକ୍ରମେଣ ।
ବୀର୍ଯ୍ୟାନ୍ୱିତୋଂଶକପତିର୍ନିରୁଣଦ୍ଧି ପୂର୍ବଂ ରାଶୀକ୍ଷଣସ୍ୟ ଫଳମଂଶଫଳଂ ଦଦାତି ।୯।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ଦୃଷ୍ଟିଫଳାଽଧ୍ୟାୟ ଏକୋନବିଂଶଃ ॥

ପୂର୍ବୋକ୍ତ ଦୃଷ୍ଟିଫଳର ବିଶେଷ କଥା ଏହି ଯେ ଚନ୍ଦ୍ର ଯଦି ବର୍ଗୋତ୍ତମ ନବାଂଶରେ ଥାଏ ତେବେ କଥିତ ଶୁଭଫଳର ବୃଦ୍ଧିଘଟେ । (ବର୍ଗୋତ୍ତମ ପାଇଁ ପ୍ରଥମ ଅଧ୍ୟାୟର ଚତୁର୍ଦ୍ଦଶ ଶ୍ଳୋକ ଦେଖନ୍ତୁ) । ଚନ୍ଦ୍ର ସ୍ୱନବାଂଶରେ ଥିଲେ ଏହି ଶୁଭ ଫଳ ସବୁ ମଧ୍ୟମ ହୁଏ, ଅନ୍ୟାନ୍ୟ ନବାଂଶରେ ଥିଲେ ଶୁଭଫଳର ନ୍ୟୂନତା କଳ୍ପନା କରିବେ । ସେହିପରି ବର୍ଗୋତ୍ତମ ନବାଂଶରେ ଥିବା ଚନ୍ଦ୍ର ପ୍ରତି ଅଶୁଭଦୃଷ୍ଟି ଫଳ ଥିଲେହେଁ ତାହା ସାମାନ୍ୟ ହେବ, ସ୍ୱନବାଂଶ ଚନ୍ଦ୍ରପ୍ରତି ଅଶୁଭ ଫଳ ମଧ୍ୟମ ହେବ ଓ ଅନ୍ୟାନ୍ୟ ନବାଂଶରେ ଥିବା ଚନ୍ଦ୍ର ପ୍ରତି ଅଶୁଭ-ଫଳ ପୂର୍ଣ୍ଣଭାବେ ଘଟିବ ।

ନବାଂଶ ଅଧିପତି ଗ୍ରହ ଯଦି ରାଶିର ଅଧିପତି ଅପେକ୍ଷା ବଳବାନ୍ ତେବେ ନବାଂଶ ଅଧିପତିର ଫଳ ମାତ୍ର ଘଟିବ । ଯଦି ନବାଂଶ ଅଧିପତି ଦୁର୍ବଳ ତେବେ ରାଶି ଓ ନବାଂଶର ମିଶ୍ରିତ ଫଳ ଭୋଗହେବ । ଚନ୍ଦ୍ର ତଥା ଲଗ୍ନର ଏହିପରି ଫଳ ସବୁ ବୁଝିବେ । ରବିର କେବଳ ନବାଂଶସ୍ଥ ଦୃଷ୍ଟିଫଳ କହିବେ କାରଣ ଭିନ୍ନ ରାଶିସ୍ଥ ରବିପ୍ରତି ଗ୍ରହମାନଙ୍କର ଦୃଷ୍ଟି ଫଳ କଥା ଏଥିରେ ଉକ୍ତ ହୋଇ ନାହିଁ ।୯।

ଶ୍ରୀ ବରାହ ମିହିରକୃତ ବୃହଜ୍ଜାତକ ଗ୍ରନ୍ଥର 'ଦୃଷ୍ଟିଫଳ' ନାମକ ଊନବିଂଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



# ଭାବଫଳାଧ୍ୟାୟେ ତ୍ରିଂଶଃ

## ଲଗ୍ନତଥା ଦ୍ୱିତୀୟ ସ୍ଥାନରେ ଥିବା ରବିର ଫଳ

ଶୂରଃ ସ୍ତବ୍ଧୋ ବିକଳନୟନୋ ନିର୍ଘୃଣୋର୍କେ ତନୁସ୍ଥେ
ମେଷେ ସସ୍ୱସ୍ତିମିରନୟନଃ ସିଂହସଂସ୍ଥେ ନିଶାନ୍ଧଃ ।
ନୀଚେଽନ୍ଧୋଽସ୍ୱଃ ଶଶିଗୃହଗତେ ବୁଦ୍‌ବୁଦାକ୍ଷଃ ପତଙ୍ଗେ
ଭୂରିଦ୍ରବ୍ୟୋ ନୃପହୃତଧନୋବକ୍ତ୍ରରୋଗୀ ଦ୍ୱିତୀୟେ ।୧।

ରବି ଲଗ୍ନରେ ଥିଲେ ଜାତକ ଶୂର, ବଳମ୍ବରେ କାର୍ଯ୍ୟକାରୀ (ଦୀର୍ଘସୂତ୍ରୀ ଲକ୍ଷଣ), ଦୃଷ୍ଟି ଶକ୍ତିରେ ନ୍ୟୂନ ଓ ଦୟାଶୂନ୍ୟ ହୁଏ । ଏହି ଲଗ୍ନସ୍ଥ ରବି ମେଷରାଶିସ୍ଥ ହୋଇଥିଲେ ଜାତକ ଧନବାନ୍ ଓ ନେତ୍ରରୋଗ ଯୁକ୍ତ ହୁଏ । ଲଗ୍ନ ସିଂହ ହୋଇଥିବ ତହିଁରେ ରବି ଥିଲେ ଜାତକ ନିଶାନ୍ଧ ହୁଏ । ତୁଳା-ଲଗ୍ନ ତହିଁରେ ରବି ଥିଲେ ଜାତକ ଅନ୍ଧ ଓ ନିର୍ଦ୍ଧନ ହୁଏ । କର୍କଟ ଲଗ୍ନହେବ, ସେଥିରେ ରବି ଥିଲେ ଜାତକର ଦୃଷ୍ଟିଶକ୍ତିରେ ଦୋଷରହେ ।

ରବି ଦ୍ୱିତୀୟରେ ଥିଲେ ଜାତକ ବହୁ ଧନର ଅଧିକାରୀ ହୁଏ, ରାଜା ତାହାର ଧନ ହରଣ କରେ ଓ ସେ ମୁଖରୋଗ ଯୁକ୍ତ ହୁଏ ।୧।

## ତୃତୀୟ, ଚତୁର୍ଥ, ପଞ୍ଚମ ତଥା ଷଷ୍ଠ ସ୍ଥାନରେ ଥିବା ରବିର ଫଳ

ମତିବିକ୍ରମବାଂସ୍ତୃତୀୟଗେଽର୍କେ ବିସୁଖଃ ପୀଡ଼ିତମାନସଶ୍ଚତୁର୍ଥେ
ଅସୁତୋ ଧନବର୍ଜିତସ୍ତ୍ରିକୋଣେ ବଲବାଞ୍ଛତ୍ରୁଜିତଶ୍ଚ ଶତ୍ରୁଯାତେ ।୨।

ରବି ତୃତୀୟରେ ଥିଲେ ଜାତକ ବୁଦ୍ଧିମାନ୍ ଓ ପରାକ୍ରମଶାଳୀ ହୁଏ ।

ରବି ଚତୁର୍ଥରେ ଥିଲେ ଜାତକ ସୁଖହୀନ ଓ ସର୍ବଦା ଉଦ୍‌ବେଗ ଯୁକ୍ତ (ଅଶାନ୍ତ ଯୁକ୍ତ) ହୁଏ ।

ରବି ପଞ୍ଚମରେ ଥିଲେ ଜାତକ ପୁତ୍ରହୀନ ଓ ଧନହୀନ ହୁଏ ।

ରବି ଷଷ୍ଠରେ ଥିଲେ ଜାତକ ବଳିଷ୍ଠ ହୁଏ ଓ ଶତ୍ରୁଙ୍କୁ ଜୟ କରେ ।୨।

## ସପ୍ତମ, ଠାରୁ ଦ୍ୱାଦଶ ଭାବରେ ଥିବା ରବିରଫଳ

ସ୍ତ୍ରୀଭିର୍ଗତଃ ପରଭବଂ ମଦଗେ ପତଙ୍ଗେ
ସ୍ୱଳ୍ପାତ୍ମଜୋ ନିଧନଗେ ବିକଳେକ୍ଷଣଶ୍ଚ ।
ଧର୍ମେ ସୁତାର୍ଥସୁଖଭାକ୍ ସୁଖଶୌର୍ଯ୍ୟଭାକ୍‌ଖେ
ଲାଭେ ପ୍ରଭୂତଧନବାନ୍ ପତିତସ୍ତୁ ରିଃଫେ ।୩।

ରବ ସପ୍ତମରେ ଥିଲେ ଜାତକ ସ୍ତ୍ରୀଠାରୁ ଆଦର ଲଭ କର ନପାରେ ।

ରବ ଅଷ୍ଟମରେ ଥିଲେ ଜାତକ ଅଳ୍ପସନ୍ତାନ ଯୁକ୍ତ ଓ ତାହାର ଦୃଷ୍ଟିଶକ୍ତି କ୍ଷୀଣହୁଏ ।

ରବ ନବମରେ ଥିଲେ ଜାତକ ପୁତ୍ରବାନ୍, ଧନବାନ୍, ଓ ସୁଖଭୋଗ କରେ ।

ରବ ଦଶମରେ ଥିଲେ ଜାତକ ସୁଖଭୋଗ କରେ ଓ ବଳବାନ୍ ହୁଏ ।

ରବ ଏକାଦଶରେ ଥିଲେ ଜାତକ ବହୁଧନ ଯୁକ୍ତ ହୁଏ ଓ ଦ୍ୱାଦଶରେ ଥିଲେ ନିଜକର୍ମରୁ ପରଭ୍ରଷ୍ଟ ହୁଏ ।୩।

ଦ୍ରଷ୍ଟବ୍ୟ:—ବରାହ ମିହିର ବହୁତ ସ୍ଥଳରେ ସତ୍ୟାଚାର୍ଯ୍ୟଙ୍କ ମତ ଗ୍ରହଣ କରିଥିବା ଜଣାଯାଏ । ଏଠାରେ କିନ୍ତୁ ରବର ନବମସ୍ଥ ଫଳ ସେ ଯାହା ଲେଖିଛନ୍ତି ତାହା ସତ୍ୟାଚାର୍ଯ୍ୟଙ୍କ ମତର ସଂପୂର୍ଣ୍ଣ ବପରୀତ । ସତ୍ୟାଚାର୍ଯ୍ୟଙ୍କ ମତରେ ରବ ନବମରେ ଥିଲେ ଜାତକ ସାଧୁସମ୍ମତ ଆଚାରର ବରୋଧ କରେ, ସେ ରୋଗୀହୁଏ ଓ ଦାରିଦ୍ର୍ୟ ଦୁଃଖଭୋଗ କରେ । ତାଙ୍କର ମତ:— ସାଧ୍ୱାଚାର୍ଯ୍ୟବରୋଧଂ ରୁଗ୍ଣଃ ପ୍ରଦୋ ଦୈନ୍ୟକୃନ୍ନବମସଂସ୍ଥଃ ॥

## ଲଗ୍ନଠାରୁ ଷଷ୍ଠଭାବ ପର୍ଯ୍ୟନ୍ତଥିବା ଚନ୍ଦ୍ରର ଫଳ ବଚାର

ମୂକୋନ୍ମତ୍ତଜଡ଼ାନ୍ଧହୀନବଧିରପ୍ରେଷ୍ୟାଃ ଶଶାଙ୍କୋଦୟେ
ସ୍ୱର୍କ୍ଷାଜୋଚଗତେ ଧନୀ ବହୁସୁତଃ ସସ୍ୱଃ କୁଟୁମ୍ବୀ ଧନେ ।
ହିଂସ୍ରୋ ଭ୍ରାତୃଗତେ ସୁଖେ ସତନୟେ ତତ୍ପ୍ରୋକ୍ତଭାବାନ୍ୱିତୋ
ନୈକାରୀର୍ମୃଦୁକାୟବହ୍ନିମଦନସ୍ତୀକ୍ଷ୍ଣୋଽଳସଷ୍ଟାରଗେ ।୪।

ଚନ୍ଦ୍ର ଲଗ୍ନରେ ଥିଲେ ଜାତକ ମୂକ (ଜଡ଼ା) ମୂର୍ଖ, ଦୃଷ୍ଟିଶକ୍ତି ହୀନ, ମନ୍ଦକର୍ମକାରୀ, ଶ୍ରବଣଶକ୍ତି ହୀନ (କାଲା) ଓ ଦାସକର୍ମ କର ବଞ୍ଚିଥାଏ । ଲଗ୍ନ ଯଦ କର୍କଟ, ମେଷ ବା ବୃଷ ହୋଇଥାଏ ତେବେ କ୍ରମାନ୍ୱୟରେ ଜାତକ ଧନୀ, ବହୁପୁତ୍ର ଯୁକ୍ତ ଓ ଧନଯୁକ୍ତ ହୁଏ ଅର୍ଥାତ୍ କର୍କଟ ଲଗ୍ନରେ ଧନୀ, ମେଷଲଗ୍ନରେ ବହୁ ପୁତ୍ରଯୁକ୍ତ ଓ ବୃଷ ଲଗ୍ନରେ ଧନଯୁକ୍ତ ହୁଏ ।

ଚନ୍ଦ୍ର ଦ୍ୱିତୀୟରେ ଥିଲେ ଜାତକର ପରବାର ବହୁତ ହୁଅନ୍ତି । ତୃତୀୟସ୍ଥ ଚନ୍ଦ୍ର ଜାତକଙ୍କୁ ନିର୍ଦ୍ଦୟ କରାଏ । ଚତୁର୍ଥସ୍ଥ ଚନ୍ଦ୍ର ସୁଖପ୍ରଦ ହୁଏ ଓ ପଞ୍ଚମସ୍ଥ ଚନ୍ଦ୍ର ସନ୍ତାନ ପ୍ରଦ ହୁଏ । ଷଷ୍ଠସ୍ଥ ଚନ୍ଦ୍ରରେ ଜାତକ ବହୁଶତ୍ରୁଯୁକ୍ତ,

ସୁକୁମାର ଶରୀର, ପାକ ଶକ୍ତି ହୀନ, ମୈଥୁନ ଶକ୍ତି ସ୍ୱଳ୍ପ, ଉଗ୍ରସ୍ୱଭାବ ଓ ଆଳସ୍ୟ ପରାୟଣ ହୁଏ ।୪।

## ସପ୍ତମଠାରୁ ଦ୍ୱାଦଶଭାବ ପର୍ଯ୍ୟନ୍ତ ଥିବା ଚନ୍ଦ୍ରର ଫଳ ବିଚାର

ଈର୍ଷ୍ୟୁସ୍ତୀବ୍ରମଦୋ ମଦେ ବହୁମତଦ୍ବ୍ୟାଧ୍ୟର୍ଦ୍ଦିତଶ୍ଚାଷ୍ଟମେ
ସୌଭାଗ୍ୟାତ୍ମଜମିତ୍ରବନ୍ଧୁଧନଭାଗ୍ଧର୍ମସ୍ଥିତେ ଶୀତଗୌ ।
ନିଷ୍ପତ୍ତିଂ ସମୁପୈତି ଧର୍ମଧନଧୀଶୌର୍ଯୈର୍ଯୁତଃ କର୍ମଗେ
ଖ୍ୟାତୋ ଭାବଗୁଣାନ୍ୱିତୋ ଭବଗତେ କ୍ଷୁଦ୍ରୋଙ୍ଗହୀନୋ ବ୍ୟୟେ ।୫।

ଚନ୍ଦ୍ର ସପ୍ତମ ସ୍ଥାନରେ ଥିଲେ ଜାତକ ଈର୍ଷାପରାୟଣ ଓ ସ୍ତ୍ରୀ ଲୋଲୁପ ହୁଏ । ଅଷ୍ଟମରେ ଥିଲେ ଚଞ୍ଚଳ ବୁଦ୍ଧିଯୁକ୍ତ ଓ ରୋଗପୀଡ଼ା ଯୁକ୍ତ ହୁଏ । ନବମରେ ଥିଲେ ଜାତକ ସମସ୍ତଙ୍କର ପ୍ରିୟପାତ୍ର ହୁଏ । ସେ ପୁତ୍ରବାନ୍, ମିତ୍ରଯୁକ୍ତ ଓ ଧନବାନ୍ ହୁଏ । ଦଶମରେ ଥିଲେ ସମସ୍ତ କର୍ମନିଷ୍ପତ୍ତି କରିପାରେ, ସେ ଧାର୍ମିକ, ଧନବାନ୍ ଓ ଶୂରତା ଯୁକ୍ତ ହୁଏ ।

ଏକାଦଶରେ ଥିଲେ ଜାତକ ଖ୍ୟାତନାମା ଓ ଲାଭକାରୀ ହୁଏ, ଦ୍ୱାଦଶରେ ଥିଲେ ଜାତକ ହିଂସ୍ରସ୍ୱଭାବ ଯୁକ୍ତ ଓ ଅଙ୍ଗହୀନ ହୁଏ ।୫।

## ଲଗ୍ନାଦି ଦ୍ୱାଦଶ ଭାବସ୍ଥିତ ମଙ୍ଗଳ ଓ ବୁଧର ଫଳ

ଲଗ୍ନେଽକୁଜେ କ୍ଷତତନୁର୍ଧନଗେ କଦନ୍ନୋ
ଧର୍ମେଽଘବାନ୍ଦିନକରପ୍ରତିମୋଽନ୍ୟସଂସ୍ଥଃ ।
ବିଦ୍ୱାନ୍ଧନୀ ପ୍ରଖଲପଣ୍ଡିତମନ୍ତ୍ରିଶତ୍ରୁ—
ର୍ଧର୍ମଜ୍ଞବିଶ୍ରୁତଗୁଣଃ ପରତୋଽର୍କବଜ୍ଜ୍ଞେ ।୬।

ମଙ୍ଗଳ ଲଗ୍ନରେ ଥିଲେ ଜାତକ ଅସ୍ତ୍ରାଦିର ଆଘାତ ପାଏ ଓ ସେହି ଚିହ୍ନ ଦେହରେ ଥାଏ । ଦ୍ୱିତୀୟରେ ଥିଲେ କଦନ୍ନ ଭୋଜନ କରେ । ନବମରେ ଥିଲେ ପାପକର୍ମୀ ହୁଏ । ଅନ୍ୟସ୍ଥାନ ମାନଙ୍କରେ (ତୃତୀୟ, ଚତୁର୍ଥ ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ, ଦଶମ, ଏକାଦଶ ତଥା ଦ୍ୱାଦଶ) ଥିଲେ ରବିଙ୍କ ତୁଲ୍ୟ ଫଳ ଦିଏ । ଅର୍ଥାତ୍ ତୃତୀୟ ଭାବରେ ଥିବା ରବିର ଫଳ ଯାହା ମଙ୍ଗଳର ଫଳ ତାହାହିଁ ହୁଏ । ଏହି ଅଧ୍ୟାୟର ଦ୍ୱିତୀୟ ତଥା ତୃତୀୟ ଶ୍ଲୋକ ଦେଖନ୍ତୁ ।

ବୁଧ ଲଗ୍ନରେ ଥିଲେ ଜାତକ ବିଦ୍ୱାନ୍, ଦ୍ୱିତୀୟରେ ଥିଲେ ଧନବାନ୍, ତୃତୀୟରେ ଥିଲେ ଦୁର୍ଜନ, ଚତୁର୍ଥରେ ଥିଲେ ପଣ୍ଡିତ, ପଞ୍ଚମରେ ଥିଲେ

ମନ୍ତ୍ରଣାଶକ୍ତି ଯୁକ୍ତ, ଷଷ୍ଠରେ ଥିଲେ ଶତ୍ରୁହୀନ, ସପ୍ତମରେ ଥିଲେ ଧର୍ମଜ୍ଞ, ଅଷ୍ଟମରେ ଥିଲେ ପ୍ରଖ୍ୟାତ ଗୁଣଯୁକ୍ତ, ନବମରେ, ଦଶମରେ, ଏକାଦଶରେ ଦ୍ୱାଦଶରେ ଥିଲେ ରବି ତୁଲ୍ୟ ଫଳ ଦିଏ । ଅର୍ଥାତ୍ ରବି ନବମରେ ଥିଲେ ଫଳ ଯାହା ବୁଧର ଫଳ ମଧ୍ୟ ତାହା, ଏପରି ଅନ୍ୟ ଭାବମାନଙ୍କ ଫଳ ଜାଣିବେ ।୬।

## ଲଗ୍ନାଦି ଦ୍ୱାଦଶ ଭାବରେ ଥିବା ଗୁରୁର ଫଳ

ବିଦ୍ୱାନ୍‌ସୁବାକ୍ୟଃ କୃପଣଃ ସୁଖୀ ଚ ଧୀମାନଶତ୍ରୁଃ ପିତୃତୋଽଧିକଶ୍ଚ ।
ନୀଚସ୍ତପସ୍ୱୀ ସଧନଃ ସଲାଭଃ ଖଳଶ୍ଚ ଜୀବେ କ୍ରମଶୋ ବିଲଗ୍ନାତ୍ ।୭।

ଗୁରୁ (ବୃହସ୍ପତି) ଲଗ୍ନରେ ଥିଲେ ଜାତକ ବିଦ୍ୱାନ ହୁଏ । ଦ୍ୱିତୀୟରେ ଥିଲେ ଜାତକ ସୁବାକ୍ୟ କହେ, ତୃତୀୟରେ ଥିଲେ କୃପଣ, ଚତୁର୍ଥରେ ଥିଲେ ସୁଖୀ, ପଞ୍ଚମରେ ଥିଲେ ବୁଦ୍ଧିମାନ୍, ଷଷ୍ଠରେ ଥିଲେ ଶତ୍ରୁହୀନ, ସପ୍ତମରେ ଥିଲେ ପିତାଙ୍କଠାରୁ ସବୁଗୁଣରେ ଅଧିକ, ଅଷ୍ଟମରେ ଥିଲେ ନୀଚ କର୍ମକାରୀ, ନବମରେ ଥିଲେ ତପସ୍ୱୀ, ଦଶମରେ ଥିଲେ ଧନବାନ୍, ଏକାଦଶରେ ଥିଲେ ଲାଭଯୁକ୍ତ, ଦ୍ୱାଦଶରେ ଥିଲେ ଦୁଷ୍ଟସ୍ୱଭାବ ଯୁକ୍ତହୁଏ ।୭।

## ଲଗ୍ନାଦି ଦ୍ୱାଦଶ ଭାବରେ ଥିବା ଶୁକ୍ରର ଫଳ

ସ୍ମରନିପୁଣଃ ସୁଖିତଶ୍ଚ ବିଲଗ୍ନେ ପ୍ରିୟକଲହୋଽସ୍ତଗତେ ସୁରତେପ୍ସୁଃ
ତନୟଗତେ ସୁଖିତୋ ଭୃଗୁପୁତ୍ରେ ଗୁରୁବଦତୋଽନ୍ୟଗୃହେ ସଧନୋଽନ୍ତ୍ୟେ ।୮।

ଶୁକ୍ର ଲଗ୍ନରେ ଥିଲେ ଜାତକ କାମକଳାକୁଶଳ ହୁଏ ଓ ସୁଖୀ ହୁଏ । ସପ୍ତମ ଭାବରେ ଥିଲେ ଜାତକ କଳହପ୍ରିୟ ଓ ସ୍ତ୍ରୀସଙ୍ଗମ ଇଚ୍ଛା ଅତିରେକ ଥାଏ । ପଞ୍ଚମରେ ଥିଲେ ଜାତକ ସୁଖୀ ହୁଏ । ଅନ୍ୟାନ୍ୟ ଭାବ ଅର୍ଥାତ୍ ଦ୍ୱିତୀୟ, ତୃତୀୟ, ଚତୁର୍ଥ, ଷଷ୍ଠ, ଅଷ୍ଟମ, ନବମ, ଦଶମ, ଏକାଦଶ ଓ ଦ୍ୱାଦଶରେ ଥିଲେ ଗୁରୁ ତୁଲ୍ୟ ଫଳ ହୋଇଥାଏ । ଅର୍ଥାତ୍ ଦ୍ୱିତୀୟରେ ଥିବା ଶୁକ୍ରର ଫଳ ଯାହା, ଗୁରୁର ଫଳ ମଧ୍ୟ ତାହା । ଶୁକ୍ର ଯେ କୌଣସି ଭାବରେ ଥାଉ ମୀନରାଶିରେ (ଉଚ୍ଚକ୍ଷେତ୍ର) ଥିଲେ ଜାତକ ଧନବାନ୍ ହୁଏ ।୮।

## ଲଗ୍ନାଦି ଦ୍ୱାଦଶ ଭାବରେ ଥିବା ଶନିର ଫଳ

ଅତିଦୁଷ୍ଟାର୍ଥୋ ରୋଗୀ ମଦନବଶଗୋଽତ୍ୟନ୍ତମଲିନଃ
ଶିଶୁତ୍ୱେ ପୀଡ଼ାର୍ତ୍ତିଃ ସବିତୃସୁତଲଗ୍ନେଽଳସବାକ୍ ।

ଗୁରୁସ୍ୱର୍କ୍ଷୋଚ୍ଚସ୍ଥେ ନୃପତିସଦୃଶୋ ଗ୍ରାମପୁରପଃ
ସୁବିଦ୍ୱାଂଶ୍ଚାର୍ବଙ୍ଗୋ ଧନକରସମୋଽନ୍ୟଃ କଥିତଃ ।୯।

ଶନି ଲଗ୍ନରେ ଥିଲେ ଜାତକ ଧନହୀନ, ରୋଗଯୁକ୍ତ, କାମଦୋଷଯୁକ୍ତ, ଅତିଶୟମଳିନ, ବାଲ୍ୟ ଅବସ୍ଥାରେ ପୀଡ଼ାଯୁକ୍ତ ଓ ସ୍ପଷ୍ଟ କଥା କହିବାରେ ଅକ୍ଷମ ହୁଏ । ଏହି ଲଗ୍ନସ୍ଥ ଶନି ଧନୁ, ମୀନ, ମକର, କୁମ୍ଭ ବା ତୁଳା ମଧ୍ୟରୁ ଯେ କୌଣସି ରାଶିରେ ଥିଲେ ଜାତକ ରାଜାତୁଲ୍ୟ, ଗ୍ରାମ ତଥା ନଗରର ଅଧିକାରୀ ହୁଏ । ସେ ସୁବିଦ୍ୟାଯୁକ୍ତ ଓ ସୁନ୍ଦର ହୁଏ ।

ଅନ୍ୟ ସମସ୍ତ ଭାବରେଥିବା ଶନିର ଫଳ ରବିଙ୍କ ତୁଲ୍ୟ ଜାଣିବେ ।୯।

## ଦ୍ୱାଦଶଭାବସ୍ଥିତ ଗ୍ରହମାନଙ୍କର ବିଶେଷ ଫଳ

ସୁହୃଦରିପରକୀୟସ୍ୱର୍କ୍ଷତୁଙ୍ଗସ୍ଥିତାନାଂ ଫଳମନୁପରିଚିନ୍ତ୍ୟଂ ଲଗ୍ନଦେହାଦିଭାବୈଃ
ସମୁପଚୟବିପତ୍ତୀ ସୌମ୍ୟପାପେଷୁ ସତ୍ୟଃ କଥୟତି ବିପରୀତଂ
ରିଃଫଷଷ୍ଠାଷ୍ଟମେଷୁ ।୧୦।

ଲଗ୍ନାଦି ଦ୍ୱାଦଶ ଭାବ ଗତ ଗ୍ରହମାନେ ସେମାନଙ୍କର ବଳାନୁରୂପ ଭାବଫଳକୁ ବୃଦ୍ଧି ବା ହାନି କରନ୍ତି । ସେମାନେ ମିତ୍ରଗୃହରେ ଥିଲେ ଭାବଫଳର ବୃଦ୍ଧି କରନ୍ତି । ମନେକର ଗୋଟିଏ ଗ୍ରହ ଲଗ୍ନରେ ଅଛି, ସେହି ଲଗ୍ନରାଶି ତାହାର ମିତ୍ରଗ୍ରହର ଗୃହ, ତେବେ ଏହିଗ୍ରହ ଲଗଭାବର ଫଳ ଅର୍ଥାତ୍ ଶରୀର ସୌଖ୍ୟାଦିରେ ଶୁଭକରାଇବ । ଏଗ୍ରହ ଯଦି ଶତ୍ରୁଗ୍ରହର କ୍ଷେତ୍ରରେ ଥିବ ତେବେ ଶରୀର ସୌଖ୍ୟାଦିରେ ହାନି ଘଟାଇବ । ଏ ଗ୍ରହ ଯଦି ସମଗ୍ରହର କ୍ଷେତ୍ରରେ ଥିବ ତେବେ ଭାବଫଳର ହାନି ବା ବୃଦ୍ଧି କିଛି ହେବ ନାହିଁ । ସେହିଗ୍ରହ ଯଦି ସ୍ୱକ୍ଷେତ୍ର ବା ଉଚ୍ଚକ୍ଷେତ୍ରରେ ଥିବ ତେବେ ଭାବଫଳର ବିଶେଷ ବୃଦ୍ଧି ଘଟିବ ।

ସତ୍ୟାଚାର୍ଯ୍ୟ ଏହି ଭାବଫଳର ହାନି ତଥା ବୃଦ୍ଧି ବିଷୟ ନେଇ କହନ୍ତି ଯେ ଶୁଭଗ୍ରହମାନେ ଯେଉଁ ଭାବରେ ରହିବେ ସେ ଭାବର ଫଳ ବୃଦ୍ଧି କରିବେ । ପାପଗ୍ରହମାନେ ଯେଉଁ ଭାବରେ ରହିବେ ସେହି ସେହି ଭାବର ଫଳ ନାଶ କରିବେ, ଷଷ୍ଠ, ଅଷ୍ଟମ ତଥା ଦ୍ୱାଦଶ ଭାବରେ ଏହି ଫଳ ବିପରୀତ ହେବ । ଅର୍ଥାତ ଏହି ଭାବମାନଙ୍କରେ ପାପ ଗ୍ରହଥିଲେ ଭାବଫଳର ବୃଦ୍ଧି ଘଟିବ, ଶୁଭଗ୍ରହଥିଲେ ଭାବଫଳର ହାନି କରିବେ । ଷଷ୍ଠ ଭାବର ବିଷୟହେଲା ବ୍ରଣ, ଶତ୍ରୁ ଇତ୍ୟାଦି, ଅଷ୍ଟମଭାବର ଛିଦ୍ର, ମୃତ୍ୟୁ ଇତ୍ୟାଦି, ଦ୍ୱାଦଶ ଭାବର ବିଷୟ ଧନବ୍ୟୟ ଆଦି । ତେଣୁ ଏହି ଏହି ବିଷୟକୁ ପାପଗ୍ରହମାନେ ବୃଦ୍ଧି କରିବେ ଓ ଶୁଭଗ୍ରହଥିଲେ ହାନି ଘଟାଇବେ ।

ଉଚ୍ଚତ୍ରିକୋଣସ୍ୱସୁହୃଚ୍ଛତ୍ରୁନୀଚଗୃହାର୍କଗୈଃ
ଶୁଭଂ ସଂପୂର୍ଣ୍ଣପାଦୋନଦଳପାଦାଲ୍ପନିଷ୍ଫଳମ୍ ।୧।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେ ଭାବାଧ୍ୟାୟୋ ବିଂଶଃ

ଗ୍ରହ ନିଜର ଉଚ୍ଚକ୍ଷେତ୍ରରେ ଥିଲେ ପୂର୍ଣ୍ଣଶୁଭଫଳ ଦିଏ; ମୂଳ ତ୍ରିକୋଣରେ ଥିଲେ ତ୍ରିପାଦ ଶୁଭଫଳ ଦିଏ; ସ୍ୱଗୃହରେ ଥିଲେ ଅର୍ଦ୍ଧଶୁଭ ଫଳ; ମିତ୍ରଗୃହରେ ଥିଲେ ଏକପାଦ (ଚତୁର୍ଥାଂଶ) ଶୁଭ ଫଳ ଦେଇଥାଏ । ଶତ୍ରୁ ଗୃହରେ ଗ୍ରହଥିଲେ ଚତୁର୍ଥାଂଶରୁ ମଧ୍ୟ ଅଳ୍ପଶୁଭ ଫଳଦିଏ । ନୀଚ ତଥା ଅସ୍ତଗତ ଗ୍ରହ ଆଦୌ ଶୁଭଫଳ ଦେଇନଥାଏ ।୧।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ଭାବାଧ୍ୟାୟ ନାମକ ବିଂଶ
ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

—)ଃ✱ଃ(—

# ଆଶ୍ରୟଯୋଗାଧ୍ୟାୟ ଏକବିଂଶଃ

## ସ୍ୱଗୃହ ଓ ମିତ୍ରଗୃହରେ ଥିବା ଗ୍ରହମାନଙ୍କର ଫଳ

କୁଳସମକୁଳମୁଖ୍ୟବଂଧୁପୂଜ୍ୟା ଧନିସୁଖିଭୋଗିନୃପାଃ ସ୍ୱଭୈକବୃଦ୍ଧ୍ୟା
ପରବିଭବସୁହୃତ୍ସ୍ୱବଂଧୁପୋଷ୍ୟାଗଣପବଳେଶନୃପାଶ୍ଚ ମିତ୍ରଭେଷୁ ।୧।

ଜାତକରେ ଗୋଟିଏ ଗ୍ରହ ଯଦି ସ୍ୱଗୃହରେ ଥାଏ ତେବେ ସେହିବ୍ୟକ୍ତି କୁଳର ଉପଯୁକ୍ତ ଧନ, ସୁଖାଦି ଭୋଗକରେ । ଦୁଇଟି ଗ୍ରହ ସ୍ୱଗୃହରେ ଥିଲେ ଜାତକ କୁଳମଧ୍ୟରେ ମୁଖ୍ୟ ହୁଏ । ତିନୋଟି ଗ୍ରହ ସ୍ୱଗୃହରେ ଥିଲେ ଜାତକ ବଂଧୁପୂଜ୍ୟ ହୁଏ । ଚାରିଟି ଗ୍ରହ ସ୍ୱଗୃହରେ ଥିଲେ ଜାତକ ଧନୀ ହୁଏ । ପାଞ୍ଚଟି ଗ୍ରହ ସ୍ୱଗୃହରେ ଥିଲେ ଜାତକ ସୁଖୀ ହୁଏ; ଛଅଟି ଗ୍ରହ ସ୍ୱଗୃହରେ ରହିଲେ ଭୋଗୀ ହୁଏ; ସାତଟି ଗ୍ରହ ସ୍ୱଗୃହରେ ଥିଲେ ଜାତକ ନରପାଳକ ହୁଏ ।

ଗୋଟିଏ ଗ୍ରହ ମିତ୍ରକ୍ଷେତ୍ରରେ ଥିଲେ ଜାତକ ଅପରର ଧନଦ୍ୱାରା ନିଜର ଜୀବିକା ଚଳାଏ । ଦୁଇଟି ଗ୍ରହ ମିତ୍ର କ୍ଷେତ୍ରସ୍ଥ ହେଲେ ମିତ୍ର ଧନ ଦ୍ୱାରା, ତିନୋଟିରେ ନିଜର ଜାତୀୟବ୍ୟକ୍ତିର ଧନଦ୍ୱାରା, ଚାରିଟି ଗ୍ରହରେ ନିଜର ବନ୍ଧୁର ଧନ ଦ୍ୱାରା ଜୀବନ ଚଳାଏ । ପାଞ୍ଚଟି ଗ୍ରହ ମିତ୍ର କ୍ଷେତ୍ରସ୍ଥ ହେଲେ ଲୋକମାନଙ୍କ ଉପରେ ଆଧିପତ୍ୟ କରେ, ଛଅଟି ଗ୍ରହଥିଲେ ସେନାପତି, ସାତଟି ଗ୍ରହ ମିତ୍ର କ୍ଷେତ୍ରସ୍ଥ ହେଲେ ଜାତକ ରାଜାହୁଏ ।୧।

## ଉଚ୍ଚସ୍ଥ-ମିତ୍ରଯୁକ୍ତ ତଥା ଦୃଷ୍ଟ ଓ ଶତ୍ରୁକ୍ଷେତ୍ରଗତ ଗ୍ରହର ଫଳ

ଜନୟତି ନୃପମେକୋପ୍ୟୁଚ୍ଚଗୋ ମିତ୍ରଦୃଷ୍ଟଃ
ପ୍ରଚୁରଧନସମେତଂ ମିତ୍ରଯୋଗାଚ୍ଚସିଦ୍ଧମ୍ ।
ବିଧନବିସୁଖମୂଢବ୍ୟାଧିତୋ ବନ୍ଧତପ୍ତୋ
ବଧଦୁରିତସମେତଃ ଶତ୍ରୁନୀଚର୍କ୍ଷଗେଷୁ ।୨।

ଗୋଟିଏ ଗ୍ରହ ନିଜର ଉଚ୍ଚ ସ୍ଥାନରେ ଥାଇ ନିଜର ମିତ୍ରଗ୍ରହ ଦ୍ୱାରା ଦୃଷ୍ଟହେଲେ ଜାତକ ରାଜା ହୁଏ । ଉଚ୍ଚରେ ଥାଇ ମିତ୍ରଗ୍ରହ ଯୁକ୍ତ ହେଲେ ଜାତକ ବହୁଧନ ଭୋଗକରେ ଓ ସର୍ବତ୍ର ପୂଜ୍ୟ ହୁଏ ।

ଗୋଟିଏ ଗ୍ରହ ଶତ୍ରୁ କ୍ଷେତ୍ର ତଥା ନୀଚ କ୍ଷେତ୍ରରେ ଥିଲେ ଜାତକ ନିର୍ଦ୍ଧନ ହୁଏ । ଦୁଇଟି ଗ୍ରହ ଏପରି ଥିଲେ ସୁଖହୀନ; ତିନୋଟି ଗ୍ରହ ଏପରି ଥିଲେ ମୂଢତାଯୁକ୍ତ, ଚାରିଟି ଗ୍ରହରେ ପୀଡ଼ାଯୁକ୍ତ; ପାଞ୍ଚଟି ଗ୍ରହ ଏପରି ଥିଲେ ବନ୍ଧନଯୁକ୍ତ, ଛଅଟି ଗ୍ରହରେ ସବୁବେଳେ ଦୁଃଖାଭିତପ୍ତ ଓ ସାତଟି ଗ୍ରହ ନୀଚ ବା ଶତ୍ରୁ ଗୃହଗତ (କେତୋଟି ନୀଚ ଓ ଅପର କେତୋଟି ଶତ୍ରୁ ଗୃହଗତ) ହେଲେ ପାପଭାଗୀ ତଥା ମୃତ୍ୟୁଦଣ୍ଡ ଭୋଗକରି ଥାଏ ।୨।

### କୁମ୍ଭଲଗ୍ନର ବିଶେଷ ଫଳ

ନ କୁମ୍ଭଲଗ୍ନଂ ଶୁଭମାହ ସତ୍ୟୋ ନ ଭାଗଭେଦାଦ୍ୟବନା ବଦନ୍ତି
କସ୍ୟାଂଶଭେଦୋ ନ ତଥାସ୍ତି ରାଶେରତିପ୍ରସଙ୍ଗସ୍ତିତି ବିଷ୍ଣୁଗୁପ୍ତଃ ।୩।

ସତ୍ୟାଚାର୍ଯ୍ୟ କହନ୍ତି ଯେ କୁମ୍ଭଲଗ୍ନଜାତ ବ୍ୟକ୍ତିର ଶୁଭ ହୁଏ ନାହିଁ । ଯବନାଚାର୍ଯ୍ୟ କହନ୍ତି କୁମ୍ଭ ଦ୍ୱାଦଶାଂଶ ମାତ୍ର ଦୋଷଯୁକ୍ତ, ବିଷ୍ଣୁଗୁପ୍ତ କହନ୍ତି ଯେ କୁମ୍ଭ ଦ୍ୱାଦଶାଂଶ ସବୁ ଲଗ୍ନରେ ଆସିବ, ତେବେ ସମସ୍ତ ଲଗ୍ନ ଦୋଷଯୁକ୍ତ ହୋଇଯିବ, ତେଣୁ ଯବନାଚାର୍ଯ୍ୟଙ୍କ ମତ ଠିକ୍ ନୁହେଁ; ସତ୍ୟାଚାର୍ଯ୍ୟଙ୍କ ମତହିଁ ଗ୍ରହଣୀୟ ।

ଦ୍ର: —ଗୋଟିଏ ଲଗ୍ନ ବା ଦ୍ୱାଦଶାଂଶ କାହିଁକି ଯେ ଦୋଷଯୁକ୍ତ ହେବ ଏହାର କାରଣ ଗ୍ରନ୍ଥକର୍ତ୍ତା ବରାହମିହିର ବା ଅନ୍ୟକେହି ବୁଝାଇ ନାହାନ୍ତି । ଯଦି କୁମ୍ଭଲଗ୍ନରେ ଲଗ୍ନାଧିପତି ତଥା ବ୍ୟୟାଧିପତି ଏକଗ୍ରହ ହେବା ହେତୁ ଜାତକ ଦୁର୍ବଳ ହେବା ମନେ କରାଯାଏ, ତେବେ ତାହାମଧ୍ୟ ପ୍ରତ୍ୟକ୍ଷରେ ଦେଖାଯାଏନାହିଁ । ଅର୍ଥାତ୍ କୁମ୍ଭ ଲଗ୍ନ ଜାତ ବ୍ୟକ୍ତି ଧନ, ସୁଖ, ସମ୍ମାନ ଭୋଗ

କରିବା ଦେଖାଯାଏ । ଅତଏବ ଉଭୟପକ୍ଷ ରକ୍ଷାକରି କୁହାଯାଇପାରେ ଯେ କୁମ୍ଭଲଗ୍ନର କୁମ୍ଭ ଦ୍ୱାଦଶାଂଶ ଜାତଦୋଷ ଯୁକ୍ତହେବ ।

## ହୋରାସ୍ଥିତ ଗ୍ରହଫଳ

ଯାତେଷ୍ୱସତ୍ସୁ ସମଭେଷୁ ଦିନେଶହୋରାଂ
ଖ୍ୟାତୋ ମହୋଦ୍ୟମବଳାର୍ଥ ଯୁତୋଽତତେଜାଃ ।
ଚନ୍ଦ୍ରୀ ଶୁଭେଷୁ ଯୁଜ ମାର୍ଦବକାନ୍ତିସୌଖ୍ୟ-
ସୌଭାଗ୍ୟଧୀମଧୁରବାକ୍ୟଯୁତଃ ପ୍ରଜାତଃ ।୪।

ପାପଗ୍ରହମାନେ ବିଷମରାଶିରେ ଥାଇ ରବିର ହୋରାରେ ଥିଲେ ଜାତକ ପ୍ରସିଦ୍ଧ, ମହୋଦ୍ୟମଯୁକ୍ତ, ବଳଯୁକ୍ତ, ଓ ଧନଯୁକ୍ତ ହୁଏ, ସେବ୍ୟକ୍ତି ତେଜସ୍ୱୀ ହୁଏ ।

ଶୁଭଗ୍ରହମାନେ ସମରାଶିରେ ଥାଇ ଚନ୍ଦ୍ରର ହୋରାରେ ଥିଲେ ଜାତକ କୋମଳ ସ୍ୱଭାବଯୁକ୍ତ, କାନ୍ତିଯୁକ୍ତ, ସୌଖ୍ୟଯୁକ୍ତ, ସୌଭାଗ୍ୟଯୁକ୍ତ-ଅର୍ଥାତ୍ ସର୍ବଜନପ୍ରିୟ, ବୁଦ୍ଧିମାନ ଓ ମଧୁର ବାକ୍ୟ କହନେବାଳା ହୁଏ ।୪।

ଦ୍ର:—ପାପଗ୍ରହମାନେ ବିଷମରାଶି ଅର୍ଥାତ୍ ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ରାଶିର ପ୍ରଥମ ୧୫ ଅଂଶରେ ଥିଲେ ରବିର ହୋରାରେ ଅଛନ୍ତି ବୋଲି ଧରାଯିବେ ଓ ସେମାନେ ପୂର୍ବକଥିତ ଶୁଭଫଳ ଦେବେ ।

ଶୁଭଗ୍ରହମାନେ ସମରାଶି ଅର୍ଥାତ୍ ବୃଷ, କର୍କଟ, କନ୍ୟା, ବିଛା, ମକର ଓ ମୀନର ପ୍ରଥମ ୧୫ ଅଂଶରେ ଥିଲେ ଚନ୍ଦ୍ର ହୋରାରେ ଅଛନ୍ତି ବୋଲି ଧରାଯିବେ ଓ ସେମାନେ ପୂର୍ବ କଥିତ ଶୁଭ ଫଳ ଦେବେ ।

ତାସ୍ୱେବ ହୋରାସ୍ୱପରର୍କ୍ଷଗେଷୁ ଜ୍ଞେୟା ନରାଃ ପୂର୍ବଗୁଣେଷୁ ମଧ୍ୟାଃ ।
ବ୍ୟତ୍ୟସ୍ତହୋରାଭବନସ୍ଥିତେଷୁ ମର୍ତ୍ତ୍ୟା ଭବନ୍ତ୍ୟୁକ୍ତଗୁଣୈର୍ବିହୀନାଃ ।୫।

ପାପଗ୍ରହମାନେ ସମରାଶିରେ ରବି ହୋରାରେ ଥିଲେ ପୂର୍ବୋକ୍ତ ସମସ୍ତ ଫଳ ମଧ୍ୟମ ହୁଏ, ଅର୍ଥାତ୍ ଜାତକ ମଧ୍ୟମ ଭାବେ ପ୍ରସିଦ୍ଧ, ମଧ୍ୟମ ପ୍ରକାର ଉଦ୍ୟମୀ, ମଧ୍ୟମ ବଳବାନ୍ ଓ ମଧ୍ୟମ ଭାବେ ତେଜସ୍ୱୀ ହୁଏ ।

ଶୁଭଗ୍ରହମାନେ ବିଷମ ରାଶିରେ ଚନ୍ଦ୍ର ହୋରାରେ ଥିଲେ ପୂର୍ବକଥିତ ଫଳ ମଧ୍ୟମ ହୁଏ । ଅର୍ଥାତ୍ ଜାତକ ମଧ୍ୟମଭାବେ କୋମଳ ସ୍ୱଭାବଯୁକ୍ତ, ମଧ୍ୟମ କାନ୍ତି, ମଧ୍ୟମସୁଖ ଓ ମଧ୍ୟମଭାବେ ଜନପ୍ରିୟତ୍ୱ, ମଧ୍ୟମ ବୁଦ୍ଧି ଓ ମଧ୍ୟମ ଭାବେ ମଧୁରବଚନ ଯୁକ୍ତ ହୁଏ ।

ଏହାର ବିପରୀତ ହେଲେ ଫଳ ମଧ୍ୟ ବିପରୀତ ହୁଏ, ଯଥା ଶୁଭ ଗ୍ରହମାନେ ବିଷମରାଶିରେ ଥାଇ ରବିର ନବାଂଶରେ ଥିଲେ ପୂର୍ବୋକ୍ତ ଗୁଣର ବିପରୀତ ଫଳ ହୁଏ । ଅର୍ଥାତ୍ ଜାତକ ଅସ୍ଥିର, ଉଦ୍ୟମହୀନ, ବଳହୀନ, ଧନହୀନ ଓ ତେଜହୀନ ହୁଏ । ପାପଗ୍ରହମାନେ ସମରାଶିରେ ଥାଇ ଚନ୍ଦ୍ରର ହୋରାରେ ଥିଲେ ଜାତକ କର୍କଶ ସ୍ୱଭାବଯୁକ୍ତ, କାନ୍ତିହୀନ, ସୌଖ୍ୟହୀନ, ସୌଭାଗ୍ୟହୀନ, ବୁଦ୍ଧିହୀନ ଓ କର୍କଶବାକ୍ୟ କହେ ।

ସାତଟିଯାକ ଗ୍ରହ ମଧ୍ୟରୁ ଏହି ନିୟମରେ ଦେଖି ଶୁଭ ଫଳରେ ଜାତକର ଶୁଭାଧିକ୍ୟ ଓ ପାପଫଳରେ ଅଶୁଭର ଆଧିକ୍ୟ କହିବେ, ମଧ୍ୟମ ଫଳ ଦେଖିଲେ ମଧ୍ୟମ ସ୍ଥିରକରିବେ ।

## ଦ୍ରେକ୍କାଣ ସ୍ଥିତ ଚନ୍ଦ୍ରର ଫଳ

କଲ୍ୟାଣରୂପଗୁଣମାତ୍ମସୁହୃଦ୍ଦୃକାଣେ ଚନ୍ଦ୍ରୋନ୍ୟଗସ୍ତଦଧିନାଥଗୁଣଂକରୋତି
ବ୍ୟାଳୋଦ୍ୟତାୟୁଧଚତୁଷ୍ପଦପକ୍ଷାଣ୍ଡଜେଷୁ ତୀକ୍ଷ୍ଣୋଽତିହିଂସ୍ରଗୁରୁତଳ୍ପ-
ରତୋଽଟନଶ୍ଚ ।୭।

ଚନ୍ଦ୍ର ନିଜର ଦ୍ରେକ୍କାଣ ବା ମିତ୍ରଗ୍ରହର ଦ୍ରେକ୍କାଣରେ ଥିଲେ ଜାତକର ରୂପ ତଥା ଗୁଣ ସୁନ୍ଦର ହୁଏ । ଅନ୍ୟ ଗ୍ରହର ଦ୍ରେକ୍କାଣରେ ଥିଲେ ସେମାନେ ଯଦି ତାହାଙ୍କ ମିତ୍ରଭାବେ ଥିବେ ତେବେ ମଧ୍ୟମରୂପ ଓ ଗୁଣ ଏବଂ ସେମାନେ ତାହାଙ୍କ ଶତ୍ରୁଭାବେ ଥିଲେ ରୂପ ତଥା ଗୁଣର ନ୍ୟୂନତା ଘଟିଥାଏ ।

ଚନ୍ଦ୍ର ସର୍ପଦ୍ରେକ୍କାଣ (କର୍କଟର ଦ୍ୱିତୀୟ ଓ ତୃତୀୟ, ବୃଶ୍ଚିକର ପ୍ରଥମ ଓ ଦ୍ୱିତୀୟ ଓ ମୀନର ତୃତୀୟ ଦ୍ରେକ୍କାଣ)ରେ ଥିଲେ ଜାତକ ଉଗ୍ରସ୍ୱଭାବଯୁକ୍ତ ହୁଏ । ଉଦ୍ୟତାୟୁଧ ଦ୍ରେକ୍କାଣ (ମେଷର ପ୍ରଥମ ଓ ତୃତୀୟ, ମିଥୁନର ଦ୍ୱିତୀୟ ଓ ତୃତୀୟ, ସିଂହର ଦ୍ୱିତୀୟ ଓ ତୃତୀୟ, କନ୍ୟାର ଦ୍ୱିତୀୟ, ତୁଳାର ତୃତୀୟ, ଧନୁର ପ୍ରଥମ ଓ ତୃତୀୟ, ମକରର ତୃତୀୟ ରେ ଚନ୍ଦ୍ର ଥିଲେ ପ୍ରାଣୀମାନଙ୍କୁ ବିନାଶକରେ । ଚତୁଷ୍ପଦ ରାଶିର ଦ୍ରେକ୍କାଣ (ମେଷର ଦ୍ୱିତୀୟ, ବୃଷର ଦ୍ୱିତୀୟ ଓ ତୃତୀୟ, କର୍କଟର ପ୍ରଥମ, ସିଂହର ପ୍ରଥମ, ଦ୍ୱିତୀୟ ଓ ତୃତୀୟ, ତୁଳାର ତୃତୀୟ ବୃଶ୍ଚିକର ତୃତୀୟ, ଧନୁର ପ୍ରଥମ, ମକରର ପ୍ରଥମ)ରେ ଚନ୍ଦ୍ର ଥିଲେ ଜାତକ ଗୁରୁତଳ୍ପ ଗମନକରେ । ପକ୍ଷୀ ଦ୍ରେକ୍କାଣରେ ମିଥୁନର ଦ୍ୱିତୀୟ, ସିଂହର ପ୍ରଥମ ତୁଳାର ଦ୍ୱିତୀୟ, କୁମ୍ଭର ପ୍ରଥମରେ ଚନ୍ଦ୍ର ଥିଲେ ଜାତକ ଭ୍ରମଣଶୀଳ ହୁଏ । ନିଜର ତଥା ମିତ୍ରର ଦ୍ରେକ୍କାଣରେ ଥାଇ ସର୍ପ, ଉଦ୍ୟତାୟୁଧ ଚତୁଷ୍ପଦ ବା ପକ୍ଷୀ ଦ୍ରେକ୍କାଣରେ ଥିଲେ ଉଭୟ ପ୍ରକାର ଫଳ କହିବେ ।୭।

## ନବାଂଶ ଜାତଫଳ

ସ୍ତେନୋ ଭୋକ୍ତା ପଣ୍ଡିତାଢ଼୍ୟୋ ନରେନ୍ଦ୍ରଃ
କ୍ଳୀବଃ ଶୂରୋ ବିଷ୍ଟିକୃଦ୍ଦାସବୃତ୍ତଃ ।
ପାପୋ ହିଂସ୍ରୋଽଭୀଷ୍ଟ ବର୍ଗୋତ୍ତମାଂଶେ—
ଷ୍ଵେଷ୍ଵାମିଶା ରାଶିବଦ୍ଦ୍ୱାଦଶାଂଶୈଃ ।୭।

ମେଷ ଲଗ୍ନର ମେଷନବାଂଶ ଛଡ଼ା ଅନ୍ୟ କୌଣସି ଲଗ୍ନରେ ମେଷ ନବାଂଶରେ ଜନ୍ମହେଲେ ଜାତକ ଚୌର ହୁଏ । ବୃଷ ଲଗ୍ନର ବୃଷନବାଂଶ ଛଡ଼ା ଅନ୍ୟ ଲଗ୍ନର ବୃଷ ନବାଂଶରେ ଜନ୍ମହେଲେ ଜାତକ ଭୋଗୀ ହୁଏ । ମିଥୁନ ଲଗ୍ନର ମିଥୁନ ନବାଂଶ ଛଡ଼ା ଅନ୍ୟ ଲଗ୍ନର ମିଥୁନ ନବାଂଶରେ ଜନ୍ମ ହେଲେ ଜାତକ ପଣ୍ଡିତ ହୁଏ । କର୍କଟ ଲଗ୍ନର କର୍କଟ ନବାଂଶ ଛଡ଼ା ଅନ୍ୟ ଲଗ୍ନର କର୍କଟ ନବାଂଶରେ ଜନ୍ମ ହେଲେ ଜାତକ ଧନବାନ୍ ହୁଏ । ସିଂହଲଗ୍ନର ସିଂହନବାଂଶ ଛଡ଼ା ଅନ୍ୟଲଗ୍ନର ସିଂହ ନବାଂଶରେ ଜନ୍ମ ହେଲେ ଜାତକ ରାଜାହୁଏ । କନ୍ୟା ଲଗ୍ନର କନ୍ୟା ନବାଂଶ ଛଡ଼ା ଅନ୍ୟ ଲଗ୍ନର କନ୍ୟା ନବାଂଶରେ ଜନ୍ମହେଲେ ଜାତକ ନପୁଂସକ ହୁଏ । ତୁଳାଲଗ୍ନର ତୁଳାନବାଂଶ ଛଡ଼ା ଅନ୍ୟଲଗ୍ନର ତୁଳା ନବାଂଶରେ ଜନ୍ମହେଲେ ଜାତକ ଶୂରହୁଏ । ବୃଷ୍ଟି ଲଗର ବୃଷ୍ଟିକ ନବାଂଶ ଛଡ଼ା ଅନ୍ୟଲଗର ବୃଷ୍ଟିକ ନବାଂଶରେ ଜନ୍ମହେଲେ ଜାତକ ଭାର ବାହକ ହୁଏ । ଧନୁ ଲଗ୍ନରେ ଧନୁନବାଂଶ ଛଡ଼ା ଅନ୍ୟ ଲଗ୍ନର ଧନୁ ନବାଂଶରେ ଜନ୍ମହେଲେ ଜାତକ ଦାସବୃତ୍ତି କରେ । ମକର ଲଗ୍ନରେ ମକର ନବାଂଶ ଛଡ଼ା ଅନ୍ୟ ଲଗ୍ନରେ ମକର ନବାଂଶରେ ଜନ୍ମ ହେଲେ ପାପକର୍ମୀ ହୁଏ । କୁମ୍ଭ ଲଗ୍ନରେ କୁମ୍ଭ ନବାଂଶ ଛଡ଼ା ଅନ୍ୟ ଲଗ୍ନରେ କୁମ୍ଭ ନବାଂଶରେ ଜନ୍ମ ହେଲେ ଜାତକ ଦୁଷ୍ଟହୁଏ । ମୀନଲଗ୍ନରେ ମୀନ ନବାଂଶରେ ଜନ୍ମ ହେଲେ ଜାତକ ନିର୍ଭୟ ହୁଏ । ଯେଉଁଲଗ୍ନ ସେହି ନବାଂଶରେ ଜନ୍ମ ହେଲେ ବର୍ଗୋତ୍ତମ ହେତୁ କଥିତ ଗୁଣର ବିଶେଷ ଫଳ ତାହାରେ ଦେଖା ଯାଏ । ଯେପରିକି ମେଷ ଲଗ୍ନର ମେଷନବାଂରେ ଜନ୍ମ ହେଲେ ଜାତକ ଚୋର ମାନଙ୍କର ଅଧିପତି ହୁଏ । ଏହିପରି ଅନ୍ୟାନ୍ୟ ନବାଂଶର ଦେଖିବେ ।୭।

## ମଙ୍ଗଳ ଓ ଶନିର ତ୍ରିଂଶାଂଶ ସ୍ଥିତଫଳ

ଜାୟାନ୍ ଭୌ ବଳାବିଭୂଷଣସତ୍ତ୍ୱଯୁକ୍ତ—
ସ୍ତେଜୋଭସାଧ୍ୱିସଯୁତଶ୍ଚ କୁଜେ ସ୍ୱଭାଗେ ।

ରୋଗୀ ମୃତସ୍ୱସୁବହୁତିଷମୋନ୍ୟଦାରୋ

ଦୁଃଖୀ ପରଚ୍ଛିଦ୍ରଯୁତୋ ମଲନୋଽର୍କପୁତ୍ରେ ।୮।

ମଙ୍ଗଳ ନିଜର ତ୍ରିଂଶାଂଶରେ ଥିଲେ ଜାତକ ଉତ୍ତମ ଭାର୍ଯ୍ୟା ଯୁକ୍ତ, ବଳିଷ୍ଠ, ଭୂଷଣଯୁକ୍ତ ଉଦାରଗୁଣ ସଂପନ୍ନ ଓ ଅତିସାହସୀ ହୁଏ ।

ଶନି ନିଜର ତ୍ରିଂଶାଂଶରେ ଥିଲେ ଜାତକ ରୋଗୀ ହୁଏ, ଭାର୍ଯ୍ୟା ମରିଯାଏ, କ୍ରୂର ସ୍ୱଭାବ ଯୁକ୍ତ ହୁଏ, ସେ ପରସ୍ତ୍ରୀଗାମୀ, ଦୁଃଖଯୁକ୍ତ, ଗୃହ, ବସନ ଓ ଦାସଦାସୀ ଯୁକ୍ତ ଏବଂ ମଳିନତା ଯୁକ୍ତ ହୁଏ ।୮।

## ବୃହସ୍ପତି ଓ ବୁଧର ସ୍ୱତ୍ରିଂଶାଂଶ ସ୍ଥିତଫଳ

ସ୍ୱାଂଶେ ଗୁରୌ ଧନଯଶଃ ସୁଖବୁଦ୍ଧିଯୁକ୍ତା—

ସ୍ତେଜସ୍ୱି ପୂଜ୍ୟା ନିରୁଗୁଦ୍ୟମଭୋଗବନ୍ତଃ

ମେଧାକଳାକପଟକାବ୍ୟବିବାଦଶିଳ୍ପ—

ଶାସ୍ତ୍ରାର୍ଥସାହସଯୁତାଃ ଶଶିଜେଽତିମାନ୍ୟାଃ ।୯।

ବୃହସ୍ପତି ନିଜର ତ୍ରିଂଶାଂଶରେ ଥିଲେ ଜାତକ ଧନ, ଯଶ, ସୁଖ ଏବଂ ବୁଦ୍ଧି ଦ୍ୱାରା ଯୁକ୍ତ ହୁଏ । ସେ ତେଜସ୍ୱୀ, ପୂଜନୀୟ, ନୀରୋଗ, ଉଦ୍ୟମୀ ଓ ଭୋଗୀ ହୁଏ ।

ବୁଧ ନିଜର ତ୍ରିଂଶାଂଶରେ ଥିଲେ ଜାତକ ବୁଦ୍ଧିମାନ୍, ଗୀତ ଓ ନୃତ୍ୟଜ୍ଞ, କପଟଯୁକ୍ତ, କାବ୍ୟକର୍ତ୍ତା, ବିବାଦୀ, ଶିଳ୍ପଶାସ୍ତ୍ରଜ୍ଞ, ଧନବାନ୍, ସାହସୀ ଓ ଅତିଶୟ ମାନନୀୟ ହୁଏ ।୯।

## ଶୁକ୍ରର ସ୍ୱତ୍ରିଂଶାଂଶ ସ୍ଥିତ ଫଳ ଓ ରବି ଚନ୍ଦ୍ରଙ୍କ ତ୍ରିଂଶାଂଶସ୍ଥିତ ଫଳ

ସ୍ୱୋତ୍ରିଂଶାଂଶେ ବହୁସୁତସ୍ୱଖାରୋଗ୍ୟଭାଗ୍ୟାର୍ଥରୂପଃ

ଶୁକ୍ରେ ତୀକ୍ଷ୍ଣଃ ସୁଲଳିତବପୁଃ ସୁପ୍ରକୀର୍ଣ୍ଣେନ୍ଦ୍ରିୟଶ୍ଚ ।

ଶୂରସ୍ତବ୍ଧୌ ବିଷମବଧକୌ ସଦ୍ଗୁଣାଢ୍ୟୌ ସୁଖିଜ୍ଞୌ

ଗୃହଂଗେନ୍ଦ୍ରୌ ରବିଶଶିଯୁତେଷ୍ୱାରପୂର୍ବାଂଶକେଷୁ ।୧୦।

ଇତି ଶ୍ରୀବରାହମିହିର କୃତେ ବୃହଜ୍ଜାତକେ ଅଶ୍ରୟାଧ୍ୟାୟ ଏକବିଂଶଃ

ଶୁକ୍ର ନିଜର ତ୍ରିଂଶାଂଶରେ ଥିଲେ ଜାତକ ବହୁପୁତ୍ରଯୁକ୍ତ, ସୁଖଯୁକ୍ତ ନୀରୋଗ, ଜନପ୍ରିୟ, ଧନଯୁକ୍ତ, ସୁନ୍ଦର, ତୀକ୍ଷ୍ଣସ୍ୱଭାବ, ବଳିଷ୍ଠଦେହ, ବକ୍ଷିପ୍ତମନା ଓ ବହୁସ୍ତ୍ରୀଗାମୀ ହୁଏ ।

ରବି ମଙ୍ଗଳ ତ୍ରିଂଶାଂଶରେ ଥିଲେ ଜାତକ ଶୂର, ଶନି ତ୍ରିଂଶାଂଶରେ ଥିଲେ ବିଷମ ସ୍ୱଭାବଯୁକ୍ତ; ଗୁରୁ ତ୍ରିଂଶାଂଶରେ ଥିଲେ ଉତ୍ତମ ଗୁଣଯୁକ୍ତ; ବୁଧ ତ୍ରିଂଶାଂଶରେ ଥିଲେ ମୂର୍ଖ, ଶୁକ୍ର ତ୍ରିଂଶାଂଶରେ ଥିଲେ ସୁନ୍ଦର ଶରୀର ଯୁକ୍ତ ହୁଏ ।

ଚନ୍ଦ୍ର ମଙ୍ଗଳ ତ୍ରିଂଶାଂଶରେ ଥିଲେ ଜାତକ ଉଦ୍ୟମହୀନ (ଅଚଞ୍ଚଳ) ହୁଏ; ଶନି ତ୍ରିଂଶାଂଶରେ ଥିଲେ ପ୍ରାଣୀମାନଙ୍କୁ ହତ୍ୟାକରେ; ଗୁରୁ ତ୍ରିଂଶାଂଶରେ ଥିଲେ ଧନଯୁକ୍ତ; ବୁଧ ତ୍ରିଂଶାଂଶରେ ଥିଲେ ପଣ୍ଡିତ ଓ ଶୁକ୍ର ତ୍ରିଂଶାଂଶରେ ଥିଲେ ସର୍ବଜନ ପ୍ରିୟ ହୁଏ ।୧୦।

ଶ୍ରୀ ବରାହମିହିରକୃତ ବୃହଜ୍ଜାତକ ଗ୍ରନ୍ଥର ଅଶ୍ରୟ ଯୋଗ ନାମକ ଏକବିଂଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

—)ଫଃ❋ଃଫ(—

# ପ୍ରକୀର୍ଣ୍ଣକାଧ୍ୟାୟୋ ଦ୍ୱାବିଂଶଃ

## ଗ୍ରହମାନଙ୍କର ପରସ୍ପର କାରକତା

ସ୍ୱର୍କ୍ଷତୁଙ୍ଗମୂଲତ୍ରିକୋଣଗାଃ କଣ୍ଟକେଷୁ ଯାବନ୍ତ ଆଶ୍ରିତାଃ ।
ସର୍ବ ଏବ ତେଽନ୍ୟୋନ୍ୟକାରକାଃ କର୍ମଗସ୍ତୁତେଷାଂ ବିଶେଷତଃ ।୧।

ଗ୍ରହମାନେ ନିଜର ଗୃହରେ, ଉଚ୍ଚରେ ବା ମୂଳତ୍ରିକୋଣରେ ଥାଇ କେନ୍ଦ୍ର ସ୍ଥାନରେ ଥିଲେ ପରସ୍ପର 'କାରକ' ସଂଜ୍ଞା ପ୍ରାପ୍ତ ହୁଅନ୍ତି । ଏଭଳି ଥିବା ଗ୍ରହମାନଙ୍କ ମଧ୍ୟରେ ଯେ ଦଶମରେ ଥାଏ ସେ ବିଶେଷ ବଳଯୁକ୍ତ ହୁଏ ।୧।

## କାରକ ସଂଜ୍ଞକ ଗ୍ରହସ୍ଥିତିର ଉଦାହରଣ

କର୍କଟୋଦୟଗତେ ଯଥୋଡୁପେ ସ୍ୱୋଚ୍ଚଗାଃ କୁଜଯମାର୍କସୂରୟଃ ।
କାରକା ନିଗଦିତାଃ ପରସ୍ପରଂ ଲଗ୍ନଗସ୍ୟ ସକଳୋମ୍ବରାମ୍ବୁଗଃ ।୨।

ମନେକର କର୍କଟ ଜନ୍ମଲଗ୍ନ, ଚନ୍ଦ୍ର କର୍କଟସ୍ଥ, ମଙ୍ଗଳ, ଶନି, ରବି ଓ ବୃହସ୍ପତି ଉଚ୍ଚ କ୍ଷେତ୍ରଗତ ଅର୍ଥାତ୍ ମକରରେ ମଙ୍ଗଳ, ତୁଳାରେ ଶନି, ମେଷରେ ରବି ଓ କର୍କଟରେ ବୃହସ୍ପତି ଅଛନ୍ତି । ଏମାନେ ପରସ୍ପର କାରକ ହେଲେ ଲଗ୍ନରେ ଥିବା ଗ୍ରହ ଦଶମରେ ଓ ଚତୁର୍ଥରେ ଥିବା ଗ୍ରହ ସହିତ ପରସ୍ପର କାରକ ସମ୍ବନ୍ଧ ଯୁକ୍ତ ହୁଏ ।

(ଉକ୍ତାନୁରୂପ ଗ୍ରହାବସ୍ଥିତି ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କର ହୋଇଥିଲା)

## ଅନ୍ୟପ୍ରକାର କାରକତ୍ୱ ନିରୂପଣ

ସ୍ୱତ୍ରିକୋଣୋଚ୍ଚଗୋ ହେତୁରନ୍ୟୋନ୍ୟଂ ଯଦି କର୍ମଗଃ
ସୁହୃତ୍ତଦ୍ଗୁଣସମ୍ପନ୍ନଃ କାରକଶ୍ଚାପି ସ ସ୍ମୃତଃ ।୩।

ଗ୍ରହ ଉଚ୍ଚସ୍ଥ, ମୂଳତ୍ରିକୋଣ ତଥା ସ୍ୱଗୃହରେ ରହି ଏକଠାରୁ ଅପର ଦଶମସ୍ଥ ହେଲେ ଓ ସେହି ଦଶମସ୍ଥ ଗ୍ରହ ତାହାର ଅଧିମିତ୍ର ହୋଇଥିଲେ ସେମାନେ ପରସ୍ପର କାରକ ହୁଅନ୍ତି ।

## ଜାତକର ଶୁଭତ୍ୱ ନିରୂପଣ

ଶୁଭଂ ବର୍ଗୋତ୍ତମେ ଜନ୍ମ ବେଶିସ୍ଥାନେ ଚ ସଦ୍ଗ୍ରହେ
ଅଶୂନ୍ୟେଷୁ ଚ କେନ୍ଦ୍ରେଷୁ କାରକାଖ୍ୟଗ୍ରହେଷୁ ଚ ।୪।

ଯେଉଁବ୍ୟକ୍ତି ବର୍ଗୋତ୍ତମରେ ଜନ୍ମଗ୍ରହଣ କରିଥାଏ (ଚରରାଶିର ପ୍ରଥମ ନବାଂଶ, ସ୍ଥିରରାଶିର ପଞ୍ଚମ ନବାଂଶ, ଦ୍ୱାତ୍ମିକ ରାଶିର ନବମ ନବାଂଶକୁ ବର୍ଗୋତ୍ତମ କହନ୍ତି) ଯାହାର ଜାତକରେ ରବିଥିବା ସ୍ଥାନର ଦ୍ୱିତୀୟରେ ଶୁଭଗ୍ରହ ଥାଅନ୍ତି, କେନ୍ଦ୍ରସ୍ଥାନମାନ ଯଦି ଗ୍ରହଶୂନ୍ୟ ହୋଇ ନଥାଏ ଓ ପରସ୍ପର କାରକ ଗ୍ରହ ଯଦି ଜାତକରେ ଥାଅନ୍ତି ତେବେ ସେହିବ୍ୟକ୍ତି ସୁଖୀହୁଏ ।

## ଅବସ୍ଥାକ୍ରମରେ ସୁଖଲାଭ ଯୋଗ

ମଧ୍ୟେ ବୟସଃ ସୁଖପ୍ରଦାଃ କେନ୍ଦ୍ରସ୍ଥା ଗୁରୁଜନ୍ମଲଗ୍ନପାଃ
ପୃଷ୍ଠୋଭୟକୋଦୟର୍କ୍ଷଗାସ୍ତ୍ୱନ୍ତେଽତଃ ପ୍ରଥମେଷୁ ପାକଦାଃ ।୫।

କେନ୍ଦ୍ରରେ ଗୁରୁ, ଜନ୍ମରାଶିର ଅଧିପତି ଓ ଜନ୍ମଲଗ୍ନର ଅଧିପତି ଥିଲେ ଜାତକ ମଧ୍ୟମ ବୟସରେ (ଯୁବା ଅବସ୍ଥାରେ) ସୁଖଭୋଗ କରେ । ଦଶା ଆରମ୍ଭ ବେଳେ ଦଶାଗ୍ରହ ପୃଷ୍ଠୋଦୟ ରାଶି ଅର୍ଥାତ୍ ମେଷ, ବୃଷ, ଧନୁ ବା ମକର ରାଶିରେ ଥିଲେ (ଗୋଚରରେ) ସେ ଶେଷ ଭାଗରେ ତାହାର ଶୁଭ ବା ଅଶୁଭ ଫଳ ଦେଇଥାଏ । ଯଦି ସେ ଉଭୟୋଦୟ ରାଶି ଅର୍ଥାତ୍ ମୀନରେ ଥାଏ ତେବେ ମଧ୍ୟଭାଗରେ ଫଳପ୍ରଦ ହୁଏ । ଯଦି ଶୀର୍ଷୋଦୟ ରାଶି (ମିଥୁନ, ସିଂହ, କନ୍ୟା, ତୁଳା, ବୃଶ୍ଚିକ, କୁମ୍ଭ)ରେ ଥାଏ ତେବେ ପ୍ରଥମ ଭାଗରେ ଫଳଦିଏ ।

## ଅଷ୍ଟବର୍ଗଫଳ ଭୋଗକାଳ

ଦିନକରରୁଧିରୌ ପ୍ରବେଶକାଲେ ଗୁରୁଭୃଗୁଜୌ ଭବନସ୍ୟ ମଧ୍ୟଯାତୌ
ରବିସୁତଶଶିନୌ ବିନିର୍ଗମସ୍ଥୌ ଶଶିତନୟଃ ଫଲଦସ୍ତୁ ସର୍ବକାଲମ୍ ।୬।

ଇତି ଶ୍ରୀବରାହମିହିରକୃତେ ବୃହଜ୍ଜାତକେ ପ୍ରକୀର୍ଣ୍ଣକାଧ୍ୟାୟୋ ଦ୍ୱାବିଂଶଃ ।

ଗୋଚର (ଗ୍ରହଗତ) କ୍ରମରେ ରବି ଓ ମଙ୍ଗଳ ରାଶିର ଆରମ୍ଭରେ (ପ୍ରଥମ ଦଶାଂଶ) ଗତ କଲାବେଳେ ଅଷ୍ଟକବର୍ଗ ଜନିତ ଶୁଭ ବା ଅଶୁଭଫଳ ଯାହା ତାଙ୍କର ଦେୟ ତାହା ଦଅନ୍ତି । ଅର୍ଥାତ୍ ଅଷ୍ଟକବର୍ଗରେ ଶୁଭ ହୋଇଥିବା ରବିରାଶିର ପ୍ରଥମ ଦଶାଂଶ ମଧ୍ୟରେ ତାଙ୍କର, ଶୁଭଫଳ ଦଅନ୍ତି । ଅଶୁଭ ହୋଇଥିଲେ ସେପରି ପ୍ରଥମ ଦଶାଂଶ ମଧ୍ୟରେ ଗତକଲାବେଳେ ଅନିଷ୍ଟ ଫଳଦଅନ୍ତି । ବୃହସ୍ପତି ଓ ଶୁକ୍ର ରାଶିର ମଧ୍ୟରେ (ଦ୍ୱିତୀୟ ଦଶାଂଶ) ଗତକଲାବେଳେ ଶୁଭ ବା ଅଶୁଭ ଯାହା ହୋଇଥାନ୍ତି, ତଦନୁରୂପ ଫଳ ଦଅନ୍ତି । ଶନି ଓ ଚନ୍ଦ୍ର ରାଶିର ଶେଷ-ଦଶାଂଶ ମଧ୍ୟରେ ଗତିକଲାବେଳେ ଶୁଭାଶୁଭ ଫଳ ପ୍ରକାଶ କରନ୍ତି । ବୁଧ ଶୁଭ ବା ଅଶୁଭ ଫଳ ଯାହା ଦଅନ୍ତି ତମାମ ରାଶିଭୋଗ କାଳ, ଯାକ ଦେଉଥାନ୍ତି ।

ଶ୍ରୀବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ପ୍ରକୀର୍ଣ୍ଣକାଧ୍ୟାୟ ନାମକ ଦ୍ୱାବିଂଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

# ଅନିଷ୍ଟାଽଧ୍ୟାୟସ୍ତ୍ରୟୋବିଂଶଃ

## ପୁତ୍ର ଓ ସ୍ତ୍ରୀ ସଂପର୍କରେ ଶୁଭତଥା ଅଶୁଭ ଯୋଗ

ଲଗ୍ନାତ୍ପୁତ୍ରକଳତ୍ରଭେ ଶୁଭପତିପ୍ରାପ୍ତେଽଥବାଲୋକିତେ
ଚନ୍ଦ୍ରାଦ୍ୱା ଯଦି ସମ୍ପଦସ୍ତି ହି ତୟୋର୍ଜ୍ଞେୟୋନ୍ୟଥାସମ୍ଭବଃ
ପାଥୋନୋଦୟଗେ ରବୌ ରବିସୁତେ ମୀନସ୍ଥିତେ ଦାରହା
ପୁତ୍ରସ୍ଥାନଗତଶ୍ଚ ପୁତ୍ରମରଣଂ ପୁତ୍ରୋଽବନେର୍ୟଚ୍ଛତି ।୧।

ଜନ୍ମକାଳରେ ଲଗ୍ନର ବା ଚନ୍ଦ୍ରର ପଞ୍ଚମସ୍ଥାନ ଯଦି ଶୁଭ ଯୁକ୍ତ ଶୁଭଦୃଷ୍ଟ କିମ୍ବା ପଞ୍ଚମାଧିପତି ଯୁକ୍ତ ତଥା ଦୃଷ୍ଟ ହୁଏ ତେବେ ପୁତ୍ରପ୍ରାପ୍ତି ହେବ । ଏଠାରେ ଲଗ୍ନଠାରୁ ଲଗ୍ନର ପଞ୍ଚମାଧିପତି ଓ ଚନ୍ଦ୍ରଠାରୁ ଚନ୍ଦ୍ରର ପଞ୍ଚମାଧିପତି ବୋଲି ବୁଝିବେ । ଲଗ୍ନର ବା ଚନ୍ଦ୍ରର ସପ୍ତମ ସ୍ଥାନ ଯଦି ଶୁଭ ଯୁକ୍ତ, ଶୁଭଦୃଷ୍ଟ କିମ୍ବା ସେହି ସେହି ଅଧିପତି (ଲଗ ବା ଚନ୍ଦ୍ରର ସପ୍ତମାଧିପତି) ମାନଙ୍କ ଦ୍ୱାରା ଯୁକ୍ତ ବା ଦୃଷ୍ଟହୁଅନ୍ତି ତେବେ ଉପଯୁକ୍ତ ସ୍ତ୍ରୀ ପ୍ରାପ୍ତିହେବ । ଏହାର ଅନ୍ୟଥା ହେଲେ ସନ୍ତାନ ଭାବ ତଥା ସ୍ତ୍ରୀ ଭାବର ହାନି କହିବେ ।

ରବି କନ୍ୟାଲଗ୍ନରେ ଥିବେ, ଶନି ମୀନରେ (ସପ୍ତମରେ) ଥିବେ, ତେବେ ସ୍ତ୍ରୀନାଶ ହେବ, ଏହି ଭଳି କନ୍ୟାଲଗ୍ନରେ ରବି ରହି ପଞ୍ଚମରେ ମଙ୍ଗଳ ରହିଲେ ସନ୍ତାନ ନାଶ ହୁଅନ୍ତି ।୧।

ଦ୍ର:—ଟୀକାକାର ଉତ୍ପଳ ଦ୍ୱାଦଶପ୍ରକାର ପୁତ୍ରର କଥା ଉଲ୍ଲେଖ କରିଛନ୍ତି । (୧) ଔରସ (ନିଜର ବିବାହିତ ସ୍ତ୍ରୀଠାରୁ ଜାତ ପୁତ୍ର) (୨) କ୍ଷେତ୍ରଜ (ଅପରର ସ୍ତ୍ରୀଠାରୁ ନିଜଦ୍ୱାରା ଜାତ) (୩) ଦତ୍ତ (ଅପରର ପୁତ୍ରକୁ ଦତ୍ତପୁତ୍ରେ ଗ୍ରହଣ କରିବା) (୪) କୃତ୍ରିମ (ଅପରର ସନ୍ତାନକୁ ନିଜ ସନ୍ତାନପରି ପାଳନ କରିବା) (୫) ଅଧମ ପ୍ରଭବ (ପତିର ଅଜ୍ଞାତରେ ହୀନ ଜାତୀୟ ବ୍ୟକ୍ତି ଦ୍ୱାରା ଜାତହେବା) (୬) ଗୂଢୋତ୍ପନ୍ନ (ସମାନ ଜାତୀୟ ବ୍ୟକ୍ତିଦ୍ୱାରା ନିଜ ସ୍ତ୍ରୀ ଠାରୁ ଜାତ) (୭) ଅପବିଦ୍ଧ (ଜନ୍ମ ହେବା ପରେ ଯେଉଁ ପିଲା ପରିତ୍ୟକ୍ତ ହୋଇଅଛି) (୮) ପୌନର୍ଭବ (ପ୍ରଥମ ପତିକୁ ତ୍ୟାଗ କରି ଦ୍ୱିତୀୟ ପତିଠାରୁ ଜାତ ସନ୍ତାନ) (୯) କାନୀନ (ଅବିବାହିତା ଅବସ୍ଥାରେ ଜାତହେବା ସନ୍ତାନ) (୧୦) ସହୋଢ଼ (ପ୍ରଥମାସ୍ତ୍ରୀଠାରୁ ସନ୍ତାନ ଜନ୍ମନହେଲେ, ଅପର ସ୍ତ୍ରୀ ବିବାହ କଲେ ଯେ ସନ୍ତାନ ଜାତହୁଏ (୧୧) କ୍ରୀତକ (ଯାହାକୁ କିଣାଯାଇ ପୁତ୍ରରୂପେ ରଖାଯାଏ (୧୨) ଦାସୀପ୍ରଭବ (ରକ୍ଷିତା ସ୍ତ୍ରୀଠାରୁ ଜାତ)

ଏ ସମ୍ବନ୍ଧେ ସାରାବଳୀ ଗ୍ରନ୍ଥର ପ୍ରମାଣ ଗୁଡିକ ଦିଆଯିବ ।

ଶୁଭଭବନମଥ ଶୁଭଯୁକ୍ତଂ ଶୁଭଦୃଷ୍ଟଂ ବା ସୁତର୍କ୍ଷମିହ ଯେଷାମ୍
ତେଷାଂପ୍ରଭବଃ ପୁଂସୋ ଭବତ୍ୟବଶ୍ୟ ନ ବିପରୀତମ୍ ।୧।

ପଞ୍ଚମ ଭାବ ଶୁଭଗ୍ରହର ଗୃହ ହୋଇଥିଲେ, ସେଠାରେ ଶୁଭ ଗ୍ରହଥିଲେ ବା ଶୁଭଗ୍ରହ ଦେଖୁଥିଲେ ଜାତକ ଔରସ ପୁତ୍ର ଲାଭକରେ ।୧।

ଏକତମେ ଗୁରୁବର୍ଗେ ଶୁଭଦ୍ୱଶାଦୌରସୋ ଭବେତ୍ପୁତ୍ରଃ
ଲଗ୍ନାଇନ୍ଦ୍ରାଦଥବା ବଳଯୁକ୍ତାଦ୍ୱୀକ୍ଷିତୋପି ବା ସୌମ୍ୟୈଃ ।୨।

• ପଞ୍ଚମଭାବ ଯଦି ଗୁରୁର କ୍ଷେତ୍ର, ଦ୍ରେକ୍କାଣ, ନବାଂଶ, ଦ୍ୱାଦଶାଂଶ ବା ତ୍ରିଂଶାଂଶରେ ପଡ଼େ (ସ୍ପୁଟାନୁରୂପେ) ତେବେ ଔରସ ପୁତ୍ର ଜାତ ହୁଏ ।

ଲଗ୍ନ ବା ଚନ୍ଦ୍ରର ପଞ୍ଚମଭାବ ମଧ୍ୟରୁ ଯେ ଭାବ ବଳବାନ୍ ସେ ଯଦି ଶୁଭଗ୍ରହ ଦୃଷ୍ଟ ବା ଶୁଭଗ୍ରହ ଯୁକ୍ତ ହୋଇଥାଏ ତେବେ "ଔରସ" ପୁତ୍ର ଅବଶ୍ୟ ହେବେ ।୨।

ସଂଖ୍ୟା ନବ, ଯତୁଲ୍ୟା ସୌମ୍ୟାଂଶେ ତା ବଦୀ ସଦାଦୃଷ୍ଟା
ଶୁଭଦୃଷ୍ଟେତଦ୍ୱିଗୁଣା କ୍ଲିଷ୍ଟା ପାପାଂଶକେ ତଦାଦୃଷ୍ଟା ।୩।

ପଞ୍ଚମ ଭାବ ସ୍ପୁଟରୁ ଯେ ନବାଂଶ ଅସିବ ତାହା ଶୁଭ ନବାଂଶ ହୋଇ ଥିଲେ ସନ୍ତାନ ସଂଖ୍ୟା ନବାଂଶ ଭୋଗାନୁରୂପ ହେବ । ଶୁଭଗ୍ରହ ସେହି

ସ୍ଥାନକୁ ଦେଖୁଥିଲେ ସନ୍ତାନ ଦୁଇଗୁଣ ହେବ । ପାପଗ୍ରହ ନବାଂଶରେ ପଞ୍ଚମଭାବ ପଡ଼ିଲେ ନବାଂଶ ଅନୁରୂପ ସନ୍ତାନ ନାଶହେବ ।୩।

ସୌରର୍କ୍ଷେ ସୌରଗୁଣେ ବୁଧଦୃଷ୍ଟେ ଗୁରୁକୁଜାର୍କଦୃଗ୍‌ଘ୍ନାନଃ
କ୍ଷେତ୍ରଜପୁତ୍ରଂ ଜନୟତି ବୌଧେପି ଗୁଣେ ରବିଜଦୃଷ୍ଟଃ ।୪।

ପଞ୍ଚମଭାବ ଶନିଙ୍କ ଗୃହରେ ପଡ଼ିଲେ ଓ ବୁଧ ଦେଖୁଥିଲେ ସନ୍ତାନ ବିରୂପ ଓ କଦାକାର ହୁଏ । ସେହି ସ୍ଥାନକୁ ବୃହସ୍ପତି, ମଙ୍ଗଳ, ରବି ଦେଖିଲେ ଅଳ୍ପ ସନ୍ତାନ ଜାତହୁଏ । ବୁଧର ଗୃହ ପଞ୍ଚମ ଭାବରେ ପଡ଼ିଲେ ଶନି ଦେଖିଲେ "କ୍ଷେତ୍ରଜ" ପୁତ୍ର ଜାତ ହେବ ।୪।

ମାନ୍ଦେ ସୁତର୍କ୍ଷମିନ୍ଦୁଂ ନିରୀକ୍ଷିତେ ଯଦା ଶନୈଶ୍ଚରେଣାଯୁତମ୍
ଦତ୍ତକପୁତ୍ରୋପ୍ତଃ କ୍ରୀତଶ୍ଚ ବୁଧସ୍ୟ ଚୈବଂ ସ୍ୟାତ୍ ।୫।

ପଞ୍ଚମଭାବ ଶନିର ଗୃହହେଲେ ଓ ଶନି ପଞ୍ଚମରେ ଥିଲେ ଓ ଚନ୍ଦ୍ର ତାକୁ ଦେଖୁଥିଲେ ଜାତକ "ଦତ୍ତକ ପୁତ୍ର" ଗ୍ରହଣ କରିବ ।

ପଞ୍ଚମଭାବ ବୁଧର ଗୃହ ହୋଇ ବୁଧ ସେଠାରେ ଥିଲେ ଓ ଚନ୍ଦ୍ର ତାକୁ ଦେଖୁଥିଲେ ଜାତକ "କ୍ରୀତ ପୁତ୍ର" ଗ୍ରହଣ କରିବ ।୫।

ସପ୍ତମଭାଗେ କୌଜେ ସୌରଯୁତେ ପଞ୍ଚମେ ସଦା ଭବନେ
କୃତ୍ରିମପୁତ୍ରଂ ବଂଦ୍ୟାଚ୍ଛେଷଗ୍ରହଦର୍ଶନାନ୍ନୁକ୍ତେ ।୬।

ପଞ୍ଚମଭାବ ମଙ୍ଗଳର ସପ୍ତାଂଶରେ ପଡ଼ିଲେ ଓ ଶନି ସେଠାରେ ଥିଲେ, ଅନ୍ୟଗ୍ରହ ମାନେ ଦେଖୁନଥିଲେ 'କୃତ୍ରିମ ପୁତ୍ର' ହୋଇଥାଏ ।୬।

ବର୍ଗେ ପଞ୍ଚମରାଶୌ ସୌରେସୂର୍ଯ୍ୟେ ଚ ତତ୍ସଂଯୁକ୍ତେ
ଲେହୃତଦୃଷ୍ଟେ ବାଚ୍ୟୋ ଜାତଶ୍ଚ ସୁତୋଧମପ୍ରଭବଃ ।୭।

ପଞ୍ଚମଭାବ ଶନିଙ୍କ ବର୍ଗରେ ପଡ଼ିଲେ ଓ ରବି ସେଥିରେ (ପଞ୍ଚମରେ) ଥାଇ ମଙ୍ଗଳ ଦ୍ୱାରା ଦୃଷ୍ଟହେଲେ ଅଧମ ପ୍ରଭବ ପୁତ୍ରପ୍ରାପ୍ତି ହୁଏ ।୭।

ଚନ୍ଦ୍ରେ ଭୌମାଂଶଗତେ ଧୀସ୍ଥେ ମନ୍ଦାବଲୋକିତେ ଭବତି
ଗୂଢ଼ୋତ୍ପନ୍ନୋର୍ବେପୁତ୍ରଃ ଶେଷଗ୍ରହଦର୍ଶନାଭ୍ୟାତେ ।୮।

ପଞ୍ଚମ ଭାବଗତ ଚନ୍ଦ୍ର ମଙ୍ଗଳ ବର୍ଗରେ ଥାଇ ଶନି ଦୃଷ୍ଟିରେ ଥିଲେ ଓ ଅନ୍ୟ ଗ୍ରହମାନେ ଦେଖୁ ନଥିଲେ 'ଗୁଢ଼ୋତ୍ପନ୍ନପୁତ୍ର' ଲାଭହୁଏ ।୮।

ତସ୍ମିନ୍ନେବ ଚ ଭୌମେ ଶନିବର୍ଗସ୍ଥେ ନିରୀକ୍ଷିତେ ରବିଣା ।
ପୁରୁଷସ୍ୟ ଭବତି ପୁତ୍ରୋଽପରଜ ଇତି ଚରକମୁନିବଚନାତ୍ ।୯।

ପଞ୍ଚମ ଭାବଗତ ମଙ୍ଗଳ ଶନିର ବର୍ଗରେ ଥାଇ ରବି ଦୃଷ୍ଟ ହେଲେ ଅପରଜ ପୁତ୍ର ଲଭନ୍ତ୍ରି ବୋଲି ଚରକ-ମୁନିଙ୍କ ମତ ।୯।

ଶନିବର୍ଗସ୍ଥେ ଚନ୍ଦ୍ରେ ଶନିଯୁକ୍ତେ ପଞ୍ଚମେ ସଦା ସୌରେ
ଶୁକ୍ରରବିଭ୍ୟାଂ ଦୃଷ୍ଟେ ପୁତ୍ରଃ ପୌନର୍ଭବୋଭବତି ।୧୦।

ପଞ୍ଚମ ଭାବ ଶନିବର୍ଗଗତ ହୋଇ ଚନ୍ଦ୍ର ସେଥିରେ ଥିଲେ, ଶୁକ୍ର ଓ ରବି ଚନ୍ଦ୍ରଙ୍କୁ ଦେଖୁଥିଲେ "ପୌନର୍ଭବ ପୁତ୍ର" ପ୍ରାପ୍ତି ହୁଏ ।୧୦।

ଚନ୍ଦ୍ରା ଯଦାର୍କିସତ୍ତ୍ୱାଲ୍ଲାଦ୍ଧତସ୍ୟୈବ ପଞ୍ଚମେ ଭବନେ ।
ରବିଦୃଷ୍ଟେଽପ୍ୟଥ ସନ୍ତିତେ କାନୀନଃ ସଂଭବତି ପୁତ୍ରଃ ।୧୧।

କର୍କଟରେ ପଞ୍ଚମ ଭାବ ହେବ, ସେଥିରେ ରବିଥିବେ ବା ରବି ତାଙ୍କୁ ଦେଖୁଥିବେ ତେବେ କାନୀନ ପୁତ୍ରଲାଭ ହେବ ।୧୧।

ବର୍ଗେରବି ଚନ୍ଦ୍ରମସୋଃ ସୁତଗେହେ ଚନ୍ଦ୍ରସୂର୍ଯ୍ୟସଂଯୁକ୍ତେ ।
ଶୁକ୍ରେଣ ଦୃଷ୍ଟେମାନେ ପୁତ୍ରଃ କଥିତଃ ସହୋଢ଼ସ୍ତୁ ।୧୨।

ପଞ୍ଚମସ୍ଥାନ ରବି ବା ଚନ୍ଦ୍ରର ବର୍ଗଗତ ହେଲେ ରବି ଓ ଚନ୍ଦ୍ର ସେଥିରେ ଥିଲେ ଶୁକ୍ର ତାଙ୍କୁ ଦେଖୁଥିଲେ ସହୋଢ଼ ପୁତ୍ର ଲାଭ ହେବ । ରବି ପ୍ରତି ଶୁକ୍ରର ଦୃଷ୍ଟି ପାଦେ ଥିଲେ ମଧ୍ୟ ଏଯୋଗ ହେବ ।୧୨।

ପାପୈର୍ବଲଭିର୍ଯୁକ୍ତେ ପାପର୍କ୍ଷେ ପଞ୍ଚମେ ସଦା ସ୍ୱାଂଶେ ।
ଜାତଃ ପୁତ୍ରଃ ପୁରୁଷଃ ସୌମ୍ୟଗ୍ରହଦର୍ଶନାତ୍ତୀତେ ।୧୩।

ବଳବାନ ପାପଗ୍ରହ ପଞ୍ଚମରେ ଅନ୍ୟ ପାପଗ୍ରହର ଗୃହରେ ଥିଲେ ଶୁଭଗ୍ରହ ତାଙ୍କୁ ଆଦୌ ଦେଖୁନଥିଲେ ପୁତ୍ରଲାଭ ହୁଏ ନାହିଁ ।୧୩।

ଶୁକ୍ରନବାଂଶେ ତସ୍ମିନ୍ ଶୁକ୍ରେଣ ନିରୀକ୍ଷିତେ ଭୃଗୁପତ୍ୟାନି ।
ଦାସୀପ୍ରଭବାନି ବଦେଇନ୍ଦ୍ରେପି କେଚଦାଗୁର୍ଯ୍ୟାଃ ।୧୪।

ପଞ୍ଚମ ଭାବ ଶୁକ୍ର ନବାଂଶରେ ହେଲେ ଶୁକ୍ର ଦେଖୁଥିଲେ ପୁତ୍ର ନହୋଇ କନ୍ୟା ହୁଅନ୍ତି । କୌଣସି କୌଣସି ଅଗୁର୍ଯ୍ୟ ଚନ୍ଦ୍ର ମଧ୍ୟ ସେପରି ଥିଲେ ଏହି ଫଳ ହେବା କହନ୍ତି ।

ସିତଶଶିବର୍ଗେ ଧୀସ୍ତେ ତାଭ୍ୟାଂ ଦୃଷ୍ଟେଽଥବାପି ସଂଯୁକ୍ତେ ।
ପ୍ରାୟେଣ ଦାରିକାଃ ସ୍ୟୁସ୍ତଦ୍ରାଶିଗତୋଽପି ବାନ୍ୟଥା ପୁତ୍ରାଃ ।୧୫।

ଶୁକ୍ର ବା ଚନ୍ଦ୍ରର ବର୍ଗରେ ପଞ୍ଚମଭାବ ହେଲେ ସେମାନେ ପଞ୍ଚମରେ ଥିଲେ ବା ପଞ୍ଚମକୁ ଦେଖୁଥିଲେ କନ୍ୟା ଜାତ ହୁଅନ୍ତି । ପୁରୁଷ ଗ୍ରହ ଦେଖୁଥିଲେ ବା ସେଠାରେ ଥିଲେ ପୁତ୍ରମଧ୍ୟ ହୁଅନ୍ତି ।୧୫।

ସପ୍ତମ ଭାବ ବିଷୟରେ ଟୀକାକାର ଉତ୍ପଳ ଯେଉଁ ସବୁ ପ୍ରମାଣ ଗ୍ରହଣ କରିଛନ୍ତି ତାହା ମଧ୍ୟ ଏଠାରେ ଦିଆଗଲା ।

ଶୁକ୍ରେନ୍ଦୁଜୀବଶଶିଜୈଃ ସକଳୈସ୍ତ୍ରିଭିର୍ବା
ଦ୍ୱାଭ୍ୟାଂ କଳତ୍ରଭବନେ ଚ ତଥୈକକେନ ।
ଏଷାଂ ଗୃହେଽପି ଚ ଗତୈଥ ବିଲୋକିତେ ବା
ସନ୍ତି ସ୍ତ୍ରୀୟୋ ଭବନବର୍ଗଖଗସ୍ୱଭାବାଃ ।୧।

ଶୁକ୍ର, ଚନ୍ଦ୍ର, ଗୁରୁ ଓ ବୁଧ ସପ୍ତମରେ ଥିବେ ବା ସପ୍ତମକୁ ଦେଖୁଥିବେ କିମ୍ବା ସପ୍ତମ ସ୍ଥାନ ଯଦି ଏମାନଙ୍କର ଗୃହ ହୋଇଥିବ ତେବେ ସ୍ତ୍ରୀ ଭାବର ସୌଖ୍ୟ କହିବେ । ସ୍ତ୍ରୀର ସ୍ୱଭାବାଦି ସପ୍ତମଭାବସ୍ଥ ଓ ବର୍ଗାଧିପତି ଗ୍ରହତୁଲ୍ୟ ହେବ । କଥିତ ଚାରିଟି ଗ୍ରହରୁ ତିନୋଟି, ଦୁଇଟି ବା ଗୋଟିଏ ମଧ୍ୟ ସେହିସ୍ଥାନରେ ଥିଲେ ବା ଦେଖୁଥିଲେ ଭାବର ଶୁଭ ଘଟାଇବେ ।୧।

ଏବଂ କ୍ରୂରୈର୍ନାଶୋ ଲଗ୍ନାଚ୍ଚନ୍ଦ୍ରାଦ୍ଦିବଦେଚ ବଳଯୋଗାତ୍ ।
ଶଶିରବିଜଯୋଃ କଳତ୍ରେ ଭାର୍ଯ୍ୟାପୁଂସାଂ ପୁନର୍ଭୂଃସ୍ୟାତ୍ ।୨।

ଲଗ୍ନର ଚନ୍ଦ୍ରର ସପ୍ତମ ସ୍ଥାନ ଯେବେ ବଳଯୁକ୍ତ ସେଥିରେ ପାପଗ୍ରହ ଥିଲେ, ପାପଗ୍ରହ ଦେଖୁଥିଲେ, ସ୍ତ୍ରୀ ଭାବ ନାଶ ହେବା କହିବେ । ସପ୍ତମ ସ୍ଥାନରେ ଚନ୍ଦ୍ର ଓ ଶନିଥିଲେ ତାର ସ୍ତ୍ରୀ ତାକୁ ଛାଡ଼ିଦେଇ ଅନ୍ୟପତିକୁ ବିବାହ କରେ ।୨।

ଭବନାଧିପାଂଶତୁଲ୍ୟା ଭବନ୍ତି ନାର୍ଯ୍ୟୋ ନିରୀକ୍ଷଣାଦ୍‌ବାପି
ଏକୈକ ରବିକୁଜାଂଶେ ଗୁରୁବୁଧୟୋଶ୍ଚାପି ଜାମିନୋ।୩।

ସପ୍ତମାଧିପତି ଯେତେ ନବାଂଶ ଭୋଗ କରିଥିବ (ସ୍ତ୍ରୀ ନାଶ ଯୋଗଥିଲେ ବା ବହୁ ବିବାହ ଯୋଗ ଥିଲେ) ଜାତକର ସେତିକି ବିବାହ ହେବ କିମ୍ବା ଯେତୋଟି ଗ୍ରହ ସପ୍ତମକୁ ଦେଖୁଥିବେ ସେତିକିଟି ବିବାହ ହେବ । ରବି,

ମଙ୍ଗଳ, ଗୁରୁ ବା ବୁଧ ନବାଂଶପତି ହେଲେ (ସପ୍ତମ ଭାବର) ଗୋଟିଏ ମାତ୍ର ବିବାହ ହେବ ।

ପ୍ରାୟେଣ ଚନ୍ଦ୍ର ସିତ୍ୟୋର୍ବଳସଂଯୁକ୍ତ୍ୟୋଃଥବାପି ଜାମିତ୍ରେ ।
ଦୃଷ୍ଟେବା ବହୁପତ୍ନ୍ୟୋ ଭବନ୍ତି ଶୁକ୍ରେ ବିଶେଷେଣ ।୪।

ସପ୍ତମ ସ୍ଥାନରେ ଚନ୍ଦ୍ର ବା ଶୁକ୍ର ବଳବାନ୍ ହୋଇଥିଲେ ବା ସେହି ସ୍ଥାନକୁ ଦେଖୁଥିଲେ ଜାତକ ବହୁପତ୍ନୀ ଲାଭକରେ । ଶୁକ୍ର ବଳବାନ୍ ହୋଇ ସପ୍ତମରେ ଥିଲେ ବା ସପ୍ତମକୁ ଦେଖୁଥିଲେ ବହୁପତ୍ନୀ ହେବା ନିଶ୍ଚିତ, କାରଣ ଚନ୍ଦ୍ରଠାରୁ ଶୁକ୍ରର ଏବିଷୟରେ ବିଶେଷତ୍ବ ରହିଛି ।୪।

ଗୁରୁଶୁକ୍ରୟୋଃ ସ୍ୱବର୍ଣ୍ଣା ରବିକୁଜଶଶିଭାନୁଜୈର୍ଭବିନ୍ତ୍ୟନାଃ
ଶୁକ୍ରେ ବେଶ୍ୟାପ୍ରିୟସ୍ତଥେନ୍ଦ୍ରୌପି ବଦନ୍ତିକେତୁମାଳାଖ୍ୟାଃ ।୫।

ବୃହସ୍ପତି ବା ଶୁକ୍ର ସପ୍ତମରେ ଥିଲେ ସପ୍ତମକୁ ଦେଖୁଥିଲେ ଜାତକ ସ୍ୱଜାତୀୟ ସ୍ତ୍ରୀ ବିବାହ କରେ । ରବି, ମଙ୍ଗଳ, ଚନ୍ଦ୍ର ଓ ଶନି ସପ୍ତମରେ ଥିଲେ ବା ସପ୍ତମକୁ ଦେଖୁଥିଲେ ଜାତକ ନିଜଠାରୁ ନୀଚକୁଳରୁ ସ୍ତ୍ରୀ ବିବାହ କରେ । ଶୁକ୍ର ବା ଚନ୍ଦ୍ର ସପ୍ତମରେ ଥିଲେ ବା ସପ୍ତମକୁ ଦେଖୁଥିଲେ ଜାତକ ବେଶ୍ୟାପ୍ରିୟ ହୁଏ ବୋଲି କେତୁମାଳଦେଶୀୟ ଜ୍ୟୋତିର୍ବିଦମାନଙ୍କ ମତ ।୫।

## ସ୍ତ୍ରୀର ମୃତ୍ୟୁଯୋଗ ବିଚାର

ଉଗ୍ରଗ୍ରହୈଃ ସିତଚତୁରସ୍ରସଂସ୍ଥିତୈର୍ମଧ୍ୟସ୍ଥିତେ ଭୃଗୁତନୟେଥବୋଗ୍ରୟୋଃ
ସୌମ୍ୟଗ୍ରହୈରସଦ୍ଦୃଷ୍ଟସଂଯୁତେ ଜାୟାବଧୋ ଦହନନିପାତପାଶଜଃ ।୨।

ଶୁକ୍ରର ଚତୁର୍ଥରେ ଏବଂ ଅଷ୍ଟମରେ ଉଗ୍ରଗ୍ରହ (ରବି, ମଙ୍ଗଳ ଓ ଶନି) ଥିଲେ ସ୍ତ୍ରୀ ଅଗ୍ନିରେ ଦଗ୍ଧହୋଇ ମରେ । ଶୁକ୍ର ପାପଗ୍ରହମାନଙ୍କ ମଧ୍ୟରେ ଥିଲେ ସ୍ତ୍ରୀ ଉଚ୍ଚସ୍ଥାନରୁ ପଡ଼ି ମରିଥାଏ । ଶୁକ୍ର କୌଣସି ଶୁଭଗ୍ରହ କର୍ତ୍ତୃକଯୁକ୍ତ ବା ଦୃଷ୍ଟ ନହେଲେ ସ୍ତ୍ରୀ ଫାଶୀ ଦେଇ ମରିଥାଏ ।

## ପତ୍ନୀ ତଥା ନିଜର ନେତ୍ରହାନି ତଥା ଅଙ୍ଗହାନି ଯୋଗ

ଲଗ୍ନାଦ୍ବ୍ୟୟସ୍ଥାଶ୍ରିତୟୋଃ ଶଶିତଗ୍ମରଶ୍ମ୍ୟୋଃ
ପତ୍ନ୍ୟା ସହୈକନୟନସ୍ୟ ବଦନ୍ତି ଜନ୍ମ ।
ଦ୍ୟୂନସ୍ଥୟୋର୍ନବମପଞ୍ଚମସଂସ୍ଥୟୋର୍ବା
ଶୁକ୍ରାର୍କୟୋର୍ବିକଳଦାରମୁଶନ୍ତି ଜାତମ୍ ।୩।

ଚନ୍ଦ୍ର ଓ ରବି ଦ୍ୱାଦଶ ଏବଂ ଷଷ୍ଠରେ ଥିଲେ (ଚନ୍ଦ୍ର ଦ୍ୱାଦଶ ବା ଷଷ୍ଠରେ ଥାଇ, ରବି ଷଷ୍ଠ ବା ଦ୍ୱାଦଶରେ ଥାଇ) ଜାତକର ଓ ତାର ସ୍ତ୍ରୀର ଗୋଟିଏ, ଗୋଟିଏ ଚକ୍ଷୁନାଶ ହୁଏ ।

ରବି ସହିତ ଶୁକ୍ର ସପ୍ତମ, ନବମ ବା ପଞ୍ଚମରେ ଥିଲେ ସ୍ତ୍ରୀର କୌଣସି ଅଙ୍ଗହାନି ହୋଇଥାଏ ।

## ବନ୍ଧ୍ୟାପତି ତଥା ପୁତ୍ର କଳତ୍ରହୀନ ଯୋଗ

 କୋଣୋଦୟେ ଭୃଗୁତନୟେସ୍ତରଚକ୍ରସଂଧୌ
ବନ୍ଧ୍ୟାପତିର୍ଯଦି ନ ସୁତର୍ଷମିଷ୍ଟଯୁକ୍ତମ୍ ।
ପାପଗ୍ରହୈର୍ବ୍ୟୟମଦାଲଗ୍ନରାଶିସଂସ୍ଥୈଃ
କ୍ଷୀଣେ ଶଶିନ୍ୟସୁତକଳତ୍ରଜନ୍ମଧୀସ୍ଥେ ।୪।

ଶନି ଲଗ୍ନରେଥିଲେ, ସପ୍ତମରେ ଥିବା ଶୁକ୍ର କର୍କଟ, ବୃଶ୍ଚିକ ବା ମୀନର ଶେଷ ନବାଂଶରେ ଥିଲେ, ପଞ୍ଚମରେ କୌଣସି ଶୁଭଗ୍ରହ ନଥିଲେ ସ୍ତ୍ରୀ ବନ୍ଧ୍ୟା ହୁଏ ।

ପାପଗ୍ରହ ଦ୍ୱାଦଶ, ସପ୍ତମ ବା ଲଗ୍ନରେ ଥିଲେ ଓ ଲଗ୍ନର ପଞ୍ଚମସ୍ଥାନରେ କ୍ଷୀଣଚନ୍ଦ୍ର ଥିଲେ ଜାତକ ସ୍ତ୍ରୀ ତଥା ପୁତ୍ରହୀନ ହୁଏ ।

## ପରସ୍ତ୍ରୀ ଗମନ, ବ୍ୟଭିଚାରଣୀସ୍ତ୍ରୀ ଓ ସ୍ତ୍ରୀ ପୁତ୍ର ହାନି ଯୋଗ

ଅସିତକୁଜୟୋର୍ବର୍ଗେଽସ୍ତସ୍ଥେ ସିତେ ତଦବେକ୍ଷିତେ
ପରଯୁବତିଗସ୍ତୌ ଚେତ୍ସେନ୍ଦୂ ସ୍ତ୍ରିୟା ସହ ପୁଂଶ୍ଚଳଃ ।
ଭୃଗୁଜଶଶିନୋରସ୍ତେଽଭାର୍ୟୋ ନରୋ ବିସୁତୋଽପି ବା
ପରିଣତତନୂ ନୃସ୍ତ୍ର୍ୟୋର୍ଦୃଷ୍ଟୌ ଶୁଭୈଃ ପ୍ରମଦାପତି ।୫।

ଶୁକ୍ର ସପ୍ତମରେ ଥାଇ ଶନି ବା ମଙ୍ଗଳର ବର୍ଗରେ ଥିଲେ ଏବଂ ଶନି ଓ ମଙ୍ଗଳର ଦୃଷ୍ଟିରେ ଥିଲେ ଜାତକ ପରସ୍ତ୍ରୀଗାମୀ ହୁଏ । ସପ୍ତମରେ ଶନି ଓ ମଙ୍ଗଳ ଚନ୍ଦ୍ରଯୁକ୍ତ ହେଲେ ଶୁକ୍ର ତାଙ୍କୁ ଦେଖୁଥିଲେ ଜାତକ ପରସ୍ତ୍ରୀଗାମୀ ହୁଏ ଓ ତାହାର ସ୍ତ୍ରୀ ଅନ୍ୟ ପୁରୁଷ ଭୋଗକରେ ।

ଶୁକ୍ର ଏବଂ ଚନ୍ଦ୍ର ଏକରାଶିରେ ଥିବେ, ସପ୍ତମରେ ଶନି ଏବଂ ମଙ୍ଗଳ ଥିଲେ ସ୍ତ୍ରୀ ହାନି ତଥା ପୁତ୍ରହାନି ଯୋଗ କହିବେ । ପୁରୁଷଗ୍ରହ ଓ ସ୍ତ୍ରୀଗ୍ରହ ଏକତ୍ରଥିଲେ, ସପ୍ତମରେ ଶନି ଓ ମଙ୍ଗଳ ଥାଇ ଶୁଭଗ୍ରହର ଦୃଷ୍ଟିରେ ଥିଲେ ଜାତକ ବୃଦ୍ଧବୟସରେ ବିବାହକରେ ।

## ବଂଶନାଶ, ଶିଳ୍ପୀ, ଦାସୀପୁତ୍ର ଓ ନୀଚକର୍ମାଯୋଗ

ବଂଶଚ୍ଛେତ୍ତା ଖମଦସୁଖଗୈଶ୍ଚନ୍ଦ୍ରଦୈତ୍ୟେଜ୍ୟପାପୈଃ
ଶିଲ୍ପୀ ତ୍ର୍ୟଂଶେ ଶଶିସୁତଯୁତେ କେନ୍ଦ୍ରସଂସ୍ଥାର୍କିଦୃଷ୍ଟେ ।
ଦାସ୍ୟାଂ ଜାତୋ ଦ୍ୟୁତସୁତଗୁରୌ ରିଃଫଗେ ସୌରଭାଗେ
ନୀଚୋଽର୍କେନ୍ଦ୍ୱୋର୍ମଦନଗତୟୋର୍ଦୃଷ୍ଟୟୋଃ ସୂର୍ଯ୍ୟଜେନ ।୭।

ଚନ୍ଦ୍ର ଦଶମରେ, ଶୁକ୍ର ସପ୍ତମରେ ଓ ପାପଗ୍ରହମାନେ ଚତୁର୍ଥରେ ଥିଲେ ଜାତକ ନିଜରବଂଶ ନାଶ କରେ ଅର୍ଥାତ୍ ତା ଆଗରେ ତା ବଂଶର ସମସ୍ତେ ମରନ୍ତି, ଶେଷରେ ସେ ମରେ ।

ବୁଧ ଯେଉଁ ଦ୍ରେକ୍କାଣରେ ଥିବେ ସେହିରାଶିକୁ ଶନି ଦେଖିଲେ ଓ ଶନି କେନ୍ଦ୍ରସ୍ଥାନରେ ଥିଲେ ଜାତକ ଶିଳ୍ପୀ (ଚିତାଙ୍କନ, ନିର୍ମାଣ ଇତ୍ୟାଦି) ହୁଏ ।

ଶୁକ୍ର ଶନିର ନବାଂଶରେ ଥାଇ ଦ୍ୱାଦଶରେ ଥିଲେ ଜାତକ ଦାସୀର ପୁତ୍ର ହୋଇଥାଏ ।

ରବି ଓ ଚନ୍ଦ୍ର ଉଭୟେ ସପ୍ତମରେ ଥାଇ ଶନିଦ୍ୱାରା ଦୃଷ୍ଟ ହେଲେ ଜାତକ ନୀଚକାର୍ଯ୍ୟ କରେ ।

## ବାତରୋଗ, ଗୁପ୍ତରୋଗ, ଶ୍ୱିତ୍ରରୋଗ ଓ ଅଙ୍ଗହୀନ ଯୋଗ

ପାପାଲୋକିତୟୋଃ ସିତାବନିଜୟୋରସ୍ତସ୍ଥୟୋର୍ବାଧରୁକ୍
ଚନ୍ଦ୍ରେ କର୍କିଟ ବୃଶ୍ଚିକାଂଶକଗତେ ପାପୈର୍ଯୁତେ ଗୁହ୍ୟରୁକ୍ ।
ଶ୍ୱିତ୍ରୀ ରିଃଫଧନସ୍ଥୟୋରଶୁଭୟୋଶ୍ଚନ୍ଦ୍ରୋଦୟେଽସ୍ତେ ରବୌ
ଚନ୍ଦ୍ରେ ଖେଽବନିଜେଽସ୍ତଗେ ଚ ବିକଲୋ ଯଦ୍ୟର୍କଜୋ ବେଶିଗଃ ।୮।

ଯଦି ଶୁକ୍ର ଓ ମଙ୍ଗଳ ସପ୍ତମରେ ଥାଇ ପାପଗ୍ରହଦ୍ୱାରା ଦୃଷ୍ଟହୁଅନ୍ତି ତେବେ ଜାତକ ଗ୍ରହଣୀ ବା ଆମାଶୟ ରୋଗରେ ପୀଡ଼ିତ ହୁଏ ।

ଚନ୍ଦ୍ର ବୃଶ୍ଚିକ ବା କର୍କଟ ନବାଂଶରେ ଥାଇ ପାପଗ୍ରହ ଯୁକ୍ତ ହେଲେ ଗୁପ୍ତସ୍ଥାନରେ ରୋଗ ହେବା କହିବେ ।

ଶନି ଓ ମଙ୍ଗଳ ଲଗ୍ନର ଦ୍ୱାଦଶ ବା ଦ୍ୱିତୀୟସ୍ଥାନରେ, ଚନ୍ଦ୍ର ଲଗ୍ନରେ, ରବି ସପ୍ତମରେ ଥିଲେ ଜାତକ ଶ୍ୱିତ୍ରକୁଷ୍ଠରେ ଆକ୍ରାନ୍ତ ହୁଏ ।

ଦଶମରେ ଚନ୍ଦ୍ର, ସପ୍ତମରେ ମଙ୍ଗଳ, ରବିର ଦ୍ୱିତୀୟରେ ଶନି ଥିଲେ ଜାତକର ଅଙ୍ଗହାନି ହୁଏ ।୮।

## ଶ୍ୱାସ, କାସ, କ୍ଷୟ, ଗୁଳ୍ମ, ପ୍ଲୀହା, ବଦ୍ରଧି ରୋଗ ଜାତ ଯୋଗ

ଅନ୍ତଃ ଶଶିନ୍ୟଶୁଭୟୋର୍ମୃଗଗେ ପତଙ୍ଗେ
ଶ୍ୱାସକ୍ଷୟପ୍ଲିହକବଦ୍ରଧିଗୁଲ୍ମଭାଜଃ ।
ଶୋଷୀ ପରସ୍ପରଗୃହାଂଶଗୟୋ ରବୀନ୍ଦ୍ୱୋଃ
କ୍ଷେତ୍ରେଽଥବା ଯୁଗପଦେକଗୟୋଃ କୃଶୋ ବା ।୮।

ଶନି ଓ ମଙ୍ଗଳର ମଧ୍ୟରେ ଚନ୍ଦ୍ରଥିବେ, ମକରରେ ରବିଥିବେ ଏପରି ଯୋଗରେ ଜାତକ କାସ, ଶ୍ୱାସ, କ୍ଷୟ, ପ୍ଲୀହା, ବଦ୍ରଧି ବା ଗୁଳ୍ମରୋଗରେ ପୀଡ଼ିତ ହୁଏ ।

ରବି ଓ ଚନ୍ଦ୍ର ପରସ୍ପର ରାଶି ତଥା ନବାଂଶରେ ଥିଲେ ଜାତକ କ୍ଷୟରୋଗ ଯୁକ୍ତ ହୁଏ ।

ଭାବାର୍ଥ ଏଠାରେ ରବି କର୍କଟ ରାଶିର କର୍କଟ ନବାଂଶରେ ଥିବାକୁ ହେବ, ଚନ୍ଦ୍ର ସିଂହରାଶିର ସିଂହ ନବାଂଶରେ ଥିଲେ କ୍ଷୟରୋଗ ହେବ ।

ରବି ଓ ଚନ୍ଦ୍ର ଏକତ୍ର ସିଂହରାଶିର ସିଂହ ନବାଂଶରେ, କର୍କଟ ରାଶିର କର୍କଟ ନବାଂଶରେ ଥିଲେ ଜାତକ କ୍ଷୟରୋଗଯୁକ୍ତ ବା କ୍ଷୀଣ ଶରୀରଯୁକ୍ତ ହୁଏ ।୮।

## କୁଷ୍ଠରୋଗ ଯୋଗ

ଚନ୍ଦ୍ରେ ହଶ୍ୱିମଧ୍ୟଝଷକର୍କିମୃଗାଜଭାଗେ
କୁଷ୍ଠୀ ସମନ୍ଦରୁଧିରେ ତଦବେକ୍ଷିତେ ବା ।
ଯାତୈସ୍ତ୍ରିକୋଣମଳିକର୍କିବୃଷୈର୍ମୃଗେ ଚ
କୁଷ୍ଠୀ ଚ ପାପସହିତୈରବଲୋକିତୈର୍ବା ।୯।

ଚନ୍ଦ୍ର ଧନୁରାଶିର ମଧ୍ୟ ନବାଂଶରେ (ପଞ୍ଚମ ନବାଂଶ ଅର୍ଥାତ୍ ସିଂହ ନବାଂଶରେ) ଥାଇ ଶନି ଏବଂ ମଙ୍ଗଳ ଯୁକ୍ତ ବା ସେମାନଙ୍କଦ୍ୱାରା ଦୃଷ୍ଟହେଲେ ଜାତକ କୁଷ୍ଠରୋଗଯୁକ୍ତ ହୁଏ ।

ଚନ୍ଦ୍ର ମୀନ, କର୍କଟ, ମକର ବା ମେଷନବାଂଶରେ ଥାଇ ଶନି ଓ ମଙ୍ଗଳ ଯୁକ୍ତ ବା ଏମାନଙ୍କ ଦ୍ୱାରା ଦୃଷ୍ଟହେଲେ ଜାତକ କୁଷ୍ଠରୋଗଯୁକ୍ତ ହୁଏ । ଏଠାରେ ଚନ୍ଦ୍ରକୁ ଶୁଭଗ୍ରହ ଦେଖୁଥିଲେ କୁଷ୍ଠରୋଗ ହୁଏ ନାହିଁ କିନ୍ତୁ ଦାଦୁ, କଣ୍ଡୁ-ରୋଗ ଇତ୍ୟାଦି ହୋଇଥାଏ ।

ବୃଶ୍ଚିକ, କର୍କଟ, ବୃଷ ତଥା ମକର ରାଶିସ୍ଥ ଚନ୍ଦ୍ର ତ୍ରିକୋଣରେ ଥିଲେ, ପାପଯୁକ୍ତ ବା ପାପଦୃଷ୍ଟହେଲେ ଜାତକ କୁଷ୍ଠରୋଗାକ୍ରାନ୍ତ ହୁଏ ।୯।

## ନେତ୍ରହୀନ ଯୋଗ

ନିଧନାରିଧନବ୍ୟୟସ୍ଥିତା ରବିଚନ୍ଦ୍ରାରଯମା ଯଥା ତଥା
ବଳବଦ୍‌ଗ୍ରହଦୋଷକାରଣୈର୍ମନୁଜାନାଂ ଜନୟନ୍ତ୍ୟନେତ୍ରତାମ୍ ।୧୦।

ରବି, ଚନ୍ଦ୍ର, ମଙ୍ଗଳ ଏବଂ ଶନି ଲଗ୍ନରେ ଅଷ୍ଟମ, ଷଷ୍ଠ, ତଥା ଦ୍ୱିତୀୟ କିମ୍ବା ଦ୍ୱାଦଶ ସ୍ଥାନମାନଙ୍କରେ ଥିଲେ (ଏମାନଙ୍କମଧ୍ୟରୁ ଯେ କୌଣସି ଗ୍ରହ କଥିତ ଯେ କୌଣସି ଭାବରେ ଥିଲେ ହେଲ) ଏମାନଙ୍କ ମଧ୍ୟରେ ଯେ ଗ୍ରହ ସବୁଠୁ ବଳବାନ୍ ହୋଇଥିବ ତାହାର ଧାତୁ ପ୍ରକୋପରୁ ଚକ୍ଷୁନଷ୍ଟ ହେବ ।୧୦।

## ବଧିରତଥା ଦନ୍ତରୋଗ ଯୋଗ

ନବମାୟତୃତୀୟଧୀଯୁତା ନ ଚ ସୌମ୍ୟୈରଶୁଭା ନିରୀକ୍ଷିତାଃ
ନିୟମାଚ୍ଛ୍ରବଣୋପଘାତଦା ରଦବୈକୃତ୍ୟକରାଶ୍ଚ ସପ୍ତମେ ।୧୧।

ପାପଗ୍ରହମାନେ ନବମ, ଏକାଦଶ, ତୃତୀୟ ତଥା ପଞ୍ଚମରେ ଥାଇ ଶୁଭଗ୍ରହ ମାନଙ୍କ ଦୃଷ୍ଟିରେ ନଥିଲେ ଏମାନଙ୍କ ମଧ୍ୟରେ ଯେ ଗ୍ରହ ବଳବାନ୍ ତାହାର ଧାତୁ ପ୍ରକୋପରୁ ଶ୍ରବଣଶକ୍ତି ନଷ୍ଟହୁଏ ।

ପାପଗ୍ରହମାନେ ସପ୍ତମରେ ଥିଲେ ଦନ୍ତରୋଗ ଜାତ ହୁଏ । ଏଠାରେ ପାପକହିଲେ ପୂର୍ବୋକ୍ତ (ଦଶମଶ୍ଳୋକୋକ୍ତ) ରବି,ଚନ୍ଦ୍ର (କ୍ଷୀଣ) ମଙ୍ଗଳ ଓ ଶନିଙ୍କୁ ମାତ୍ର ବୁଝିବେ ।୧୧।

## ପିଶାଚ ଯୋଗ ତଥା ଅନ୍ଧ ଯୋଗ

ଉଦୟତ୍ୟୁଡୁପେ ସୁରାସ୍ୟଗେ ସପିଶାଚୋଽଶୁଭୟୋସ୍ତ୍ରିକୋଣୟୋଃ
ସୋପପ୍ଲବମଣ୍ଡଳେ ରବାବୁଦୟସ୍ଥେ ନୟନାପବର୍ଜିତଃ ।୧୨।

ଜନ୍ମକାଳରେ ଚନ୍ଦ୍ର ରାହୁଯୁକ୍ତ ହୋଇ ଲଗ୍ନଗତ ହେଲେ, ପାପଗ୍ରହ ମାନେ ତ୍ରିକୋଣରେ ଥିଲେ ଜାତକ ପିଶାଚଗ୍ରସ୍ତ ହୁଏ (ଭୂତ, ପିଶାଚ ତଥା ପ୍ରେତାବିଷ୍ଟ ହୋଇଥାଏ) ।

ଲଗ୍ନରେ ରବି ରାହୁଯୁକ୍ତ ହୋଇଥିଲେ, ପାପଗ୍ରହମାନେ ତ୍ରିକୋଣରେ ଥିଲେ ଜାତକ ଅନ୍ଧହୁଏ ।୧୨।

## ବାତରୋଗ ଓ ଉନ୍ମାଦରୋଗ

ଶଶ୍ୱତ୍କ୍ଷଃ ପବନେନ ମନ୍ଦଗଯୁତେ ଦ୍ୟୂନେ ବଲଗ୍ନେ ଗୁରୌ
ସୋନ୍ମାଦୋଽବନିଜେ ସ୍ଥିତେସ୍ତ୍ରଭବନେ ଜୀବେ ବିଲଗ୍ନାଶ୍ରିତେ ।
ତଦ୍ୱତ୍ସୂର୍ଯ୍ୟସୁତୋଦୟେଽବନିସୁତେ ଧର୍ମାତ୍ମଜଦ୍ୟୂନଗେ
ଜାତୋ ବା ସସହସ୍ରରଶ୍ମିତନୟେ କ୍ଷୀଣେ ବ୍ୟୟେ ଶୀତଗୌ ।୧୩।

ଲଗ୍ନର ସପ୍ତମସ୍ଥାନରେ ଶନି, ଲଗ୍ନରେ ବୃହସ୍ପତି ଥିଲେ ଜାତକ ବାତ ରୋଗଯୁକ୍ତ ହୁଏ ।

ସପ୍ତମରେ ମଙ୍ଗଳ ଓ ଲଗ୍ନରେ ବୃହସ୍ପତି ଥିଲେ ଜାତକ ଉନ୍ମାଦ ରୋଗ ଯୁକ୍ତ ହୁଏ ।

ଶନି ଲଗ୍ନରେ; ମଙ୍ଗଳ ନବମ, ପଞ୍ଚମ ବା ସପ୍ତମରେ ଥିଲେ ଜାତକ ଉନ୍ମାଦ ରୋଗାକ୍ରାନ୍ତ ହୁଏ ।

କ୍ଷୀଣଚନ୍ଦ୍ର ଶନିଯୁକ୍ତ ହୋଇ ଦ୍ୱାଦଶରେ ଥିଲେ ଜାତକ ଉନ୍ମାଦ ରୋଗ ଯୁକ୍ତ ହୁଏ ।୧୩।

ଦ୍ର:—ଉପର୍ଯୁକ୍ତ ଯୋଗରେ ଗ୍ରହମାନେ ବଳହୀନ ହୋଇଥିବା ଉଚିତ ।

## ଦାସ ଯୋଗ

ସ୍ୱଶଂଶପୋଷ୍ଣକରଶୀତକରବୁମରେଜ୍ୟୈ-
ର୍ନୀଚ୍ଚଥିପାଂଶକଗତୈରରଭାଗଗୈର୍ବା ।
ଏଚେଷ୍ୟାଲ୍ପମଧ୍ୟବହୁଭିଃ କ୍ରମଶଃ ପ୍ରସୂତା
ଜ୍ଞେୟାଃ ସ୍ୱୟୀରଭ୍ୟୁପଗମକ୍ରୟଗର୍ଭଦାସାଃ ।୧୪।

ଚନ୍ଦ୍ର ଯେଉଁ ଗ୍ରହର ନବାଂଶରେ ଥିବ ସେ ଓ ରବି, ଚନ୍ଦ୍ର ଏବଂ ଗୁରୁ ନିଜ ନିଜର ନୀଚରାଶି ନବାଂଶରେ ଥିଲେ କିମ୍ବା ଶତ୍ରୁ ଗ୍ରହର ନବାଂଶରେ ଥିଲେ ଜାତକ ଦାସକର୍ମ (ପରର ଗୃହକର୍ମ) କରିଥାଏ । ଏହି ଯୋଗର ବିଶେଷତ୍ୱ ଏହିଯେ ଏଗୁଡ଼ିକ ଗ୍ରହ ମଧ୍ୟରୁ ଗୋଟିଏ ଗ୍ରହ ନୀଚନବାଂଶ ବା ଶତ୍ରୁର ନବାଂଶରେ ଥିଲେ ଜାତକ ସ୍ୱଇଚ୍ଛାରେ ଗୃହକର୍ମ କରେ । ଦୁଇଟି ଗ୍ରହ ଏଭଳି ଥିଲେ ସେ ଦାସକର୍ମ କରିବା ପାଇଁ ଅନ୍ୟଠାରୁ କିଣାଯାଇ ଥାଏ । ତିନୋଟି ବା ଚାରୋଟି ଯାକ ଗ୍ରହ ଏଭଳି ଥିଲେ ସେ ପୁରୁଷାନୁକ୍ରମେ ଅନ୍ୟର ନୌକର ହୋଇ ଚାଲୁଥିବା କୁଟୁମ୍ବରେ ଜନ୍ମହୁଏ ।୧୪।

## ବିକୃତଦନ୍ତ ଓ ଖଲ୍ୱାଟ (ଟାଙ୍ଗରା) ଯୋଗ

ବିକୃତଦଶନଃ ପାପୈର୍ଦୃଷ୍ଟେ ବୃଷାଜହୟୋଦୟେ
ଖଲତିରଶୁଭକ୍ଷେତ୍ରେ ଲଗ୍ନେ ହୟେ ବୃଷଭେପି ବା
ନବମସୁତଗେ ପାପୈର୍ଦୃଷ୍ଟେ ରବାବଦୃତେକ୍ଷଣୋ
ଦନଢରସୁତେ ନୈକବ୍ୟାଧିଃ କୁଜେ ବିକଳଃ ପୁମାନ୍ ।୧୫।

ବୃଷ, ମେଷ, ଧନୁ ଏହି ତିନୋଟି ରାଶିମଧ୍ୟରୁ ଗୋଟିଏ ଲଗ୍ନହେବ ଓ ପାପଗ୍ରହ ଦୃଷ୍ଟିରେ ରହିବ, ତେବେ ଜାତକ ଦନ୍ତରୋଗ ଯୁକ୍ତ ହୁଏ ।

ମେଷ, ସିଂହ, ବୃଶ୍ଚିକ, ମକର, କୁମ୍ଭ, ବୃଷ ଓ ଧନୁ ଏହି ସାତଟି ରାଶି ମଧ୍ୟରୁ ଗୋଟିଏ ଲଗ୍ନହେବ ଓ ପାପଗ୍ରହ ଦୃଷ୍ଟିରେ ରହିବ ତେବେ ଜାତକ ଖଲ୍ୱାଟ (ଟାଙ୍ଗରା) ହେବ ।

ରବି ନବମ ବା ପଞ୍ଚମରେ ଥାଇ ପାପଗ୍ରହର ଦୃଷ୍ଟିରେ ଥିଲେ ଜାତକର ଦୃଷ୍ଟିଶକ୍ତି କ୍ଷୀଣହେବ । ଶନି ନବମ ବା ପଞ୍ଚମରେ ଥାଇ ପାପଗ୍ରହର ଦୃଷ୍ଟିରେ ଥିଲେ ଜାତକ ବହୁପ୍ରକାର ରୋଗଯୁକ୍ତ ହେବ ।

ମଙ୍ଗଳ ନବମ ବା ପଞ୍ଚମରେ ଥାଇ ପାପଗ୍ରହର ଦୃଷ୍ଟିରେ ଥିଲେ ଜାତକର ଅଙ୍ଗହାନି ହେବ ।

## ବନ୍ଧନ ଯୋଗ

ବ୍ୟୟସୁତଧନଧର୍ମଗୈରସୌମ୍ୟୈର୍ଭବନସମାନନିବନ୍ଧନଂ ବିକଳ୍ପ୍ୟମ୍ ।
ଭୁଜଗନିଗଡ଼ପାଶଭୃଦ୍ଦୃକାଣୈର୍ବଲବଦସୌମ୍ୟନିରୀକ୍ଷିତୈଶ୍ଚ ତଦ୍‌ବତ୍ ।୧୬।

ପାପଗ୍ରହମାନେ ଲଗ୍ନର ଦ୍ୱାଦଶ, ପଞ୍ଚମ, ଦ୍ୱିତୀୟ ବା ନବମ ସ୍ଥାନରେ ଥିଲେ ଜାତକ ବନ୍ଧନଯୁକ୍ତ ହୁଏ । ଏହି ବନ୍ଧନ ରାଶିର ଲକ୍ଷଣ ତୁଲ୍ୟ ହୁଏ ଅର୍ଥାତ୍ ଏହିସ୍ଥାନ ଗୁଡ଼ିକ ମେଷ, ବୃଷ ବା ଧନୁରାଶି ହେଲେ ଜାତକ ଦଉଡ଼ିରେ ବା ଶିକୁଳିରେ ବନ୍ଧାଯାଏ । ମିଥୁନ, କନ୍ୟା, ତୁଳା ବା କୁମ୍ଭ ରାଶିହେଲେ ପାଦ ବା ହସ୍ତରେ ବେଢ଼ି ଦିଆଯାଏ; କର୍କଟ, ମକର ତଥା ମୀନ ରାଶିରେ ହେଲେ ଦୁର୍ଗ (ଗଡ଼) ମଧ୍ୟରେ ବନ୍ଧନ କରି ରଖାଯାଏ । ବୃଶ୍ଚିକ ରାଶିରେ ହେଲେ ଗୁପ୍ତଗୃହ (ଗୁହା ପ୍ରଭୃତିରେ ନିର୍ଜନ କାରାଦଣ୍ଡ) ରେ ରହିଥାଏ ।

ଭୁଜଙ୍ଗ ଦ୍ରେକ୍କାଣ (କର୍କଟର ଦ୍ୱିତୀୟ ଓ ତୃତୀୟ, ବୃଶ୍ଚିକର ପ୍ରଥମ ଓ ଦ୍ୱିତୀୟ ମୀନର ତୃତୀୟ) ଏବଂ ନିଗଡ଼ ଦ୍ରେକ୍କାଣ (ମକରର ପ୍ରଥମ) ବଳବାନ୍ ପାପଗ୍ରହ ଯୁକ୍ତ ବା ଦୃଷ୍ଟ ହୋଇଥିଲେ ବନ୍ଧନ ପ୍ରାପ୍ତି ହୁଏ ।

## କଠୋର ବଚନ, ଅପସ୍ମାର ତଥା କ୍ଷୟରୋଗ

ପରୁଷବଚନୋଽପସ୍ମାରାର୍ତ୍ତିଃ କ୍ଷୟୀ ଚ ନିଶାପତୌ
ସରବିତନୟେ ବକ୍ରାଲୋକଂ ଗତେ ପରିବେଷଗେ ।
ରବିଯମକୁଜୈଃ ସୌମ୍ୟାଦୃଷ୍ଟୈର୍ନଭସ୍ଥଲମାଶ୍ରିତୈ-
ର୍ଭୃତକମନୁଜଃ ପୂର୍ବୋଦ୍ଦିଷ୍ଟୈର୍ବରାଧମମଧ୍ୟମାଃ ।୧୭।

ଇତି ଶ୍ରୀ ବରାହମିହିର କୃତେ ବୃହଜ୍ଜାତକେଽନିଷ୍ଟାଧ୍ୟାୟସ୍ତ୍ରୟୋବିଂଶଃ

ଚନ୍ଦ୍ର ଶନିଯୁକ୍ତ ହୋଇଥିବ, ମଙ୍ଗଳ ତାଙ୍କୁ ଦେଖୁଥିବ, ଚନ୍ଦ୍ର ପରିବେଷ (ମଣ୍ଡଳ) ଯୁକ୍ତ ହୋଇଥିବ ତେବେ ଜାତକ କ୍ରମଶଃ କଠୋର ବଚନ ବାଦୀ, ସେ ଅପସ୍ମାରଯୁକ୍ତ ବା କ୍ଷୟରୋଗ ଯୁକ୍ତ ହେବ । ଅର୍ଥାତ୍ ଶନିଯୁକ୍ତ ଚନ୍ଦ୍ର ଜାତକକୁ କଠୋର ବଚନବାଦୀ, ଶନିଯୁକ୍ତ ଚନ୍ଦ୍ର ମଙ୍ଗଳ ଦୃଷ୍ଟହେଲେ ଅପସ୍ମାର ରୋଗୀ, ମଣ୍ଡଳଯୁକ୍ତ ଚନ୍ଦ୍ର ଶନିଯୁକ୍ତ ତଥା ମଙ୍ଗଳ ଦୃଷ୍ଟ ହେଲେ ଜାତକକୁ କ୍ଷୟରୋଗ ଯୁକ୍ତ କରାଇବ । ଏହିପରି ପୃଥକ୍ ପୃଥକ୍ ତିନୋଟି ଯୋଗ ହେଲା । ଏଥିରୁ ଦୁଇନି ଘଟୁଥିଲେ ଦୁଇଟି ଦୋଷ ଓ ସବୁ ଘଟିଲେ ସମସ୍ତ ଦୋଷ ଘଟିବା କହିବେ ।

ରବି, ଶନି, ମଙ୍ଗଳ ଲଗ୍ନର ଦଶମରେ ଥିଲେ କୌଣସି ଶୁଭଗ୍ରହ ଏମାନଙ୍କୁ ନଦେଖିଲେ ଜାତକ ଦାସକର୍ମରେ ଜୀବିକା ନିର୍ବାହ କରେ । ଏମାନଙ୍କ ମଧ୍ୟରୁ ଗୋଟିଏ ଗ୍ରହ ରହିଲେ ପ୍ରଧାନ ଭୃତ୍ୟକର୍ମ, ଦୁଇଟିରେ ମଧ୍ୟମ ପ୍ରକାର ଭୃତ୍ୟକର୍ମ ଓ ତିନୋଟି ଗ୍ରହଥିଲେ ଜାତକ ଅତିସାଧାରଣ ଭୃତ୍ୟକର୍ମ କରିଥାଏ ।୧୭।

ଶ୍ରୀ ବରାହମିହିରକୃତ ବୃହଜ୍ଜାତକଗ୍ରନ୍ଥର ଅନିଷ୍ଟାଧ୍ୟାୟନାମକ
ତ୍ରୟୋବିଂଶତି ଅଧ୍ୟାୟର ସୁବୋଧିନୀ ଭାଷାଟୀକା
ସମାପ୍ତ ହେଲା ।

---

# ସ୍ତ୍ରୀଜାତକାଧ୍ୟାୟଃଶ୍ଚତୁର୍ବିଂଶଃ

## ସ୍ତ୍ରୀଜାତକର ଫଳ କହିବା ନିମନ୍ତେ ବିଶେଷ ବ୍ୟବସ୍ଥା

ଯଦ୍ୟତ୍ଫଳଂ ନରଭବେ କ୍ଷମମଙ୍ଗନାନାଂ
ତତ୍ତଦ୍ୱଦେତ୍ପତିଷ୍ୱ ବା ସକଳଂ ବିଧେୟମ୍
ତାସାଂ ତୁ ଭର୍ତ୍ତୃମରଣଂ ନିଧନେ ବପୁସ୍ତୁ
ଲଗ୍ନେନ୍ଦୁଗଂ ସୁଭଗତାସ୍ତମୟେ ପତିଶ୍ଚ ।୧।

ପୂର୍ବକଥିତ ଭାବାଦି ସମସ୍ତପ୍ରକାର ଫଳ ପୁରୁଷମାନଙ୍କର ଯେପରି ସ୍ତ୍ରୀମାନଙ୍କ ପକ୍ଷରେ ମଧ୍ୟ ସେହିପରି କହିବେ । ବିଶେଷତ୍ୱ ଏହି ଯେ ଯେଉଁ

ଯେଉଁ ଫଳ ସ୍ତ୍ରୀମାନେ ଭୋଗକରିବା ନିମନ୍ତେ ଅକ୍ଷମ, ସେହି ସେହି ଫଳ ସେମାନଙ୍କର ସ୍ୱାମୀଙ୍କ ଠାରେ ଭୋଗ ହେବ । ସ୍ତ୍ରୀ କୋଷ୍ଠୀରେ ରାଜଯୋଗ ସମ୍ଭବ ହେଲେ ପତିଠାରେ ସେହି ଯୋଗର ଫଳ ଦେଖାଯିବ । ଫଳର ଲକ୍ଷଣକୁ ଧରି କେତେକ କେବଳ ସ୍ତ୍ରୀ ଠାରେ କେତେକ କେବଳ ପୁରୁଷଠାରେ ଓ କେତେକ ଉଭୟଙ୍କଠାରେ କହିବେ । ସ୍ତ୍ରୀ ଜାତକର ଅଷ୍ଟମସ୍ଥାନରୁ ସ୍ୱାମୀର ମୃତ୍ୟୁ ବିଚାର କରିବେ । ଲଗ୍ନ ଏବଂ ଚନ୍ଦ୍ର ଠାରୁ ଶରୀରର ବିଚାର ଓ ସପ୍ତମରୁ ସୌଭାଗ୍ୟ ତଥା ପତିଭାବର ବିଚାର କରିବେ ।

## ସ୍ତ୍ରୀର ଆକାର ଓ ସ୍ୱଭାବାଦ ବିଚାର

ଯୁଗ୍ମେଷୁ ଲଗ୍ନଶଶିନୋଃ ପ୍ରକୃତିସ୍ଥିତା ସ୍ତ୍ରୀ
ସଚ୍ଛୀଲଭୂଷଣଯୁତା ଶୁଭଦୃଷ୍ଟୟୋଶ୍ଚ
ଓଜସ୍ଥୟୋଶ୍ଚ ମନୁଜାକୃତି ଶୀଲଯୁକ୍ତା
ପାପା ଚ ପାପଯୁତବୀକ୍ଷିତୟୋର୍ଗୁଣୋନା ।୨।

ଯେଉଁ ସ୍ତ୍ରୀର ଲଗ୍ନ ଓ ଚନ୍ଦ୍ର ଉଭୟ ଯୁଗ୍ମରାଶି (ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର ଓ ମୀନ)ରେ ହୋଇଥିବ, ତାହାର ସ୍ତ୍ରୀଜନୋଚିତ ସ୍ୱଭାବ ରହିବ । ଲଗ୍ନ ଓ ଚନ୍ଦ୍ର ଶୁଭଦୃଷ୍ଟ ହେଲେ ସ୍ତ୍ରୀର ସ୍ୱଭାବ ଉତ୍ତମ ଓ ସେ ଭୂଷଣ (ଅଳଙ୍କାର) ଯୁକ୍ତହେବ ।

ଲଗ୍ନ ଓ ଚନ୍ଦ୍ର ଉଭୟ ଓଜରାଶି (ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ) ହୋଇଥିଲେ ସ୍ତ୍ରୀର ସ୍ୱଭାବ ପୁରୁଷତୁଲ୍ୟ ଓ ରୂପମଧ୍ୟ ସେହିଭଳି ହେବ । ଲଗ୍ନ ଓ ଚନ୍ଦ୍ର ଉଭୟେ ପାପଯୁକ୍ତ ବା ପାପଦୃଷ୍ଟ ହେଲେ ସ୍ତ୍ରୀ ପାପଗୁଣ ଯୁକ୍ତାହେବ ।

ଏଥିରୁ ଗୋଟିଏ ଅର୍ଥାତ୍ ଲଗ୍ନ ଯୁଗ୍ମରାଶିରେ ଚନ୍ଦ୍ର ଓଜରାଶିରେ ରହିଲେ ଆକୃତି ଇତ୍ୟାଦି ମଧ୍ୟମହେବ । ସେହିଭଳି ଗୋଟିଏ ପାପଦୃଷ୍ଟ ବା ଯୁକ୍ତ ଅପରଟି ଶୁଭଦୃଷ୍ଟ ବା ଯୁକ୍ତହେଲେ ସ୍ୱଭାବାଦ ମଧ୍ୟମ କହିବେ ।୨।

## ମେଷତଥା ବୃଶ୍ଚିକରେ ଲଗ୍ନ ଓ ଚନ୍ଦ୍ର ଥିଲେ ବିଭିନ୍ନ ତ୍ରିଂଶାଂଶ ଫଳ

କନ୍ୟୈବ ଦୁଷ୍ଟା ବ୍ରଜତୀହ ଦାସ୍ୟଂ ସାଧ୍ୱୀ ସମାୟା କୁଚରିତ୍ରଯୁକ୍ତା
ଭୂମ୍ୟାତ୍ମଜର୍କ୍ଷେ କ୍ରମଶୋଂଶକେଷୁ ବକ୍ରାର୍କିଜୀବେନ୍ଦୁଜଭାର୍ଗବାନାମ୍ ।୩।

ମେଷ ବା ବୃଶ୍ଚିକରେ ଲଗ୍ନ ବା ଚନ୍ଦ୍ରଥିବ, ମଙ୍ଗଳ ତ୍ରିଂଶାଂଶରେ ଜନ୍ମହେଲେ ସ୍ତ୍ରୀ କନ୍ୟାବସ୍ଥାରେ ସ୍ୱଭାବ ନଷ୍ଟକରଥାଏ; ଶନି ତ୍ରିଂଶାଂଶରେ ଥିଲେ ଦାସୀ ହୁଏ; ବୃହସ୍ପତି ତ୍ରିଂଶାଂଶରେ ଥିଲେ ପତିବ୍ରତା ହୁଏ; ବୁଧ ତ୍ରିଂଶାଂଶରେ ଥିଲେ ମାୟାବିନୀ ହୁଏ; ଶୁକ୍ର ତ୍ରିଂଶାଂଶରେ ଥିଲେ ନିନ୍ଦିତ ଚରିତ୍ର ଯୁକ୍ତା ହୁଏ ।୩।

## ବୃଷ ବା ତୁଳାରେ ଲଗ୍ନ ଓ ଚନ୍ଦ୍ରଥିଲେ ବିଭିନ୍ନ ତ୍ରିଂଶାଂଶଫଳ

ଦୁଷ୍ଟା ପୁନର୍ଭୂଃ ସଗୁଣା କଳାଜ୍ଞା ଖ୍ୟାତା ଗୁଣୈଶ୍ଚାସୁରପୂଜ୍ୟଭର୍ଷେ
ସ୍ୟାଲ୍ଲାପଠୀ କ୍ଳୀବସମା ସତୀ ଚ ବୌଧେ ଗୁଣାଢ୍ୟା ପ୍ରବିକୀର୍ଣ୍ଣକାମା ।୪।

ବୃଷ ବା ତୁଳାରେ ଲଗ୍ନ ଓ ଚନ୍ଦ୍ର ଥାଇ ମଙ୍ଗଳ ତ୍ରିଂଶାଂଶରେ ଜନ୍ମ ହେଲେ ସ୍ତ୍ରୀ ଦୁଷ୍ଟା ହୁଏ; ଶନି ତ୍ରିଂଶାଂଶରେ ହେଲେ ପତିତ୍ୟାଗକରି ଅନ୍ୟ ପତି ବିବାହ କାରିଣୀ, ବୃହସ୍ପତି ତ୍ରିଂଶାଂଶରେ ହେଲେ ଉତ୍ତମ ଗୁଣଯୁକ୍ତା; ବୁଧ ତ୍ରିଂଶାଂଶରେ ଥିଲେ ଗୀତବାଦ୍ୟ ନୃତ୍ୟ ଚିତ୍ରାଦିରେ ନିପୁଣା; ଶୁକ୍ର ତ୍ରିଂଶାଂଶରେ ଜନ୍ମହେଲେ ବହୁ ସଦ୍‌ଗୁଣ ଯୁକ୍ତା ତଥା ପ୍ରସିଦ୍ଧା ହୁଏ ।

ମିଥୁନ ବା କନ୍ୟାରେ ଲଗ୍ନ ବା ଚନ୍ଦ୍ର ଥିଲେ ମଙ୍ଗଳ ତ୍ରିଂଶାଂଶରେ ଜନ୍ମ ହେଲେ କପଟଯୁକ୍ତା; ଶନି ତ୍ରିଂଶାଂଶରେ କ୍ଳୀବ ଗୁଣଯୁକ୍ତା (କାମଭାବ ରହିତା) ଗୁରୁ ତ୍ରିଂଶାଂଶରେ ପତିବ୍ରତା, ବୁଧ ତ୍ରିଂଶାଂଶରେ ବହୁଗୁଣଯୁକ୍ତା ଓ ଶୁକ୍ର ତ୍ରିଂଶାଂଶରେ ବ୍ୟଭିଚାରିଣୀ ହୁଏ ।୪।

## କର୍କଟ, ସିଂହ, ଧନୁ, ମୀନ, ମକର ତଥା କୁମ୍ଭରେ ଲଗ୍ନ ବା ଚନ୍ଦ୍ରଥିଲେ ବିଭିନ୍ନତ୍ରିଂଶାଂଶ ଫଳ

ସ୍ୱଚ୍ଛନ୍ଦା ପତିଘାତିନୀ ବହୁଗୁଣା ଶିଳ୍ପିନ୍ୟ ସାଧ୍ୱୀନ୍ଦୁଭେ
ନାଚୃତ୍ତ କୁଳଟାର୍କଭେ ନୃପବଧୂଃ ପୁଂଚେଷ୍ଟିତାଗମ୍ୟଗା ।
ଜୈବେ ନୈକଗୁଣାଲ୍ପରତ୍ୟତିଗୁଣା ବିଜ୍ଞାନଯୁକ୍ତା ସତୀ
ଦାସୀ ନୀଚରତାର୍କିଭେ ପତିରତା ଦୁଷ୍ଟାପ୍ରଜା ସ୍ୱାଂଶକୈଃ ।୫।

ଲଗ୍ନ ତଥା ଚନ୍ଦ୍ର କର୍କଟରେ ଥିଲେ, ମଙ୍ଗଳ ତ୍ରିଂଶାଂଶରେ ଜନ୍ମହେଲେ ସ୍ୱତନ୍ତ୍ରା (ଇଚ୍ଛାନୁରୂପ କର୍ମକାରିଣୀ); ଶନି ତ୍ରିଂଶାଂଶରେ ପତିଘାତିନୀ; ଗୁରୁ ତ୍ରିଂଶାଂଶରେ ବହୁଗୁଣ ଯୁକ୍ତା; ବୁଧ ତ୍ରିଂଶାଂଶରେ ଶିଳ୍ପକଳା ନିପୁଣା ଓ ଶୁକ୍ର ତ୍ରିଂଶାଂଶରେ ଜନ୍ମହେଲେ ହୀନଚରିତ୍ରା ହୁଏ ।

ଲଗ୍ନତଥା ଚନ୍ଦ୍ର ସିଂହରାଶିରେ ଥିଲେ, ମଙ୍ଗଳ ତ୍ରିଂଶାଂଶରେ ଜନ୍ମହେଲେ ସ୍ତ୍ରୀ ପୁରୁଷାକୃତିଯୁକ୍ତା ("ନ୍ରାକୃତି" ସ୍ଥଳେ କେହି କେହି "ବାଗ୍ମିତା" ପାଠାନ୍ତର କହନ୍ତି; ବାଗ୍ମିତା ଶବ୍ଦର ଅର୍ଥ ବହୁଭାଷିଣୀ) ହୁଏ; ଶନି ତ୍ରିଂଶାଂଶରେ ବ୍ୟଭିଚାରିଣୀ; ଗୁରୁ ତ୍ରିଂଶାଂଶରେ ରାଜରାଣୀ; ବୁଧ ତ୍ରିଂଶାଂଶରେ ପୁରୁଷତୁଲ୍ୟ-ଚେଷ୍ଟାଯୁକ୍ତା; ଶୁକ୍ର ତ୍ରିଂଶାଂଶରେ ଥିଲେ ଇତର ଜାତି, ଇତର ଧର୍ମ ବା ପୁତ୍ର, ଭ୍ରାତା ପ୍ରଭୃତି ଅଗମ୍ୟ ବ୍ୟକ୍ତିଙ୍କ ସହ ସଙ୍ଗମ କରେ ।

ଲଗ୍ନତଥା ଚନ୍ଦ୍ର ଧନୁ ବା ମୀନରେ ଥିଲେ ମଙ୍ଗଳ ତ୍ରିଂଶାଂଶରେ ଜନ୍ମ-ହେଲେ ବହୁଗୁଣଯୁକ୍ତା; ଶନି ତ୍ରିଂଶାଂଶରେ ଥିଲେ କାମଭୋଗରେ ବିଶେଷ ଇଚ୍ଛାହୀନା; ଗୁରୁ ତ୍ରିଂଶାଂଶରେ ଅତିଶୟ ଗୁଣଯୁକ୍ତା ବୁଧ ତ୍ରିଂଶାଂଶରେ ବିଶେଷ ବୁଦ୍ଧିମତୀ ଓ ଶୁକ୍ର ତ୍ରିଂଶାଂଶରେ ଜନ୍ମହେଲେ ଅସତୀ ହୁଏ ।

ମକର ବା କୁମ୍ଭରେ ଲଗ୍ନ ବା ଚନ୍ଦ୍ର ଥିଲେ ମଙ୍ଗଳ ତ୍ରିଂଶାଂଶରେ ଜନ୍ମ-ହେଲେ ଦାସୀ; ଶନି ତ୍ରିଂଶାଂଶରେ ନୀଚ ବ୍ୟକ୍ତିସହ ସହବାସ କାରିଣୀ, ଗୁରୁ ତ୍ରିଂଶାଂଶରେ ପତିଠାରେ ବିଶେଷ ଆସକ୍ତା; ବୁଧ ତ୍ରିଂଶାଂଶରେ ଦୁଷ୍ଟସ୍ୱଭାବ ଯୁକ୍ତା ଓ ଶୁକ୍ର ତ୍ରିଂଶାଂଶରେ ବନ୍ଧ୍ୟାହୁଏ ।୫।

## ପୂର୍ବୋକ୍ତଫଳର ବିଶେଷ ବିଚାର

ଶଶିଲଗ୍ନସମାଯୁକ୍ତୈଃ ଫଳଂ ତ୍ରିଂଶାଂଶକୈରିଦମ୍
ବଲାବଲ ବିକଲ୍ପେନ ତୟୋରୁକ୍ତଂ ବିଚିନ୍ତୟେତ୍ ।୬।

ଲଗ୍ନ ଓ ଚନ୍ଦ୍ରଙ୍କ ସ୍ଥିତିରୁ ବିଭିନ୍ନ ତ୍ରିଂଶାଂଶର ଫଳ କୁହାଗଲା । ଏମାନଙ୍କର ବଳାବଳରୁ ଫଳନିର୍ଣ୍ଣୟ କରିବା ଉଚିତ । ଲଗ୍ନ ଓ ଚନ୍ଦ୍ରର ତ୍ରିଂଶାଂଶ ଏକହେଲେ ଫଳପୂର୍ଣ୍ଣ ରୂପେ ଘଟିବ, ଉଭୟେ ଭିନ୍ନ ଭିନ୍ନ ହେଲେ ଲଗ୍ନ ଓ ଚନ୍ଦ୍ର ମଧ୍ୟରେ ଯେ ବଳବାନ୍ ତାହାର ଅନୁରୂପ ଫଳ ଘଟିବ ।୬।

## ସ୍ତ୍ରୀ ସହିତ ସ୍ତ୍ରୀର ସଙ୍ଗମ ଯୋଗ

ଦୃକ୍ଫଣ୍ଡାବସିତଅସିତୌ ପରସ୍ପରାଂଶେ
ଶୌକ୍ରେ ବା ଯଦି ଘଟରାଶିସମ୍ଭବୋଂଶଃ ।
ସ୍ତ୍ରୀଭିଃ ସ୍ତ୍ରୀ ମଦନବିଷାନଳଂ ପ୍ରଦୀପ୍ତଂ
ସଂଶାନ୍ତିଂ ନୟତି ନରାକୃତିସ୍ଥିତାଭିଃ ।୭।

ଶୁକ୍ର ଓ ଶନି ପରସ୍ପର ନବାଂଶରେ ଥିବେ ଓ ପରସ୍ପରକୁ ଦେଖୁଥିବେ କିମ୍ବା ବୃଷ ବା ତୁଳାଲଗ୍ନରେ, କୁମ୍ଭନବାଂଶ ହୋଇଥିଲେ ସ୍ତ୍ରୀ ସହ ସ୍ତ୍ରୀ ପୁରୁଷ

ବେଶ ଧାରଣ କରି ରମଣକ୍ରିୟା ସମ୍ପାଦନ କରେ ଓ ତଦ୍ୱାରା ତାହାର କାମାନଳ ଶାନ୍ତ ହୁଏ ।୭।

ଦ୍ର:—ଏହିଭଳି ଯୋଗରେ ସ୍ତ୍ରୀ ବିଶେଷ କାମାତୁରା ହୋଇଥାଏ ସେ ପୁରୁଷ ସଙ୍ଗମରେ ଶାନ୍ତି ଲାଭ ନକରି ବିଭିନ୍ନ ଉପାୟରେ କାମ ପ୍ରବୃତ୍ତିକୁ ଶାନ୍ତକରେ ।

## ସ୍ୱାମୀର ଲକ୍ଷଣାଦି ବିଚାର

ଶୂନ୍ୟେ କାପୁରୁଷୋ ବଲେଽସ୍ତି ଭବନେ ସୌମ୍ୟଗ୍ରହାବୀକ୍ଷିତେ
କ୍ଲୀବୋଽସ୍ତେ ବୁଧମନ୍ଦୟୋଶ୍ଚରଗୃହେ ନିତ୍ୟଂ ପ୍ରବାସାନ୍ୱିତଃ ।
ଉତ୍ସୃଷ୍ଟା ରବିଣା କୁଜେନ ବିଧବା ବାଲ୍ୟେଽସ୍ତରାଶିସ୍ଥିତେ
କନ୍ୟୈବାଶୁଭବୀକ୍ଷିତେଽର୍କତନୟେ ଦ୍ୟୂନେ ଜରାଂ ଗଚ୍ଛତି ।୮।

ଲଗ୍ନ ତଥା ଚନ୍ଦ୍ରର ସପ୍ତମ ସ୍ଥାନ ଗ୍ରହହୀନ ହେଲେ ବା କୌଣସି ଶୁଭ-ଗ୍ରହ ସେ ସ୍ଥାନମାନଙ୍କୁ ଦେଖୁନଥିଲେ ସ୍ତ୍ରୀର ସ୍ୱାମୀ କାପୁରୁଷ ହୁଏ (ନିନ୍ଦିତ କର୍ମକରେ ) ।

ଏହି ସପ୍ତମ ସ୍ଥାନରେ (ଲଗ୍ନ ବା ଚନ୍ଦ୍ରର) ବୁଧ ବା ଶନିଥିଲେ ସ୍ୱାମୀ ନପୁଂସକ ହୁଏ ।

ଏହି ସପ୍ତମସ୍ଥାନମାନ ଯଦି ଚରରାଶି ହୋଇଥାଏ ତେବେ ସ୍ୱାମୀ ପରଦେଶରେ ରହେ ।

ଏହି ସପ୍ତମ ସ୍ଥାନରେ ରବିଥିଲେ ଓ ପାପଦୃଷ୍ଟ ହେଉଥିଲେ ସ୍ତ୍ରୀ ପତି ଦ୍ୱାରା ତ୍ୟକ୍ତ ହୁଏ । ସପ୍ତମରେ ମଙ୍ଗଳ ରହି ପାପ ଦୃଷ୍ଟହେଲେ ବିଧବା ହୁଏ । ସପ୍ତମରେ ଶନିରହି ପାପଦୃଷ୍ଟ ହେଲେ ସ୍ତ୍ରୀ ଅବିବାହିତା ଅବସ୍ଥାରେ ବୃଦ୍ଧ ହୁଏ । ଲଗ୍ନ ତଥା ଚନ୍ଦ୍ରର ସପ୍ତମରେ ଭିନ୍ନ ଭିନ୍ନ ଗ୍ରହଥିଲେ ଲଗ୍ନ ଓ ଚନ୍ଦ୍ର ମଧ୍ୟରେ ଯେ ବଳବାନ୍ ତାହାର ଫଳମାନ ହେବ ।୮।

## ବୈଧବ୍ୟାଦି ବିଷମ ଯୋଗ

ଆଗ୍ନେୟୈର୍ବିଧବାସ୍ତରାଶିସହିତୈର୍ମିଶ୍ରୈଃ ପୁନର୍ଭୂର୍ଭବେତ୍
କ୍ରୂରେ ହୀନବଲେଽସ୍ତଗେ ସ୍ୱପତିନା ସୌମ୍ୟେକ୍ଷିତେ ପ୍ରୋଜ୍‌ଝିତା
ଅନ୍ୟୋନ୍ୟାଂଶଗୟୋଃ ସିତାବନିଜୟୋରନ୍ୟପ୍ରସକ୍ତାଙ୍ଗନା
ଦ୍ୟୂନେ ବା ଯଦି ଶୀତରଶ୍ମିସହିତୌ ଭର୍ତ୍ତୁସ୍ତଦାନୁଜ୍ଞୟା ।୯।

ଲଗ୍ନତଥା ଚନ୍ଦ୍ରର ସପ୍ତମରେ ବହୁପାପଗ୍ରହ ରହିଲେ ସ୍ତ୍ରୀ ବିଧବା ହୁଏ । ଯଦି ଏହି ଏହି ସ୍ଥାନରେ ଶୁଭତଥା ଅଶୁଭଗ୍ରହ ମିଶ୍ରିତଭାବେ ଥିବେ ତେବେ ଅପର ପତି ବିବାହ କରେ । ସପ୍ତମରେ କୌଣସି ଗୋଟିଏ ପାପଗ୍ରହ ନିର୍ବଳ ଭାବେ ଥିଲେ ଓ ତାକୁ ଶୁଭଗ୍ରହ ଦେଖୁଥିଲେ ସ୍ତ୍ରୀ ସ୍ୱାମୀଦ୍ୱାରା ପରିତ୍ୟକ୍ତା ହୁଏ ।

ଶୁକ୍ର ଓ ମଙ୍ଗଳ ପରସ୍ପର ନବାଂଶରେ ଥିଲେ ସ୍ତ୍ରୀ ବ୍ୟଭିଚାରିଣୀ ହୁଏ ।

ଚନ୍ଦ୍ର, ଶୁକ୍ର ଓ ମଙ୍ଗଳ ସହିତ ଯୁକ୍ତହୋଇ ସପ୍ତମରେ ଥିଲେ ସ୍ତ୍ରୀ ସ୍ୱାମୀର ଆଦେଶନେଇ ପରପୁରୁଷ ସହିତ ସଙ୍ଗମ କରେ ।୯।

## ନିଜର ମାତା ସହିତ ବ୍ୟଭିଚାରର ଯୋଗ

ସୌରିଭର୍କ୍ଷେ ଲଗ୍ନେ ସେନ୍ଦୁଶୁକ୍ରେ ମାତ୍ରା ସାର୍ଦ୍ଧଂ ବନ୍ଧକୀ ପାପଦୃଷ୍ଟେ
କୌଜେଽସ୍ତାଂଶେ ସୌରିଣା ବ୍ୟାଧିଯୋନିଶ୍ଚାରୁଶ୍ରୋଣୀ ବଲ୍ଲଭା-
ସଦ୍‌ଗ୍ରହାଂଶେ ।୧୦।

ମକର, କୁମ୍ଭ, ମେଷ ବା ବୃଶ୍ଚିକ ଏହି ଏହି ରାଶି ଲଗ୍ନ ହୋଇଥିବ, ସେଥିରେ ଚନ୍ଦ୍ରଥାଇ ଶୁକ୍ର ଯୁକ୍ତହେଲେ ଓ ପାପଦୃଷ୍ଟ ହେଲେ ସ୍ତ୍ରୀ ତାର ମା ସହିତ ବ୍ୟଭିଚାର କରେ ।

ସପ୍ତମ ସ୍ଥାନର ନବାଂଶ ମଙ୍ଗଳର ବା ଶନିର ହେଲେ (ସପ୍ତମ ଭାବ ସ୍ଫୁଟରୁ ନବାଂଶ ବାହାର କରିବେ) ଶନି ଦେଖୁଥିଲେ ବ୍ୟାଧିଯୁକ୍ତ ଯୋନି ହୋଇଥାଏ । ଶୁଭଗ୍ରହର ଗୃହ ବା ଶୁଭଗ୍ରହରଂ ନବାଂଶ ସପ୍ତମ ଭାବରେ ଥିଲେ ସେ ସ୍ତ୍ରୀ ଯୋନି ରୋଗହୀନା ଓ ପତି ମନୋରଞ୍ଜନ କାରିଣୀ ହୁଏ । ୧୦ ।

## ବୃଦ୍ଧସ୍ୱାମୀ ଆଦି ଯୋଗ

ବୃଦ୍ଧୋ ମୂର୍ଖଃ ସୂର୍ଯ୍ୟଜର୍କ୍ଷେଽଂଶକେ ବା ସ୍ତ୍ରୀଲୋଲଃ ସ୍ୟାତ୍‌କ୍ରୋଧନଶ୍ଚାବନିଜସ୍ୟେ
ଶୌକ୍ରେ କାନ୍ତୋଽତୀବ ସୌଭାଗ୍ୟ ଯୁକ୍ତୋ ବିଦ୍ୱାନ୍‌ଭର୍ତ୍ତା ନୈପୁଣଞ୍ଚ
ବୌଧେ ।୧୧।

ଲଗ୍ନର ସପ୍ତମ ଶନିର ଗୃହ ହେଲେ କିମ୍ବା ସପ୍ତମ ସ୍ଥାନ ମକର ବା କୁମ୍ଭ ନବାଂଶରେ ରହିଲେ ସ୍ୱାମୀ ବୃଦ୍ଧ ଓ ମୂର୍ଖହୁଏ ।

ସପ୍ତମ ସ୍ଥାନ ମଙ୍ଗଳର ଗୃହ (ମେଷ ବ ବିଛା) ହେଲେ ବା ଏହି ଏହି ନବାଂଶ ହେଲେ ସ୍ୱାମୀ ଅନ୍ୟ ସ୍ତ୍ରୀ ଠାରେ ଆସକ୍ତ ଓ କ୍ରୋଧଶୀଳ ହୁଏ ।

ସପ୍ତମସ୍ଥାନ ଶୁକ୍ରର ଗୃହ (ବୃଷ ବା ତୁଳା) ହେଲେ ବା ସେହି ସେହି ନବାଂଶରେ ସପ୍ତମସ୍ଥାନ ରହିଲେ ସ୍ୱାମୀ ଅତିସୁନ୍ଦର ଓ ସୌଭାଗ୍ୟ ଯୁକ୍ତ ହୁଏ ।

ସପ୍ତମସ୍ଥାନ ବୁଧର ଗୃହହେଲେ (ମିଥୁନ ବା କନ୍ୟା) କିମ୍ବା ସେହି ସେହି ନବାଂଶ ସପ୍ତମରେ ରହିଲେ ସ୍ୱାମୀ ବିଦ୍ୱାନ ଓ ସୂକ୍ଷ୍ମଦୃଷ୍ଟି ସମ୍ପନ୍ନ ହୁଏ ।

## ପତିର ସତ୍ ସ୍ୱଭାବାଦ ଯୋଗ

ମଦନବଶଗତୋ ମୃଦୁଶ୍ଚ ଚନ୍ଦ୍ରେ ତ୍ରିଦଶଗୁରୌ ଗୁଣବାନ୍ ଜିତେନ୍ଦ୍ରିୟଶ୍ଚ
ଅତିମୃଦୁରତିକର୍ମକୃଚ୍ଚ ସୌମ୍ୟେ ଭବତି ଗୃହେଽସ୍ତମୟୁସ୍ଥିତେଽଂଶକେ ବା ।୧୨।

ଲଗ୍ନର ସପ୍ତମସ୍ଥାନ କର୍କଟଲଗ୍ନ ବା କର୍କଟ ନବାଂଶ ଯଦି ହେବ ତେବେ ସ୍ୱାମୀ ବିଶେଷ କାମାତୁର ତଥା କୋମଳ ସ୍ୱଭାବ ଯୁକ୍ତ ହେବ ।

ଲଗ୍ନର ସପ୍ତମସ୍ଥାନ ଗୁରୁଗୃହ (ଧନୁ ବା ମୀନ) ହେଲେ ବା ଏହି ଏହି ରାଶିର ନବାଂଶ ସପ୍ତମରେ ରହିଲେ ସ୍ତ୍ରୀର ସ୍ୱାମୀ ଗୁଣବାନ୍ ଓ ଜିତେନ୍ଦ୍ରିୟ ହୁଏ ।୧୨।

ଲଗ୍ନ ସିଂହ ବା ସିଂହ ନବାଂଶରେ ହେଲେ ପତି ଅତିମୃଦୁ ଓ ବହୁ-କର୍ମକାରୀ ହୁଏ ।

ଈର୍ଷ୍ୟାନ୍ୱିତା ସୁଖପରା ଶଶିଶୁକ୍ରଲଗ୍ନେ ଜ୍ଞେନ୍ଦ୍ୱୋଃ କଳାସୁନିପୁଣା ସୁଖିତା ଗୁଣାଢ୍ୟା
ଶୁକ୍ରଜ୍ଞୟୋସ୍ତୁ ରୁଚିରା ସୁଭଗା କଳାଜ୍ଞା ତ୍ରିଷ୍ୱପ୍ୟନେକବସୁସୌଖ୍ୟଗୁଣା
ଶୁଭେଷୁ ।୧୩।

ଲଗ୍ନରେ ଚନ୍ଦ୍ର ଓ ଶୁକ୍ର ଥିଲେ ସ୍ତ୍ରୀ ଈର୍ଷ୍ୟାନ୍ୱିତା (ପରର ସୁଖ ଦେଖିଲେ ଦୁଃଖିତ ହୁଏ) ଓ ସୁଖଯୁକ୍ତ ହୁଏ ।

ଲଗ୍ନରେ ବୁଧ ଓ ଚନ୍ଦ୍ର ଥିଲେ ସ୍ତ୍ରୀ କଳା (ଗୀତ, ବାଦ୍ୟ, ନୃତ୍ୟ) ନିପୁଣା ହୁଏ ।

ଲଗ୍ନରେ ଶୁକ୍ର ଓ ବୁଧ ଥିଲେ ସ୍ତ୍ରୀ ସମସ୍ତଙ୍କର ପ୍ରଶଂସା ପାଏ, ସେ ସୌନ୍ଦର୍ଯ୍ୟ ଯୁକ୍ତ ଓ କଳାଶାସ୍ତ୍ର ନିପୁଣା ହୁଏ ।

ଲଗ୍ନରେ ଶୁକ୍ର, ବୁଧ ତଥା ଗୁରୁ ରହିଲେ ସ୍ତ୍ରୀ ବହୁଧନ ଯୁକ୍ତା, ସୌଖ୍ୟ ଯୁକ୍ତା ଓ ବହୁଗୁଣ ଯୁକ୍ତା ହୁଏ ।୧୩।

## ବୈଧବ୍ୟାଦ ଯୋଗର ସମୟ

କ୍ରୂରେଽଷ୍ଟମେ ବିଧବତା ନିଧନେଶ୍ୱରୋଽଂଶେ
ଯସ୍ୟ ସ୍ଥିତୋ ବୟସି ତସ୍ୟ ସମେ ପ୍ରଦିଷ୍ଟା

ସଗ୍ରହାର୍ଥଗେଷ୍ଟୁ ମରଣଂ ସ୍ୱୟମେବ ତସ୍ୟାଃ
କନ୍ୟାଳିଗୋହରେଷ୍ଟୁ ଗୃହ୍ନସୁତତ୍ୱମଧୌ ।୧୪।

ଲଗ୍ନର ଅଷ୍ଟମରେ ପାପଗ୍ରହଥିଲେ, ଅଷ୍ଟମାଧିପତି ଯେଉଁଗ୍ରହର ନବାଂଶରେ ଥିବ ତାହାର ଦଶାରେ ସ୍ତ୍ରୀ ବିଧବା ହୁଏ । କେହି କେହି ବିବାହପରେ ଗ୍ରହର ବୟସାନୁରୂପ ବର୍ଷଠାରେ ବିଧବାହେବା କଥା କହନ୍ତି । ଗ୍ରହମାନଙ୍କର ବୟସ ଅଷ୍ଟମ ଅଧ୍ୟାୟର ନବମ ଶ୍ଳୋକରେ ଦେଖନ୍ତୁ ।

ଦୃ:—ଚନ୍ଦ୍ର ୧ ବର୍ଷ, କୁଜ ୨ ବର୍ଷ, ବୁଧ ୯ ବର୍ଷ, ଶୁକ୍ର ୨୦ ବର୍ଷ, ଗୁରୁ ୧୮ ବର୍ଷ, ରବି ୨୦ ବର୍ଷ ଓ ଶନିର ୫୦ ବର୍ଷ) ମନେକର ମଙ୍ଗଳ ନବାଂଶରେ ଅଷ୍ଟମାଧିପତି ଅଛି ତେବେ ବିବାହର ଦୁଇବର୍ଷ ଠାରେ ସ୍ତ୍ରୀ ବିଧବା ହେବ ।

ଅଷ୍ଟମରେ ପାପଗ୍ରହଥାଇ ଦ୍ୱିତୀୟରେ ଶୁଭଗ୍ରହମାନେ ଥିଲେ ସ୍ତ୍ରୀ ସଧବା ଅବସ୍ଥାରେ ମରିଥାଏ ।

ଚନ୍ଦ୍ର କନ୍ୟା, ବୃଶ୍ଚିକ, ବୃଷ ବା ସିଂହରାଶିରେ ଥିଲେ ଅଳ୍ପ ପୁତ୍ର ଜାତ ହୁଅନ୍ତି ।

## ବହୁପୁରୁଷଗାମିନୀ ଏବଂ ବ୍ରହ୍ମବାଦନୀ ଯୋଗ

ସୌରେ ମଧ୍ୟବଳେ ବଳେନ ରହିତୈଃ ଶୀତାଂଶୁଶୁକ୍ରେନ୍ଦୁଜୈଃ
ଶେଷୈର୍ବୀର୍ଯ୍ୟସମନ୍ୱିତୈଃ ପୁରୁଷିଣୀ ଯଦ୍ୟୋଜରାଶ୍ୟୁଦ୍ଗମଃ
ଜୀବାରାସ୍ଫୁଜିଦୈନ୍ଦବେଷୁ ବଳିଷୁ ପ୍ରାଗ୍‌ଲଗ୍ନରାଶୌ ସମେ
ବିଖ୍ୟାତା ଭୁବି ନୈକଶାସ୍ତ୍ରନିପୁଣା ସ୍ତ୍ରୀ ବ୍ରହ୍ମବାଦନ୍ୟପି ।୧୫।

ଶନି ମଧ୍ୟମଭାବରେ ବଳଯୁକ୍ତ ହୋଇଥିଲେ, ଚନ୍ଦ୍ର, ଶୁକ୍ର ଏବଂ ବୁଧ ବଳହୀନ ହୋଇଥିଲେ, ରବି, ମଙ୍ଗଳ ଏବଂ ଗୁରୁ ବଳଯୁକ୍ତ ହୋଇ ବିଷମ ରାଶିରେ ଥିଲେ ଓ ଏଥିରୁ କୌଣସି ବିଷମରାଶି ଲଗ୍ନହେଲେ ସ୍ତ୍ରୀ ବହୁତ ପୁରୁଷ ସମ୍ଭୋଗ କରେ ।

ଗୁରୁ, ମଙ୍ଗଳ, ଶୁକ୍ର ଏବଂ ବୁଧ ବଳଯୁକ୍ତ ହୋଇ ସମରାଶିରେ ଥିଲେ ଓ ସମରାଶି ମଧ୍ୟରୁ କୌଣସି ରାଶି ଲଗ୍ନହେଲେ ସ୍ତ୍ରୀ ବିଖ୍ୟାତା, ବହୁଶାସ୍ତ୍ର କୁଶଳା ଏବଂ ବ୍ରହ୍ମବାଦନୀ ହୁଏ ।

## ସ୍ତ୍ରୀର ସନ୍ୟାସ ଗ୍ରହଣ ଯୋଗ

ପାପେଽସ୍ତେ ନବମଗତଗ୍ରହସ୍ୟତୁଲ୍ୟାଂ ପ୍ରବ୍ରଜ୍ୟାଂ ଯୁବତିରୁପୈତ୍ୟସଂଶୟେନ
ଉଦ୍ୱାହେ ବରଣବିଧୌ ପ୍ରଦାନକାଲେ ଚିନ୍ତାୟାମପି ସକଲଂ ବିଧେୟମେତତ୍ ।୧୬।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ସ୍ତ୍ରୀଜାତକାଧ୍ୟାୟଶ୍ଚତୁର୍ବିଂଶଃ

ସପ୍ତମରେ ପାପଗ୍ରହଥିଲେ ଓ ନବମରେ କୌଣସି ଗ୍ରହଥିଲେ ସ୍ତ୍ରୀ ନବମସ୍ଥ ଗ୍ରହାନୁରୂପ ସନ୍ୟାସିନୀ ହେବ । ନବମରେ ଗ୍ରହନଥିଲେ ଏ ଯୋଗ ହେବନାହିଁ ।

ଏହି ଅଧ୍ୟାୟରେ କଥିତ ସମସ୍ତ ଯୋଗ ତଥା ଦୁର୍ଯୋଗ ସ୍ତ୍ରୀର ଜନ୍ମକାଳ ଭଳି, ବିବାହବେଳରୁ, କନ୍ୟାଦାନ ବେଳରୁ ତଥା ପ୍ରଶ୍ନକାଳର ଗ୍ରହସ୍ଥିତିରୁ ମଧ୍ୟ କୁହାଯାଇ ପାରିବ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକଗ୍ରନ୍ଥର ସ୍ତ୍ରୀଜାତକାଧ୍ୟାୟନାମକ ଚତୁର୍ବିଂଶତି ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

# ନୈର୍ଯାଣିକାଽଧ୍ୟାୟଃ ପଞ୍ଚବିଂଶଃ

## ମୃତ୍ୟୁକାରଣ ଓ ମୃତ୍ୟୁସ୍ଥାନ କଥନ

ମୃତ୍ୟୁର୍ମୃତ୍ୟୁଗୃହେକ୍ଷଣେନ ବଲିଭସ୍ତଦ୍ଧାତୁକୋପୋଦ୍ଭବ-
ସ୍ତତ୍ସଂଯୁକ୍ତଭଗାତ୍ରଜୋ ବହୁଭବୋ ବୀର୍ଯାନ୍ୱିତୈର୍ଭୂରିଭିଃ
ଅଗ୍ନ୍ୟମ୍ବାୟୁଧଜୋ ଜ୍ୱରାମୟକୃତସ୍ତୃଟ୍କ୍ଷୁତ୍କୃତଶ୍ଚାଷ୍ଟମେ
ସୂର୍ଯାଦ୍ୟୈର୍ନିଧନେ ଚରାଦିଷୁ ପରସ୍ୱାଧ୍ୱପ୍ରଦେଶେଷ୍ୱିତି ।୧।

ଅଷ୍ଟମ ସ୍ଥାନକୁ ଦେଖୁଥିବା ବଳବାନ୍ ଗ୍ରହର ଧାତୁ କୋପରେ ମୃତ୍ୟୁ ଘଟିବ । ଯଦି ଅଷ୍ଟମ ସ୍ଥାନରେ ଗ୍ରହ ନଥିବେ, ତେବେ ଗ୍ରହଦୃଷ୍ଟି ଗ୍ରହଣ କରାଯିବ । ରବି ଦେଖୁଥିଲେ ପୈତ୍ତିକ, ଚନ୍ଦ୍ର ଦେଖୁଥିଲେ ବାତକଫ, ମଙ୍ଗଳ ଦେଖୁଥିଲେ ପୈତ୍ତିକ, ବୁଧ ଦେଖୁଥିଲେ ତ୍ରିଦୋଷଜ, ଗୁରୁ ଦେଖୁଥିଲେ କଫ, ଶୁକ୍ର ଦେଖୁଥିଲେ ବାତପିତ୍ତ ଓ ଶନି ଦେଖୁଥିଲେ ବାତିକ ରୋଗରେ ମରଣ ହୁଏ ।

ଏହି ଅଷ୍ଟମ ସ୍ଥାନର ଯେଉଁ ରାଶି, କାଳପୁରୁଷର ଯେଉଁ ଅଙ୍ଗରେ ସେହି ରାଶି ପଡ଼ିଲା, ସେହି ଅଙ୍ଗରେ ସେହି ସେହି ରୋଗର ପ୍ରାବଲ୍ୟ ଦେଖାଯାଏ ।

ବଳବାନ୍ ବହୁତ ଗ୍ରହ ଅଷ୍ଟମ ସ୍ଥାନକୁ ଦେଖିଲେ ବହୁପ୍ରକାର ରୋଗରେ ମୃତ୍ୟୁ ଘଟିବ ।

ଯଦି ଅଷ୍ଟମ ସ୍ଥାନରେ ରବିଥିବ ତେବେ ଅଗ୍ନିଦ୍ୱାରା, ଚନ୍ଦ୍ରଥିଲେ ଜଳ-ଦ୍ୱାରା, ମଙ୍ଗଳ ଥିଲେ ଶସ୍ତ୍ରଦ୍ୱାରା, ବୁଧଥିଲେ ଜ୍ୱରଦ୍ୱାରା, ଗୁରୁଥିଲେ ଅଜ୍ଞାତ ରୋଗଦ୍ୱାରା, ଶୁକ୍ରଥିଲେ ତୃଷାଦ୍ୱାରା ଓ ଶନିଥିଲେ କ୍ଷୁଧାଦ୍ୱାରା ମୃତ୍ୟୁ ଘଟେ ।

ଅଷ୍ଟମ ସ୍ଥାନ ଚର ରାଶିହେଲେ ପରଦେଶରେ, ସ୍ଥିରରାଶି ହେଲେ ସ୍ୱଦେଶରେ ଓ ଦ୍ୱିସ୍ୱଭାବ ରାଶିହେଲେ ମାର୍ଗରେ ମରଣ ଘଟେ ।୧।

## ଶିଳାଘାତ, କୂପପତନ, ବନ୍ଧୁଦ୍ୱାରା ବା ଜଳମଜ୍ଜନରେ ମୃତ୍ୟୁ ଯୋଗ

ଶୈଳାଗ୍ରାଭିହତସ୍ୟ ସୂର୍ଯ୍ୟକୁଜୟୋର୍ମୃତ୍ୟୁଃ ଖବନ୍ଧୁସ୍ଥୟୋଃ
କୂପେ ମନ୍ଦଶଶାଙ୍କଭୂମିତନୟୈର୍ବନ୍ଧ୍ୱସ୍ତକର୍ମସ୍ଥିତୈଃ ।
କନ୍ୟାୟାଂ ସ୍ୱଜନାଦ୍ଧିମୋଷ୍ଣକରୟୋଃ ପାପଗ୍ରହୈର୍ଦୃଷ୍ଟୟୋଃ
ସ୍ୟାତାଂ ଯଦ୍ୟୁଭୟୋଦୟେଽର୍କଶଶିନୌ ତୋୟେ ତଦା ମଜ୍ଜିତଃ ।୨।

ଚତୁର୍ଥ ତଥା ଦଶମରେ ରବି ଓ ମଙ୍ଗଳ ଥିଲେ ଜାତକର ପଥର ଆଘାତରେ ମୃତ୍ୟୁ ଘଟେ ।

ଶନି ଚତୁର୍ଥରେ, ଚନ୍ଦ୍ର ସପ୍ତମରେ, ମଙ୍ଗଳ ଦଶମରେ ଥିଲେ ଜାତକ କୂପରେ ପଡ଼ି ମରିଯାଏ ।

କନ୍ୟା ରାଶିରେ ରବି ଓ ଚନ୍ଦ୍ର ଥିଲେ ଏବଂ ପାପଗ୍ରହମାନେ ସେମାନଙ୍କୁ ଦେଖୁଥିଲେ ନିଜର ଆତ୍ମୀୟ ଦ୍ୱାରା ମୃତ୍ୟୁ ଘଟେ ।

ଲଗ୍ନ ଦ୍ୱିସ୍ୱଭାବ ରାଶିରେ ଥିଲେ ଓ ଲଗ୍ନରେ ରବି ତଥା ଚନ୍ଦ୍ର ଥିଲେ ଜଳରେ ବୁଡ଼ିଯିବା ଫଳରେ ମୃତ୍ୟୁ ଘଟେ ।୨।

## ଜଳୋଦର ରୋଗ, ଶସ୍ତ୍ର ବା ଅଗ୍ନି ହେତୁକ, କ୍ଷୟରୋଗ, ଦଉଡ଼ି ଦେବା ବା ଅଗ୍ନିରେ ପୋଡ଼ିମରିବା ଯୋଗ

ମନ୍ଦେ କର୍କଟଗେ ଜଲୋଦରକୃତୋ ମୃତ୍ୟୁର୍ମୃଗାଙ୍କେ ମୃଗେ
ଶସ୍ତ୍ରାଗ୍ନିପ୍ରଭବଃ ଶଶିନ୍ୟଶୁଭୟୋର୍ମଧ୍ୟେ କୁଜର୍କ୍ଷେ ସ୍ଥିତେ ।

କନ୍ୟାସ୍ଥାଂ ରୁଧିରଶୋଷଜନିତମ୍ ତଦ୍‌ବଦ୍ ସ୍ଥିତେ ଶୀତଗୌ
ସୌରର୍ଜେ ଯଦି ତଦ୍‌ବଦେବ ହିମଗୌ ରଜ୍ଜ୍ୱାଗ୍ନିପାତୈଃ କୃତଃ ।୩।

ଶନି କର୍କଟରେ, ଚନ୍ଦ୍ର ମକରରେ ଥିଲେ ଜଳୋଦର ରୋଗରେ ମୃତ୍ୟୁ ହୁଏ । ମଙ୍ଗଳ ଗୃହରେ ଥିବା ଚନ୍ଦ୍ର ଦୁଇଟି ପାପଗ୍ରହର ମଧ୍ୟରେ ରହିଲେ ଶସ୍ତ୍ରରେ ବା ଅଗ୍ନି ଦ୍ୱାରା ମୃତ୍ୟୁ ଘଟେ ।

ଚନ୍ଦ୍ର କନ୍ୟା ରାଶିରେ ରହି ପାପଗ୍ରହମାନଙ୍କ ମଧ୍ୟରେ ରହିଲେ ରକ୍ତ-ଦୂଷିତ ହେତୁ ବା କ୍ଷୟରୋଗରେ ମରଣ ହୁଏ ।

ଶନିର ଗୃହରେ ଥିବା ଚନ୍ଦ୍ର ପାପଗ୍ରହମାନଙ୍କ ମଧ୍ୟରେ ରହିଲେ ଜାତକ ଦଉଡ଼ି ଦେଇ, ଅଗ୍ନିଦଗ୍ଧ ହୋଇ ବା ଉଚ୍ଚରୁ ପଡ଼ିଯାଇ ମରିଥାଏ ।୩।

ଦ୍ର: — ପାପଗ୍ରହମାନଙ୍କ ମଧ୍ୟରେ କହିଲେ ଉଭୟ ପାର୍ଶ୍ୱ ରାଶିରେ ଥିବା ପାପଗ୍ରହ ଏବଂ ଏକରାଶିରେ ଭିନ୍ନ ଅଂଶରେ ଥାଇ ଉଭୟ ପାର୍ଶ୍ୱରେ ଥିବା ପାପଗ୍ରହଙ୍କୁ ବୁଝିବେ । ଯଥା—ମେଷରେ ଚନ୍ଦ୍ର ଥିବ, ମୀନରେ ରବି ଓ ବୃଷରେ ମଙ୍ଗଳ ଥିଲେ ପାପମଧ୍ୟସ୍ଥ ଚନ୍ଦ୍ର ହେଲା । ମନେକର ସେହି ଚନ୍ଦ୍ର ମେଷର ୧୦ ଅଂଶରେ ଅଛି । ରବି ମେଷର ୭ ଅଂଶରେ ଓ ମଙ୍ଗଳ ମେଷର ୧୨ ଅଂଶରେ ଅଛି, ତେବେ ମଧ୍ୟ ଚନ୍ଦ୍ର ପାପ ମଧ୍ୟସ୍ଥ ବୋଲି ଧରାଯିବ ।

## ବନ୍ଧନ ତଥା ସ୍ତ୍ରୀହେତୁକ ମରଣ ଯୋଗ

ବନ୍ଧାଦ୍ଧୀନବମସ୍ଥୟୋରଶୁଭୟୋଃ ସୌମ୍ୟଗ୍ରହାଦୃଷ୍ଟୟୋ-
ର୍ଦ୍ରେଷ୍କାଣୈଶ୍ଚ ସପାଶସର୍ପନିଗଡୈଶ୍ଛିଦ୍ରସ୍ଥିତୈର୍ବନ୍ଧତଃ ।
କନ୍ୟାୟାମଶୁଭାନ୍ୱିତେଽସ୍ତମୟଗେ ଚନ୍ଦ୍ରେ ସିତେ ମେଷଗେ
ସୂର୍ଯ୍ୟେ ଲଗ୍ନଗତେ ଚ ବିଦ୍ଧି ମରଣଂ ସ୍ତ୍ରୀହେତୁକଂ ମନ୍ଦିରେ ।୪।

ଲଗ୍ନର ପଞ୍ଚମ ଓ ନବମରେ ପାପଗ୍ରହମାନେ ଥିବେ, ଏମାନଙ୍କୁ ଶୁଭ-ଗ୍ରହମାନେ ଦେଖୁନଥିବେ ତେବେ ଜାତକର ବନ୍ଧନରେ ମୃତ୍ୟୁ ଘଟିବ ।

ଅଷ୍ଟମ ସ୍ଥାନ ସର୍ପ ବା ନିଗଡ଼ ଦ୍ରେକ୍କାଣରେ ରହିଥିଲେମଧ୍ୟ ବନ୍ଧନରେ ମୃତ୍ୟୁ ଘଟେ । ସର୍ପ ଦ୍ରେକ୍କାଣ:—କର୍କଟର ଦ୍ୱିତୀୟ ଓ ତୃତୀୟ ଦ୍ରେକ୍କାଣ ବୃଶ୍ଚିକର ପ୍ରଥମ ଓ ଦ୍ୱିତୀୟ ଏବଂ ମୀନର ତୃତୀୟ ଦ୍ରେକ୍କାଣ, ନିଗଡ଼ ଦ୍ରେକ୍କାଣ:—ମକରର ପ୍ରଥମ ଦ୍ରେକ୍କାଣ । ସପ୍ତମସ୍ଥ ଚନ୍ଦ୍ର ପାପଗ୍ରହଯୁକ୍ତ ହୋଇ କନ୍ୟା ରାଶିରେ; ମୀନରେ ରବି ଓ ମେଷରେ ଶୁକ୍ର ଥିଲେ ଜାତକ ନିଜର ଗୃହରେ କୌଣସି ସ୍ତ୍ରୀ ହେତୁକ ମୃତ୍ୟୁମୁଖରେ ପଡ଼ିଥାଏ ।୪।

### ଶୂଳାସ୍ତ୍ରଦ୍ୱାରା ବା କାଷ୍ଠାଦ ଆଘାତରେ ମୃତ୍ୟୁଯୋଗ

ଶୂଲୋଦ୍ଭିନ୍ନତନୁଃ ସୁଖେଽବନିସୁତେ ସୂର୍ଯେଽପି ବା ଖେ ଯମେ
ସପ୍ତକ୍ଷୀଣହିମାଂଶୁଭିଶ୍ଚ ଯୁଗପତ୍ ପାପୈସ୍ତ୍ରିକୋଣାଦ୍ୟଗୈଃ
ବନ୍ଧୁସ୍ଥେ ଚ ରବୌ ବିୟତ୍ୟବନିଜେ କ୍ଷୀଣେନ୍ଦୁସଂବୀକ୍ଷିତେ
କାଷ୍ଠେନାଭିହତଃ ପ୍ରୟାତି ମରଣଂ ସୂର୍ଯାତ୍ମଜେନେକ୍ଷିତେ ।୫।

ଚତୁର୍ଥରେ ମଙ୍ଗଳ ରବିଯୁକ୍ତ ହୋଇଥିଲେ, ଦଶମରେ ଶନିଥିଲେ ଶୂଳାସ୍ତ୍ରଦ୍ୱାରା (ଭୁଷିଦେବା ଫଳରେ) ମରଣ ଘଟେ ।

କ୍ଷୀଣଚନ୍ଦ୍ର ପାପଗ୍ରହଯୁକ୍ତ ହୋଇ ପଞ୍ଚମ, ନବମ ବା ଲଗ୍ନରେ ଥିଲେ ଶୂଳାସ୍ତ୍ରଦ୍ୱାରା ମରଣ ହୁଏ ।

ରବି ଚତୁର୍ଥରେ, ମଙ୍ଗଳ ଦଶମରେ ଥାଇ କ୍ଷୀଣଚନ୍ଦ୍ର ଦ୍ୱାରା ଦୃଷ୍ଟହେଲେ ଶୂଳାସ୍ତ୍ରଦ୍ୱାରା ମରଣ ହୁଏ ।

ରବି ଚତୁର୍ଥରେ, ମଙ୍ଗଳ ଦଶମରେ ଥାଇ ଶନିଦ୍ୱାରା ଦୃଷ୍ଟହେଲେ ଜାତକ କାଷ୍ଠର ଆଘାତରେ ମରିଥାଏ ।୫।

### ଲଗୁଡ଼ (ଠେଙ୍ଗା) ଧୂମ, ଅଗ୍ନି, ବନ୍ଧନ, ଆଘାତ ହେତୁକ ମୃତ୍ୟୁଯୋଗ

ରନ୍ଧ୍ରାସ୍ପଦାଂଗହିବୁକୈର୍ଲଗୁଡ଼ାହତାଙ୍ଗଃ ପ୍ରକ୍ଷୀଣଚନ୍ଦ୍ରରୁଧିରାର୍କିଦିନେଶଯୁକ୍ତୈଃ
ତୈରେବ କର୍ମନବମୋଦୟପୁତ୍ରସଂସ୍ଥୈର୍ଧୂମାଗ୍ନିବନ୍ଧନଶରୀରନିକୁଟ୍ଟନାନ୍ତଃ ।୬।

ଅଷ୍ଟମରେ କ୍ଷୀଣଚନ୍ଦ୍ର, ଦଶମରେ ମଙ୍ଗଳ, ଲଗ୍ନରେ ଶନି, ଚତୁର୍ଥରେ ରବି ଥିଲେ ଜାତକ ଲଗୁଡ଼ (ଠେଙ୍ଗା) ଆଘାତରେ ମରିଥାଏ ।

ଦଶମରେ କ୍ଷୀଣଚନ୍ଦ୍ର, ନବମରେ ମଙ୍ଗଳ, ଲଗ୍ନରେ ଶନି, ପଞ୍ଚମରେ ରବିଥିଲେ ଜାତକ ଧୂମ, ଅଗ୍ନି, ବନ୍ଧନ କିମ୍ବା କାଷ୍ଠାଦିରେ ପ୍ରହାର ହେତୁକ ମରଣଲାଭ କରେ ।୬।

### ଅସ୍ତ୍ର, ଅଗ୍ନି, ରାଜକୋପ ଓ ବିଷାକ୍ତ କ୍ଷତହେତୁକ ମୃତ୍ୟୁଯୋଗ

ବନ୍ଧ୍ୱସ୍ତକର୍ମସହିତୈଃ କୁଜସୂର୍ଯମନ୍ଦୈ-
ର୍ନିର୍ଯାଣମାୟୁଧଶିଖିକ୍ଷିତିପାଳକୋପୈଃ
ସୌରେନ୍ଦୁଭୂମିତନୟୈଃ ଖସୁଖାସ୍ପଦସ୍ଥୈ
ର୍ଜ୍ଞେୟଃ କ୍ଷତକ୍ରିମିକୃତଶ୍ଚ ଶରୀରଘାତଃ ।୭।

ଲଗ୍ନର ଚତୁର୍ଥରେ ମଙ୍ଗଳ, ସପ୍ତମରେ ରବି, ଦଶମରେ ଶନି ଥିଲେ ଜାତକ ଶସ୍ତ୍ର, ଅଗ୍ନି ଅଥବା ରାଜକୋପରୁ ମୃତ୍ୟୁଲାଭ କରେ ।

ଶନି ଦ୍ୱିତୀୟରେ, ଚନ୍ଦ୍ର ଚତୁର୍ଥରେ, ମଙ୍ଗଳ ଦଶମରେ ଥିଲେ କ୍ଷତହୋଇ ସେଥିରେ କୀଟ ଜାତହେବା ଫଳରେ ପ୍ରାଣନାଶ ହୁଏ ।୭।

## ଯାନରୁ ପଡ଼ିବା, ଯନ୍ତ୍ରହେତୁକ, ତଥାବଷ୍ଟାଦିରେ ପଡ଼ି ମରିବା ଯୋଗ

ସ୍ୱଚ୍ଛେଽର୍କେଽବନିଜେ ରସାତଳଗତେ ଯାନପ୍ରପାତାଦ୍‌ବଧୋ
ଯନ୍ତ୍ରୋତ୍ପୀଡନଜଃ କୁଜେଽସ୍ତମୟଗେ ସୌରେନ୍ଦୁନାକ୍ଷ୍ୟଦ୍ଭମେ ।
ବିଣ୍‌ମଧ୍ୟେ ରୁଧିରାର୍କିଶୀତକିରଣୈର୍ଜୂକାଜସୌରର୍କ୍ଷଗୈ-
ର୍ଯାତୈର୍ବା ଗଳଚନ୍ଦ୍ରସୂର୍ଯ୍ୟରୁଧିରୈର୍ବ୍ୟୋମାସ୍ତବନ୍ଧ୍ୱାହ୍ୱୟାନ୍ ।୮।

ଦଶମରେ ରବି, ଚତୁର୍ଥରେ ଚନ୍ଦ୍ର ଓ ମଙ୍ଗଳ ଥିଲେ ଜାତକ ଯାନରୁ ପଡ଼ି ମରିଥାଏ ।

ସପ୍ତମରେ ମଙ୍ଗଳ, ଲଗ୍ନରେ ଶନି, ଚନ୍ଦ୍ର ଓ ରବି ଥିଲେ ଯନ୍ତ୍ର ହେତୁକ ମରଣ ଘଟେ ।

ମଙ୍ଗଳ ତୁଳାରେ, ଶନି ମେଷରେ, ଚନ୍ଦ୍ର ମକର ବା କୁମ୍ଭରେ ଥିଲେ ଜାତକ ବିଷ୍ଠା (ମଇଳା ଜମାହେବା ସ୍ଥାନ ବା ସେପରି କୌଣସି ଦୁର୍ଗନ୍ଧଯୁକ୍ତ ପଦାର୍ଥ ଖାତ ଇତ୍ୟାଦିରେ) ମଧ୍ୟରେ ପଡ଼ି ମରେ । କ୍ଷୀଣଚନ୍ଦ୍ର ଦଶମରେ, ରବି ସପ୍ତମରେ, ମଙ୍ଗଳ ଚତୁର୍ଥରେ ଥିଲେ ଜାତକ ବିଷ୍ଠାରେ ପଡ଼ିମରିଯାଏ ।୮।

## ଗୁହ୍ୟରୋଗ, କୃମିରୋଗ, ଶସ୍ତ୍ରହେତୁକ ଓ ଅଗ୍ନିହେତୁକ ମରଣଂ ଯୋଗ

ବୀର୍ଯାନ୍ୱିତ ବକ୍ରବୀକ୍ଷିତେ କ୍ଷୀଣେନ୍ଦୌ ନିଧନସ୍ଥିତେଽର୍କଜେ ।
ଗୁହ୍ୟୋଦ୍ଭବରୋଗପୀଡ଼ୟା ମୃତ୍ୟୁ ସ୍ୟାତ୍କୃମିଶସ୍ତ୍ରଦାହଜଃ ।୯।

କ୍ଷୀଣଚନ୍ଦ୍ର ବଳବାନ୍ ମଙ୍ଗଳ ଦ୍ୱାରା ଦୃଷ୍ଟ ହେଲେ, ଶନି ଲଗ୍ନର ଅଷ୍ଟମ ସ୍ଥାନରେ ଥିଲେ, ଗୁହ୍ୟଦ୍ୱାର ଜାତରୋଗ ଫଳରେ କିମ୍ବା କୃମିଜାତ ହେତୁ ଶସ୍ତ୍ର ହେତୁକ ବା ଅଗ୍ନିହେତୁକ ପୀଡ଼ାରେ ମରଣ ହୁଏ ।୯।

## ପକ୍ଷୀ ହେତୁକ, ପର୍ବତରୁ ପଡ଼ିବା, ବଜ୍ରଦ୍ୱାରା କିମ୍ବା କାନ୍ଥ ଆଦି ପଡ଼ିବା ଦ୍ୱାରା ମୃତ୍ୟୁ ଯୋଗ

ଅସ୍ତେ ରବୌ ସରୁଧିରେ ନିଧନେଽର୍କପୁତ୍ରେ
କ୍ଷୀଣେ ରସାତଳଗତେ ହିମଗୌ ଖଗାନ୍ତଃ ।

ଲଗ୍ନାତ୍ସ୍ୱଜାଷ୍ଟମତପଃ ସ୍ୱିନଭୌମମନ୍ଦ-
ଚନ୍ଦ୍ରୈସ୍ତୁ ଶୈଳଶିଖରାଶନିକୁଡ୍ୟପାତୈଃ ।୧୦।

ମଙ୍ଗଳ ରବି ସହିତ ସପ୍ତମରେ, ଶନି ଅଷ୍ଟମରେ, କ୍ଷୀଣଚନ୍ଦ୍ର ଚତୁର୍ଥରେ ଥିଲେ ଜାତକର ମୃତ୍ୟୁ ପକ୍ଷୀ ହେତୁକ ହୋଇଥାଏ ।

ଲଗ୍ନରେ ରବି, ପଞ୍ଚମରେ ମଙ୍ଗଳ, ଅଷ୍ଟମରେ ଶନି, ନବମରେ କ୍ଷୀଣ-ଚନ୍ଦ୍ର ଥିଲେ ଜାତକ ପର୍ବତ ଶିଖରରୁ ପଡ଼ିଯାଇ ମରିଥାଏ କିମ୍ବା ବଜ୍ରାଘାତରେ ଅଥବା କାନ୍ଥ ଆଦି ପଡ଼ିଯାଇ ମରିଯାଏ ।୧୦।

### ଦ୍ୱାବିଂଶତ ଦ୍ରେକ୍କାଣାଧିପ ହେତୁକ ମୃତ୍ୟୁ ନିର୍ଣ୍ଣୟ

ଦ୍ୱାବିଂଶଃ କଥିତସ୍ତୁ କାରଣଂ ଦ୍ରେଷ୍କାଣୋ ନିଧନସ୍ୟ ସୂରିଭିଃ
ତସ୍ୟାଧିପତିର୍ଭବୋଽପି ବା ନିର୍ଯାଣଂ ସ୍ୱଗୁଣୈଃ ପ୍ରଯଚ୍ଛତି ।୧୧।

ଲଗ୍ନର ଅଷ୍ଟମରେ ଗ୍ରହନଥିଲେ, ଅଷ୍ଟମକୁ କୌଣସି ଗ୍ରହ ଦେଖୁନଥିଲେ, ପୂର୍ବ କଥିତ ମୃତ୍ୟୁ ଯୋଗର ଗ୍ରହସ୍ଥିତି ଜାତକରେ ନଘଟିଲେ, ଜନ୍ମ ଦ୍ରେକ୍କାଣର ଦ୍ୱାବିଂଶତ ଦ୍ରେକ୍କାଣର ଯେ ଅଧିପତି ତାହାର ଲକ୍ଷଣାନୁରୂପ ମୃତ୍ୟୁ ଘଟିଥାଏ । ଏହା ବଶିଷ୍ଠ ଜ୍ୟୋତିର୍ବିଦମାନଙ୍କର ମତ । ଅଷ୍ଟମାଧିପତି ଓ ଦ୍ୱାବିଂଶତ ଦ୍ରେକ୍କାଣର ଅଧିପତି ଉଭୟଙ୍କ ମଧ୍ୟରେ ଯେ ବଳବାନ୍ ତଦନୁରୂପ ମୃତ୍ୟୁ ଘଟିବ ।

ଦୃଃ—ଲଗ୍ନର ପ୍ରଥମ ଦ୍ରେକ୍କାଣରେ ଜନ୍ମ ହୋଇଥିଲେ ଅଷ୍ଟମ ସ୍ଥାନର ପ୍ରଥମ ଦ୍ରେକ୍କାଣ ଦ୍ୱାବିଂଶତ ଦ୍ରେକ୍କାଣ ହେବ, ଲଗ୍ନର ଦ୍ୱିତୀୟ ଦ୍ରେକ୍କାଣରେ ଜନ୍ମହେଲେ ଅଷ୍ଟମ ସ୍ଥାନର ଦ୍ୱିତୀୟ ଦ୍ରେକ୍କାଣ ଦ୍ୱାବିଂଶତ ଦ୍ରେକ୍କାଣ ହେବ । ଲଗ୍ନର ତୃତୀୟ ଦ୍ରେକ୍କାଣରେ ଜନ୍ମହେଲେ ଅଷ୍ଟମର ତୃତୀୟ ଦ୍ରେକ୍କାଣ ଦ୍ୱାବିଂଶତ ଦ୍ରେକ୍କାଣ ହେବ । ଉଦାହୃତ ଜାତକର ( ୫୭ ପୃଷ୍ଠା ଦେଖ ) ଲଗ୍ନସ୍ଫୁଟ ୨।୨୭।୩୮ ଅର୍ଥାତ୍ ଜାତକ ମିଥୁନ ଲଗ୍ନର ତୃତୀୟ ଦ୍ରେକ୍କାଣରେ ଜନ୍ମ ହୋଇଅଛି । ଏହାର ଦ୍ୱାବିଂଶତ ଦ୍ରେକ୍କାଣ, ମକରର ତୃତୀୟ ଦ୍ରେକ୍କାଣ ହେବ । ମକରର ତୃତୀୟ ଦ୍ରେକ୍କାଣ କନ୍ୟା ରାଶିରେ ପଡ଼ିବାରୁ ଏହାର ଅଧିପତି ବୁଧ ହେଲା । ଜଣାଗଲା ଯେ ଏହି ଜାତକର ଦ୍ୱାବିଂଶତ ଦ୍ରେକ୍କାଣର ଅଧିପତି ବୁଧ ।

ହୋରାନବାଂଶକପଯୁକ୍ତସମାନଭୂମୌ
ଯୋଗେକ୍ଷଣାଦଭିରତଃ ପରିକଲ୍ପ୍ୟମେତତ୍ ।

ମୋହସ୍ତୁ ମୃତ୍ୟୁଃସମଯେଽନୁଦିତାଂଶତୁଲ୍ୟଃ
ଷ୍ୱେଶେଶିତେ ଦ୍ୱିଗୁଣିତସ୍ତ୍ରିଗୁଣଃ ଶୁଭୈଶ୍ଚ ।୧୨।

ଲଗ୍ନର ଯେ ନବାଂଶ ତାହାର ଅଧିପତି ଯେ ରାଶିରେ ଥିବ ସେହିରାଶିର ସ୍ୱଭାବ ସ୍ଥାନାନୁରୂପ ସ୍ଥାନରେ ଜାତକର ମୃତ୍ୟୁ ହେବ ।

ନବାଂଶ ଅଧିପତି ମେଷ ରାଶିରେ ଥିଲେ ମେଣ୍ଢାଶାଳ ବା ସେମାନଙ୍କର ଗୋଠ ସ୍ଥାନ, ବୃଷ ରାଶିରେ ଥିଲେ ଗୋରୁଥିବା ସ୍ଥାନ ବା ଗୋଠ, ମିଥୁନ ହେଲେ ଗୃହ, କର୍କଟ ହେଲେ କୂପ (ଜଳସ୍ଥାନ) ସିଂହ ହେଲେ ଅରଣ୍ୟ, କନ୍ୟା ହେଲେ କୂପ, ତୁଳା ହେଲେ କ୍ରୟବିକ୍ରୟ ସ୍ଥାନ, ବୃଶ୍ଚିକହେଲେ ଛିଦ୍ର ବା ଗର୍ତ୍ତ, ଧନୁହେଲେ ଅଶ୍ୱଶାଳା, ମକର ହେଲେ ଓଦାଳିଆ ସ୍ଥାନ, କୁମ୍ଭ ହେଲେ ଗୃହ ଓ ମୀନ ରାଶି ହେଲେ ଓଦାଳିଆ ସ୍ଥାନରେ ମରଣ ଘଟେ ।

(୧) ଲଗ୍ନର ନବାଂଶପତି ଯେ ନବାଂଶରେ ଅଛି ତାହାର (୨) ଲଗ୍ନର ନବାଂଶପତି ଯେ ରାଶିରେ ଅଛି ତଦନୁରୂପସ୍ଥ ଲକ୍ଷଣାନୁରୂପ ସ୍ଥାନ (୩) ଲଗ୍ନନବାଂଶପତିର ସହିତ ମିଶିଥିବା ଗ୍ରହମାନଙ୍କର ସ୍ଥାନ (୪) ଲଗ୍ନ ନବାଂଶପତି ଯେ ରାଶିରେ ଅଛି ତାକୁ ଯେଉଁ ଗ୍ରହମାନେ ଦେଖୁଛନ୍ତି ସେହି ଗ୍ରହମାନଙ୍କର ଅନୁରୂପ ସ୍ଥାନ ମରଣ ସ୍ଥାନ ବୋଲି ନିର୍ଣ୍ଣୟ କରିବେ । ଏଥିରେ ବିଭିନ୍ନ ସ୍ଥାନ ଆସିବ । ଏ ଗ୍ରହଟି ମଧ୍ୟରୁ ଯେ ଗ୍ରହ ବଳବାନ୍ ତଦନୁରୂପ ସ୍ଥାନ ମାତ୍ର ହେବ । ବଳବାନ୍ ଗ୍ରହ ତାହାର ମୂଳତ୍ରିକୋଣ ରାଶିର ଅନୁରୂପ ସ୍ଥାନରେ ମରଣ ଦେବ । ଯେପରିକି ଶନିଦ୍ୱାରା ମରଣ ସ୍ଥାନ ନିଶ୍ଚୟ କରାଗଲେ ମକର ନକରି କୁମ୍ଭ ରାଶିର ଅନୁରୂପ ସ୍ଥାନ କହିବେ । କାରଣ କୁମ୍ଭ ଶନିର ମୂଳ ତ୍ରିକୋଣ ଅଟେ ।

କୌଣସି କୌଣସି ଆଚାର୍ଯ୍ୟ ଗ୍ରହର ରାଶି ନନେଇ ଗ୍ରହମାନଙ୍କର ସ୍ଥାନ (ଯଥା ରବିର ଦେବସ୍ଥାନ ଇତ୍ୟାଦି-ଦ୍ୱିତୀୟ ଅଧ୍ୟାୟର ଦ୍ୱାଦଶ ଶ୍ଳୋକ ଦେଖନ୍ତୁ) ମୃତ୍ୟୁ ସ୍ଥାନ ହେବ ବୋଲି କହନ୍ତି । ଟୀକାକାର ଭଟ୍ଟୋତ୍ପଳ ଗ୍ରହ ସମ୍ବନ୍ଧ ସ୍ଥାନ କଥା ସମର୍ଥନ କରିଛନ୍ତି ।

ଜନ୍ମ ଲଗ୍ନର ଯେତିକି ନବାଂଶ ଭୋଗ ବାକି ରହିଥିବ ସେତିକି କାଳ ମରଣ ପୂର୍ବରୁ ଜ୍ଞାନ ଲୋପ ହୋଇ ଯିବ ଅର୍ଥାତ୍ ଲଗ୍ନର ଯେତିକି ଭୋଗ ବାକି ଥିବ ସେତିକି କାଳ ଜ୍ଞାନ ଲୋପ ହେବ । ଲଗ୍ନ ନିଜର ଅଧିପତି ଦ୍ୱାରା ଦୃଷ୍ଟ ହେଲେ କଥିତ ଜ୍ଞାନ ଲୋପ ସମୟ ଦୁଇଗୁଣ ହେବ । ଶୁଭଗ୍ରହମାନେ ଲଗ୍ନକୁ ଦେଖୁଥିଲେ ଏ ସମୟ ତିନିଗୁଣ ହେବ । ଲଗ୍ନାଧିପ ଓ ଶୁଭଗ୍ରହ ଉଭୟେ ଲଗ୍ନକୁ ଦେଖିଲେ ଏ ସମୟ ଛଅଗୁଣ ହେବ ।୧୨।

ଦହନଜଳବିମିଶ୍ରୈର୍ଭସ୍ମସଂକ୍ଲେଦଶୋଷୈ-
ର୍ନିଧନଭବନସଂସ୍ଥୈର୍ବ୍ୟାଳବର୍ଗୈର୍ବିଡମ୍ବ୍ୟଃ ।
ଇତି ଶବପରିଣାମଶ୍ଚିନ୍ତନୀୟୋ ଯଥୋକ୍ତଃ
ପୃଥୁବିରଚିତ ଶାସ୍ତ୍ରାଦ୍‌ଗତ୍ୟନୂକାଦି ଚିନ୍ତ୍ୟମ୍ ।୧୩।

ଲଗ୍ନର ଦ୍ୱାବିଂଶତି ଦ୍ରେକ୍କାଣ ଅଗ୍ନି ସଂଜ୍ଞକ ହେଲେ (ପାପଗ୍ରହମାନଙ୍କ ଦ୍ରେକ୍କାଣ ଅଗ୍ନି ସଂଜ୍ଞକ ) ମୃତର ଶରୀର ଅଗ୍ନିରେ ଜଳାଯାଏ । ଜଳସଂଜ୍ଞକ ଦ୍ରେକ୍କାଣ (ଶୁଭଗ୍ରହର ଦ୍ରେକ୍କାଣ) ହେଲେ ଶବ ପାଣିରେ ପଡ଼େ ଓ ମିଶ୍ର ଦ୍ରେକ୍କାଣ (ପାପ ଗ୍ରହର ଦ୍ରେକ୍କାଣରେ ଶୁଭଗ୍ରହ ଥିଲେ ବା ଶୁଭଗ୍ରହ ଦ୍ରେକ୍କାଣରେ ପାପଗ୍ରହ-ଥିଲେ) ହେଲେ ଶବ ବାହାରେ ପଡ଼ି ଶୁଷ୍କ ହୁଏ । ସର୍ପ ଦ୍ରେକ୍କାଣ (କର୍କଟର ଦ୍ୱିତୀୟ ଓ ତୃତୀୟ, ବିଛାର ପ୍ରଥମ ଓ ଦ୍ୱିତୀୟ ଏବଂ ମୀନର ତୃତୀୟ ଦ୍ରେକ୍କାଣ) ହେଲେ ଗୃଧ୍ର, କାକ, ଶୃଗାଳଙ୍କ ଦ୍ୱାରା ଭକ୍ଷିତ ହୁଏ । ଅନ୍ୟାନ୍ୟ ମହର୍ଷି ରଚିତ ବିଶେଷ ଗ୍ରନ୍ଥରୁ ପୂର୍ବଜନ୍ମ ତଥା ପରଜନ୍ମ ବିବରଣ ଜାଣିବେ । ପରଶ୍ଳୋକରେ ଏବିଷୟ ସଂକ୍ଷିପ୍ତ ଭାବେ ଦିଆଯାଇଛି ।୧୩।

## ପୂର୍ବଜନ୍ମରେ ଜୀବର ସ୍ଥିତି ଜ୍ଞାନ

ଗୁରୁରୁଡୁପତିଶୁକ୍ରୌ ସୂର୍ଯ୍ୟଭୌମୌ ଯମଜ୍ଞୌ
ବିବୁଧପିତୃତିରଶ୍ଚୋ ନାରକୀୟାଂଶ୍ଚ କୁର୍ଯ୍ୟୁଃ ।
ଦିନକରଶଶିବୀର୍ଯ୍ୟାଧିଷ୍ଠିତାତ୍ ତ୍ର୍ୟଂଶନାଥା-
ତ୍ ପ୍ରବରସମନିକୃଷ୍ଟାସ୍ତୁଂଗହ୍ରାସାଦନୂକେ ।୧୪।

ରବି ଓ ଚନ୍ଦ୍ର ଉଭୟଙ୍କ ମଧ୍ୟରେ ଯେ ବଳବାନ୍ ସେ ଯେଉଁ ଦ୍ରେକ୍କାଣରେ ଥିବେ ତଦନୁରୂପ ଲୋକରୁ ଜାତକ ଆସିଥିବା କହିବେ । ଗୁରୁର ଦ୍ରେକ୍କାଣରେ ଥିଲେ ଦେବଲୋକରୁ, ଚନ୍ଦ୍ର ବା ଶୁକ୍ରର ଦ୍ରେକ୍କାଣରେ ଥିଲେ ପିତୃଲୋକରୁ, ରବି ବା ମଙ୍ଗଳର ଦ୍ରେକ୍କାଣରେ ଥିଲେ ତୀର୍ଯ୍ୟଗ୍‌ଲୋକ, ଶନି ବା ବୁଧର ଦ୍ରେକ୍କାଣରେ ଥିଲେ ନରକ ଲୋକରୁ ଜାତକ ଆସିଥାଏ ।

ଏହି ଦ୍ରେକ୍କାଣାଧିପର ଉଚ୍ଚାଦି ବଳାନୁରୂପ ଜାତକ ସେହି ଲୋକରେ ଉଚ୍ଚସ୍ଥାନ ଲାଭ କରିଥାଏ । ସେଗ୍ରହ ନିର୍ବଳ ବା ନୀଚ ହେଲେ ସେଥିରେ ନୀଚସ୍ଥାନ ପାଏ ।୧୪।

## ଭବିଷ୍ୟତରେ ଜାତକର ଗତି ନିର୍ଣ୍ଣୟ ଓ ମୋକ୍ଷଲାଭ

ଗତିରପି ରିପୁରନ୍ଧ୍ରତ୍ର୍ୟଂଶପୋଽସ୍ତସ୍ଥିତୋ ବା
ଗୁରୁରଥ ରିପୁକେନ୍ଦ୍ରଚ୍ଛିଦ୍ରଗଃ ସ୍ୱୋଚ୍ଚସଂସ୍ଥଃ ।

ତଦୟୁତ ଭବନେଽନ୍ତ୍ୟେ ସୌମ୍ୟଭାଗେ ଚ ମୋକ୍ଷୋ
ଭବତି ଯଦି ବଲେନ ପ୍ରୋଜ୍ଝିତାସ୍ତବ ଶେଷାଃ ।୧୫।

ଇତି ଶ୍ରୀ ବରାହମିହିରକୃତେ ବୃହଜ୍ଜାତକେ ନିର୍ଯାଣାଧ୍ୟାୟଃ ପଞ୍ଚବିଂଶଃ

ଷଷ୍ଠ, ସପ୍ତମ ଓ ଅଷ୍ଟମସ୍ଥାନ ଗ୍ରହହୀନ ହେଲେ, ଷଷ୍ଠ, ତଥା ଅଷ୍ଟମରେ ଯେଉଁରାଶିର ଦ୍ରେକ୍କାଣ ଉଦିତ ହୋଇଅଛି, ସେମାନଙ୍କ ମଧ୍ୟରେ ଯେ ବଳବାନ୍ ସେହି ଗ୍ରହର ଲୋକକୁ ଜାତକ ଯିବ । ଷଷ୍ଠ, ସପ୍ତମ ବା ଅଷ୍ଟମରେ ଗ୍ରହଥିଲେ ଯେ ଗ୍ରହଅଛି ତଦନୁରୂପ ଲୋକକୁ ଜାତକ ଯିବ । ବହୁଗ୍ରହ ଥିଲେ ବଳବାନ୍ ଗ୍ରହକୁ ଗ୍ରହଣ କରିବେ ।

ବୃହସ୍ପତି ଉଚ୍ଚରେ ଥାଇ ଲଗ୍ନରେ, ଚତୁର୍ଥରେ, ଷଷ୍ଠରେ, ସପ୍ତମରେ ବା ଦଶମରେ ଥିଲେ ଜାତକ ମୋକ୍ଷଲାଭ କରେ । ମୀନରାଶିସ୍ଥ ବୃହସ୍ପତି ଲଗ୍ନରେ ଥାଇ ଶୁଭଗ୍ରହର ନବାଂଶରେ ଥିଲେ ଓ ଅନ୍ୟ ସମସ୍ତ ଗ୍ରହ ବଳହୀନ ହୋଇ-ଥିଲେ ଜାତକ ମୋକ୍ଷଲାଭ କରେ ।

ଜନ୍ମକାଳ ପରି ମୃତ୍ୟୁକାଳର ଗ୍ରହାବସ୍ଥିତିରୁ ମଧ୍ୟ ଏହିଭଳି ଗତି ବିଷୟ ଦେଖିବେ, ଏହା ଟୀକାକାରଙ୍କ ମତ, 'ସ୍ୱଳ୍ପଜାତକ' ଗ୍ରନ୍ଥରେ ମଧ୍ୟ ଏହିମତ ସମର୍ଥିତ ହୋଇଅଛି ।୧୫।

ଯଥା:—ଷଷ୍ଠାଷ୍ଟମକଣ୍ଟକଗୋ ଗୁରୁରୁଚ୍ଚେଭବତି ମୀନଲଗ୍ନେ ବା
ଶେଷୈଃ ଖଗୈର୍ଜନ୍ମନି ମରଣେ ବା ମୋକ୍ଷଗତିମାହୁଃ ॥

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ନିର୍ଯାଣିକାଧ୍ୟାୟ ନାମକ
ପଞ୍ଚବିଂଶ ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

---

## ନଷ୍ଟଜାତକାଧ୍ୟାୟଃ ଷଡ୍‌ବିଂଶଃ

### ଜନ୍ମସମୟ ଅଭାବରେ ପ୍ରଶ୍ନଲଗ୍ନରୁ ଜନ୍ମଅୟନ ନିର୍ଣ୍ଣୟ

ଆଧାନଜନ୍ମାପରିବୋଧକାଲେ ସମ୍ପୃଚ୍ଛତୋଜନ୍ମ ବଦେଦ୍‌ବିଲଗ୍ନାତ୍
ପୂର୍ବାପରାର୍ଦ୍ଧେଭବନସ୍ୟ ବିନ୍ଦ୍ୟାଦ୍ଭାନାବୁଦଗ୍‌ଦକ୍ଷିଣଗେ ପ୍ରସୂତିମ୍ ।୧।

ଯେଉଁ ବ୍ୟକ୍ତିର ଗର୍ଭାଧାନ କାଳ ବା ଜନ୍ମସମୟ ଜଣା ନଯାଏ ସେହି ବ୍ୟକ୍ତିର ପ୍ରଶ୍ନକାଳୀନ ଲଗ୍ନକୁ ଧରି ଜନ୍ମସମୟାଦି ବାହାର କରିବା ପ୍ରଣାଳୀ

ଏଠାରେ ବୁଝାଯିବ । ଗର୍ଭାଧାନ କାଳ ଜାଣିବା ବିଶେଷ କାଷ୍ଟକର । ଜଣାଥିଲେ ନିଷେକାଧ୍ୟାୟରୁ ଜନ୍ମସମୟାଦି ଜାଣିବା ଉପାୟ ଦିଆଯାଇ ଅଛି । ଜନ୍ମସମୟ ଜାଣିବା ସହଜ ହେଲେ ମଧ୍ୟ ଅସ୍ଥାନରେ ଜନ୍ମହେଲେ, କୌଣସି ଦୁର୍ବିପାକ ଘଟିଥିଲେ ବା ସ୍ଥିର ହୋଇଥିବା ଜନ୍ମସମୟ ବା ଜନ୍ମପତ୍ରିକା କୌଣସି କାରଣରୁ ନଷ୍ଟହୋଇ ଯାଇଥିଲେ ପ୍ରଶ୍ନକର୍ତ୍ତାଙ୍କ ଲଗ୍ନକୁ ଧରି ଜ୍ୟୋତିର୍ବିଦ୍ ସମସ୍ତ ଠିକ୍ କରିବା ଉପାୟ ଶ୍ରୀ ବରାହ ମିହିର ଉତ୍ତମରୂପେ ବୁଝାଇଛନ୍ତି ।

ପ୍ରଶ୍ନଲଗ୍ନର ପୂର୍ବାର୍ଦ୍ଧ (୧୫ ଅଂଶ ପର୍ଯ୍ୟନ୍ତ ବା ପ୍ରଥମ ହୋରା) ହେଲେ ଉତ୍ତରାୟଣ, ପରାର୍ଦ୍ଧ (ଶେଷ ୧୫ ଅଂଶ ବା ଦ୍ୱିତୀୟ ହୋରା) ହେଲେ ଦକ୍ଷିଣାୟନରେ ଜନ୍ମ ହୋଇଥିବା କହିବେ ।

ମକର ମାସ ଠାରୁ ମିଥୁନ ମାସ ଶେଷଯାଏ ଉତ୍ତରାୟଣ ଓ କର୍କଟମାସ ଠାରୁ ଧନୁଶେଷଯାଏ ଦକ୍ଷିଣାୟନ ହୁଏ ।

## ବର୍ଷ ଓ ଋତୁଜ୍ଞାନ

ଲଗ୍ନତ୍ରିକୋଣେଷୁ ଗୁରୁସ୍ତ୍ରିଭାଗୈର୍ବିକଲ୍ପ୍ୟ ବର୍ଷାଣି ବୟୋଽନୁମାନାତ୍
ଗ୍ରୀଷ୍ମୋଽର୍କଲଗ୍ନେ କଥିତାସ୍ତୁ ଶେଷୈରନ୍ୟାୟନର୍ତାବୃତୁରର୍କଚାରାତ୍ ।୨।

ପ୍ରଶ୍ନଲଗ୍ନର ପ୍ରଥମ ଦ୍ରେକ୍କାଣ ହୋଇଥିଲେ ଗୁରୁ ଜନ୍ମ କାଳରେ ଲଗ୍ନରେ ଥିବା ନିଶ୍ଚୟ କରିବେ । ଦ୍ୱିତୀୟ ଦ୍ରେକ୍କାଣ ହେଲେ ଗୁରୁ ପଞ୍ଚମରେ ବା ମଧ୍ୟରେ ଥିବା ଓ ତୃତୀୟ ଦ୍ରେକ୍କାଣ ହେଲେ ଗୁରୁ ନବମରେ ବା ନବମ ମଧ୍ୟରେ ଥିବା ନିଶ୍ଚୟ କରିବେ । ଏସମ୍ବନ୍ଧେ ଦୁଇଟି ମତ ଦେଖାଯାଏ । ପ୍ରଥମୋକ୍ତ ମତ ଏହି ଯେ ଲଗ୍ନର ଯେତିକି ଦ୍ୱାଦଶାଂଶ ଗତ ହୋଇଥିବ ଗୁରୁ ଲଗ୍ନଠାରୁ ସେତିକି ଦୂରରେ ଥିବ ।

ଅନ୍ୟ କାହାର ୨ ମତ ଏହି ଯେ ପ୍ରଶ୍ନଲଗ୍ନର ପ୍ରଥମ ଦ୍ରେକ୍କାଣରେ ହେଲେ ଲଗ୍ନଠାରୁ ଗୁରୁ ଯେତିକି ଦୂରରେ ଅଛି ଜାତକର ସେତିକି ବୟସ ହେବା କଥା କହିବେ ।

ପ୍ରଶ୍ନ ଲଗ୍ନର ଦ୍ୱିତୀୟ ଦ୍ରେକ୍କାଣ ହେଲେ ତାହାର ପଞ୍ଚମ ରାଶିଠାରୁ ଗୁରୁ ଯେତିକି ଦୂରରେ ଅଛି ସେତିକି ଦୂରରେ ଜନ୍ମଲଗ୍ନଠାରୁ ଥିବା କଥା କହିବେ । ପ୍ରଶ୍ନ ଲଗ୍ନର ତୃତୀୟ ଦ୍ରେକ୍କାଣ ହେଲେ ନବମ ସ୍ଥାନଠାରୁ ଗୁରୁ ଯେତିକି ରାଶି ଅତିକ୍ରମ କରିଛି ଜନ୍ମଲଗ୍ନର ସେତିକି ସ୍ଥାନରେ ଥିବାକଥା କହିବେ । ପୂର୍ବୋକ୍ତ ମତହିଁ ଗ୍ରାହ୍ୟ ବୋଲି ମହାମତି ଭଟ୍ଟୋତ୍ପଳ କହନ୍ତି । ସୂକ୍ଷ୍ମ ଅନୁରୂପ ଦେଖିଲେ

ପ୍ରଥମ ମତହିଁ ଗ୍ରାହ୍ୟ ଜଣାଯାଏ । ପ୍ରଥମୋକ୍ତ ମତ ଯବନେଶ୍ୱର ମଧ୍ୟ ସମର୍ଥନ କରନ୍ତି ।

ପ୍ରଶ୍ନକର୍ତ୍ତାର ବୟସକୁ ଅନୁମାନକରି ଜ୍ୟୋତିର୍ବିଦ ପ୍ରଥମୋକ୍ତ ମତରେ ଆସିବା ବୟସରେ ୧୨ ବର୍ଷ ଲେଖାରେ ମିଶାଇବେ । ଦ୍ୱାଦଶାଂଶ ଭୋଗ ପ୍ରକାରେ ଏହି ସ୍ଥାନ ଲଗ୍ନଠାରୁ ନିଷ୍ଟସ୍ଥ କରାଯାଇ ପାରେ । ଉଦାହରଣ ସ୍ୱରୂପ ଏଠାରେ ଗୋଟିଏ ପ୍ରଶ୍ନଲଗ୍ନ ଦିଆଗଲା ।

ପ୍ରଶ୍ନକାଳ—ଶ ୧୮୭୩ ଚୈତ୍ର ୧୦ ଦିନ ଶନିବାର ସୂର୍ଯ୍ୟୋଦୟ କାଳ ।
(ମାର୍ଚ୍ଚ ୨୨ ତାରିଖ ୧୯୫୨)

ମୀନଲଗ୍ନ ଭୋଗ ଦ ୧।୨।୩୩ ସ୍ଫୁଟ ରା ୧୧।୭।୫୩ ଗ୍ରହସ୍ଫୁଟଃ—ରବି ରା ୧୧।୭।୫୩ ଚନ୍ଦ୍ର ରା ୯।୧୬।୩୦ ମଙ୍ଗଳ ରା ୬।୨୪।୩୫ ବୁଧ ୧୧।୨୬।୩୭ ଗୁରୁ ୧୧।୨୭।୪୧ ଶୁ ୧୧।୧୩।୩ ଶନି ୫।୧୯।୧୭ ରା ୧୦।୫।୪୬ କେତୁ ରା ୪।୫।୪୬ ଅୟନାଂଶ ୨୩।୧୧।୩୦ । ଏଥିରୁ ଜଣାଗଲା ଯେ ପ୍ରଶ୍ନଲଗ୍ନର ପୂର୍ବାର୍ଦ୍ଧ ହେତୁ ଜନ୍ମକାଳ ଉତ୍ତରାୟଣ ।

ପ୍ରଥମ ଦ୍ରେକ୍କାଣ ହେତୁ ଗୁରୁ ପଞ୍ଚମ ମଧ୍ୟରେ ଅର୍ଥାତ୍ ଦ୍ୱାଦଶାଂଶ ଚତୁର୍ଥ ହେତୁ ଗୁରୁ ଚତୁର୍ଥ ସ୍ଥାନରେ ରହିବା କଥା ।

ପ୍ରଶ୍ନ ଲଗ୍ନରେ ରବିଥିଲେ ବା ରବି ଦ୍ରେକ୍କାଣାଧିପ ହେଲେ ଗ୍ରୀଷ୍ମଋତୁରେ ଜନ୍ମହେବା କହିବେ, ଚନ୍ଦ୍ର ଲଗ୍ନରେ ଥିଲେ ବା ଦ୍ରେକ୍କାଣାଧିପ ହେଲେ ବର୍ଷା ଋତୁ, ମଙ୍ଗଳ ସେପରି ହେଲେ ଗ୍ରୀଷ୍ମ, ବୁଧହେଲେ ଶରତ୍, ଗୁରୁହେଲେ ହେମନ୍ତ, ଶୁକ୍ର ହେଲେ ବସନ୍ତ, ଶନିହେଲେ ଶୀତଋତୁ କହିବେ । ଲଗ୍ନରେ ବହୁତ ଗ୍ରହଥିଲେ ଯେ ଗ୍ରହ ବଳବାନ୍ ତାହାର ଋତୁ କହିବେ ।

ଯଦି ପ୍ରଶ୍ନ ଲଗ୍ନରେ ଗ୍ରହ ନଥିବ ତେବେ ଦ୍ରେକ୍କାଣାଧିପାନୁରୂପ ଋତୁ କହିବେ । ଉଦାହୃତ ପ୍ରଶ୍ନକାଳୀନ ଜାତକରେ ଶୁକ୍ର ଲଗ୍ନସ୍ଥ । ସେ ଉଚ୍ଚସ୍ଥ ହେତୁ ପୂର୍ଣ୍ଣବଳୀ । ତେଣୁ ତାହାର ଋତୁ ଅର୍ଥାତ୍ ବସନ୍ତ ଋତୁରେ ଜନ୍ମବୋଲି ଧରାଯିବ ।

ଅୟନ ପ୍ରକାରେ ଦେଖିଲେ ପ୍ରଶ୍ନଲଗ୍ନର ପୂର୍ବାର୍ଦ୍ଧ ହେତୁ ଉତ୍ତରାୟଣ, ଏଠାରେ ଋତୁ ଓ ଅୟନ 'ସମ୍ଭବ' ହେଲା କାରଣ ବସନ୍ତ ଋତୁ ଉତ୍ତରାୟଣର ଅନ୍ତର୍ଗତ ଅଟେ ।

ଋତୁ ଗ୍ରହଣ ବେଳେ ସୌରମାନ୍ କ୍ରମ ଗ୍ରହଣ କରାଯିବ । ବସନ୍ତ ଋତୁ କହିଲେ—ରବି, ମୀନ ଓ ମେଷରେ ଥିବା କାଳକୁ ବୁଝିବେ । ସେପରି ଗ୍ରୀଷ୍ମ ଋତୁରେ ରବି, ବୃଷ ଓ ମିଥୁନରେ; ବର୍ଷାଋତୁରେ କର୍କଟ ଓ ସିଂହରେ, ଶରତ୍ ଋତୁରେ କନ୍ୟା ଓ ତୁଳାରେ, ହେମନ୍ତ ଋତୁରେ ବିଛା ଓ ଧନୁରେ, ଶୀତ-ଋତୁରେ ମକର ଓ କୁମ୍ଭରେ ରବି ରହିବେ ।

## ଅୟନ ଓ ଋତୁରେ ବୈଷମ୍ୟ ଦେଖାଗଲେ ତାହାର ସମାଧାନ ଓ ସୌର ମାସ ତଥା ଦିନଜ୍ଞାନ

ଚନ୍ଦ୍ରଜ୍ଞଜୀବାଃ ପରିବର୍ତ୍ତିନୀୟାଃ ଶୁକ୍ରାରମନ୍ଦୈରୟନେ ବିଲୋମେ
ଦ୍ରେଷ୍କାଣଭାଗେ ପ୍ରଥମେ ତୁ ପୂର୍ବୋ ମାସୋଽନୁପାତାଚ୍ଚ ତିଥିର୍ବିକଲ୍ପ୍ୟଃ ।୩।

ଯଦି ଋତୁ ଭିନ୍ନ ଅୟନରେ ପଡ଼େ ତେବେ ଚନ୍ଦ୍ରର ସ୍ଥାନରେ ଶୁକ୍ରର ଋତୁ (ବର୍ଷା ନିମନ୍ତେ ବସନ୍ତ) ବୁଧ ସ୍ଥାନରେ ମଙ୍ଗଳର ଋତୁ (ଶରତ୍ ନିମନ୍ତେ ଗ୍ରୀଷ୍ମ) ଗୁରୁସ୍ଥାନରେ ଶନି (ହେମନ୍ତ ନିମନ୍ତେ ଶୀତ) ର ଋତୁ ପରିବର୍ତ୍ତିନ କ୍ରମରେ ଗ୍ରହଣ କରିବେ ଅର୍ଥାତ୍ ଚନ୍ଦ୍ରଙ୍କ ସ୍ଥଳରେ ଯେପରି ଶୁକ୍ରଙ୍କ ଋତୁ ଗ୍ରହଣ କରାଯିବ, ଶୁକ୍ରଙ୍କ ସ୍ଥଳରେ ସେପରି ଚନ୍ଦ୍ରଙ୍କ ଋତୁ ଗ୍ରହଣ କରିବେ । ଏପରି ଅନ୍ୟ ମାନଙ୍କୁ ମଧ୍ୟ ବୁଝିବେ ।

ଋତୁରେ ଦୁଇଟି ମାସ ଅଛି, ଦ୍ରେଷ୍କାଣକୁ ଦୁଇ ଭାଗ କରି ମାସନିର୍ଣ୍ଣୟ କରାଯିବ । ଦ୍ରେଷ୍କାଣର ପ୍ରଥମଭାଗ ପ୍ରଥମମାସ ଓ ଦ୍ୱିତୀୟ ଭାଗ ଦ୍ୱିତୀୟ ମାସ ବୋଲି ଧରାଯିବ ।

ପୂର୍ବ କଥିତ ପ୍ରଶ୍ନ ଜାତକର ବସନ୍ତ ଋତୁ ବୋଲି ଧରାଯାଇଛି, ଦ୍ରେଷ୍କାଣର ପ୍ରଥମ ଭାଗ ଅର୍ଥାତ୍ ୫ ଅଂଶ ଭୋଗ ହୋଇ ଶେଷଅଂଶ ଭୋଗ ହେଉଅଛି, ତେଣୁ ବସନ୍ତ ଋତୁର ଦ୍ୱିତୀୟ ମାସ ଅର୍ଥାତ୍ ମେଷମାସରେ ଜନ୍ମ ବୋଲି ଧରାଯିବ ।

୫ ଅଂଶ ଅର୍ଥାତ୍ ୩୦୦ କଳାକୁ ଏକମାସ ବା ୩୦ ଦିନ, ତେବେ ଦିନକୁ ୧୦ କଳା ପଡ଼ିଲା । ଅତଏବ ମେଷ ମାସର (ଲଗ୍ନସ୍ପଷ୍ଟ ୧୧।୭।୫୩— ଏଥିରୁ ପ୍ରଥମ ଦ୍ରେଷ୍କାଣର ପ୍ରଥମଭାଗ ୫ ଅଂଶ ଗଲେ ଅର୍ଥାତ୍ ରା ୧୧।୫ ଗଲେ ବାକି ରହିଲା ୨ ଅଂଶ ୫୩ କଳା ବା ୧୭୩ କଳା । ଏହା ଦ୍ୱିତୀୟ ମାସର ଭୋଗ । ଦିନକୁ ୧୦ କଳା ହିସାବରେ ଦେଖିଲେ ୧୭ ଦିନ ଅତୀତ ହୋଇଅଛି ତେଣୁ ଜଣାଗଲା ଯେ ମେଷର ୧୮ ଦିନରେ ଜାତକର ଜନ୍ମ ହୋଇଅଛି ।

## ଚନ୍ଦ୍ରତଥି, ଦବା, ରାତ୍ରି ଓ ଜନ୍ମକାଳଜ୍ଞାନ

**ଅଥାପି** ହୋରାପଟବୋ ଦ୍ୱିଜେନ୍ଦ୍ରାଃ ସୂର୍ଯ୍ୟାଂଶତୁଲ୍ୟାଂ ତଥିମୁଦ୍ଦିଶନ୍ତି
ରାତ୍ରିଦ୍ୟୁସଞ୍ଜ୍ଞେଷୁ ବିଲୋମଜନ୍ମ ଭାଗୈଶ୍ଚ ବେଳାଃ କ୍ରମଶୋ ବିକଲ୍ପ୍ୟାଃ ।୪।

ଜ୍ୟୋତଷ ଶାସ୍ତ୍ରରେ ଅଗାଧ ଜ୍ଞାନସମ୍ପନ୍ନ ମୁନିମାନେ କହିଛନ୍ତି ଯେ ରବିର ଅଂଶତୁଲ୍ୟ ତଥିହେବ, ଅର୍ଥାତ୍ ପ୍ରଶ୍ନ ଜାତକରେ ରବିର ସ୍ଫୁଟାଂଶ ତୁଲ୍ୟ ତଥିହେବ, ଏହା ଶୁକ୍ଲପକ୍ଷର ତଥି । ପ୍ରଶ୍ନଜାତକରେ ରବିରସ୍ଫୁଟ ରା ୧୧।୭।୫୭ ରାଶି ବାଦ୍ ଦେଲେ ଜଣାଗଲା ଶୁକ୍ଲପକ୍ଷର ଅଷ୍ଟମୀତଥି (ସୂର୍ଯ୍ୟ ଅଷ୍ଟମାଂଶରେ ଅଛି) ରେ ଜାତକର ଜନ୍ମ । ରବିର ସ୍ଫୁଟ ୧୫ ଅଂଶ ପର୍ଯ୍ୟନ୍ତ ଶୁକ୍ଲପକ୍ଷ, ୧୬ ଅଂଶ ଠାରୁ ୩୦ ଅଂଶ ଯାଏ କୃଷ୍ଣପକ୍ଷ ବୋଲି ବୁଝିବେ ।

ପ୍ରଶ୍ନଜାତକରୁ ଜଣାଗଲା ଯେ ମେଷମାସ । ମେଷ ମାସ କହିଲେ ଚାନ୍ଦ୍ର ବୈଶାଖକୁ ଗ୍ରହଣ କରାଯିବ, ତେଣୁ ବୈଶାଖ ମାସ ଶୁକ୍ଳ ଅଷ୍ଟମୀରେ ଜନ୍ମ-ବୋଲି ଜଣାଗଲା । (ମେଷାଦରୁ ବୈଶାଖାଦ ଚାନ୍ଦ୍ରମାସ ଗ୍ରହଣ କରିବେ) ।

ପ୍ରଶ୍ନଲଗ୍ନ ଦବାସଞ୍ଜ୍ଞକ ହେଲେ ରାତ୍ରିରେ ଜନ୍ମ ଓ ରାତ୍ରିସଞ୍ଜ୍ଞକ ଲଗ୍ନ-ହେଲେ ଦବାଜନ୍ମ କହିବେ । "ଗୋଜାଶ୍ୱିକର୍କି ମିଥୁନାଃ" ପ୍ରମାଣ ପ୍ରଥମ ଅଧ୍ୟାୟର ଦଶମ ଶ୍ଳୋକରେ ଅଛି । ସେଥିରେ ବୃଷ, ମେଷ, ଧନୁ, କର୍କଟ, ମିଥୁନ, ମକରକୁ ରାତ୍ରିସଞ୍ଜ୍ଞକ ଲଗ୍ନ ବୋଲି କହାଯାଉଛି । ଅନ୍ୟ ଲଗ୍ନସବୁ ଦବାସଞ୍ଜ୍ଞକ ବୋଲି ବୁଝିବାକୁ ହେବ । କିନ୍ତୁ ମୀନଲଗ୍ନ ଦବା ଓ ରାତ୍ରି ଉଭୟ ସଞ୍ଜ୍ଞକ (ଉଭୟୋଦୟ ଓ ସମାନବଳ) ବୋଲି ସ୍ପଷ୍ଟ ଲେଖାଅଛି । ଏହାର ବିପରୀତ ସମୟ କ'ଣ ହୋଇପାରେ ଏ ସମ୍ବନ୍ଧେ ଗ୍ରନ୍ଥକର୍ତ୍ତା ବା ଟୀକାକାର ଉଭୟେ କିଛି ଲେଖିନାହାଁନ୍ତି । ଅତଏବ ଏହିଲଗ୍ନ ସମ୍ବନ୍ଧେ ସନ୍ଦେହ ହେବା ସ୍ୱାଭାବିକ, କିନ୍ତୁ ଶମ୍ଭୁ ହୋରାପ୍ରଦ ଗ୍ରନ୍ଥ ମୀନ ରାଶିକୁ ଦବାବଳୀ ବୋଲି ସ୍ପଷ୍ଟ ଲେଖିଛନ୍ତି । ଅତଏବ ମୀନ ଦବା ସଞ୍ଜ୍ଞକ ଲଗ୍ନ ହେତୁ ରାତ୍ରି ଜନ୍ମବୋଲି ସ୍ଥିର କରାଗଲା ।

ଶମ୍ଭୁହୋରାର ପ୍ର: ଅଧ୍ୟାୟ ୩୪ ଶ୍ଳୋକ:—

ମେଷୋ ବୃଷଦ୍ୱନ୍ଦ୍ୱକୁଳୀରଚାପକ୍ରୂରଙ୍ଗବକ୍ତ୍ରାଶ୍ଚ ନିଶାବଲାଃ ସ୍ୟୁଃ
ତୁଲାଧଟେ ବୃଶ୍ଚିକକୁମ୍ଭଭଜ କନ୍ୟାଳମୀନା ଦବସ୍ୱାମ୍ବିକାସ୍ୟୁଃ ॥

ମେଷ ୧୮ ଦନର ରାତ୍ରିମାନ ଦ ୨୮।୮ ଏସମସ୍ତ ଲିତା କଲେ ହୋଇ $28 \times 60 + 8 = 1688$ ଲିତା । ଏହାକୁ ମୀନଲଗ୍ନର ଭୋଗ ଲିତା ୨୩

ଦ୍ଵାରା ଗୁଣ । ଫଳ ହେଲା ୧୬୮୮ × ୬୩ = ୧୦୬୩୪୪ ଲିପ୍ତା । ଏହାକୁ ସ୍ଵଦେଶ ଲଗ୍ନ ପ୍ରମାଣ ମୀନ ଦ ୩।୫୭ ରେ ହରଣ କର । ଫଳ ହେଲ ୧୦୬୩୪୪ ÷ ୨୩୭ ଫଳ ୪୪୮ $\frac{୧୬୮}{୨୩୭}$ ଏହାକୁ ୬୦ ରେ ହରଣ କର ଫଳ ଅଧିକ = ୭ $\frac{୬୮୦୪}{୧୪୨୨୦}$ ଦଣ୍ଡ ତେଣୁ ରାତ୍ରି ୭ ଦଣ୍ଡ ୨୮ ଲିପ୍ତାରେ ଜନ୍ମ ଜଣାଗଲା ।

କେଚିଚ୍ଛଶାଂକାଧ୍ୟୁଷିତାନ୍ନବାଂଶାଚ୍ଛୁକ୍ଳାନ୍ତସଂଜ୍ଞଂ କଥୟନ୍ତି ମାସମ୍ ।
ଲଗ୍ନତ୍ରିକୋଣୋତ୍ତମବୀର୍ଯ୍ୟଯୁକ୍ତଂ ସଂପ୍ରୋଚ୍ୟତେଽଙ୍ଗାଲଭନାଦଭବ୍ଦ ।୫।

କୌଣସି କୌଣସି ଆଚାର୍ଯ୍ୟ ଚନ୍ଦ୍ର ଥିବା ନବାଂଶକୁ ଧରି ଶୁକ୍ଳମାସ ନିର୍ଣ୍ଣୟ କରଥାନ୍ତି; ଅର୍ଥାତ୍ ଚନ୍ଦ୍ର ଯେଉଁ ନକ୍ଷତ୍ରରେ ଥାଏ (ପୂର୍ଣ୍ଣିମା ଯେ ନକ୍ଷତ୍ରରେ ପଡ଼େ) ତଦନୁରୂପ ମାସ ହୁଏ । ଯଥା କୃତ୍ତିକାରେ ଚନ୍ଦ୍ର ଥିଲେ କାର୍ତ୍ତିକ, ଫଳତଃ ଚନ୍ଦ୍ର ମେଷର ଅଷ୍ଟମ ନବାଂଶଠାରୁ ବୃଷର ସପ୍ତମ ନବାଂଶ ମଧ୍ୟରେ ଥିଲେ କାର୍ତ୍ତିକ ମାସ ହେବ ( କୃତ୍ତିକା ଓ ରୋହିଣୀ ନକ୍ଷତ୍ର ) ଚନ୍ଦ୍ର ବୃଷର ଅଷ୍ଟମନବାଂଶଠାରୁ ମିଥୁନର ଷଷ୍ଠ ନବାଂଶ ପର୍ଯ୍ୟନ୍ତ ( ମୃଗଶିରା ଓ ଆର୍ଦ୍ରା ) ଥିଲେ ମାର୍ଗଶିର ହେବ । ଚନ୍ଦ୍ର ମିଥୁନର ସପ୍ତମ ନବାଂଶଠାରୁ କର୍କଟର ପଞ୍ଚମ-ନବାଂଶ ( ପୁନର୍ବସୁ ଓ ପୁଷ୍ୟା ) ମଧ୍ୟରେ ଥିଲେ ପୌଷ; ଚନ୍ଦ୍ର କର୍କଟର ଷଷ୍ଠ ନବାଂଶଠାରୁ ସିଂହର ଚତୁର୍ଥ ନବାଂଶ ମଧ୍ୟରେ ଥିଲେ ( ଅଶ୍ଳେଷା ଓ ମଘା ନକ୍ଷତ୍ର ) ମାଘ; ସିଂହର ପଞ୍ଚମ ନବାଂଶଠାରୁ କନ୍ୟାର ସପ୍ତମ ନବାଂଶ ମଧ୍ୟରେ ଥିଲେ ( ପୂର୍ବାଫାଲ୍‌ଗୁନୀ, ଉତ୍ତରଫାଲ୍‌ଗୁନୀ ଓ ହସ୍ତା ) ଫାଲ୍‌ଗୁନ; କନ୍ୟାର ଅଷ୍ଟମ ନବାଂଶଠାରୁ ତୁଳାର ଷଷ୍ଠ ନବାଂଶ ପର୍ଯ୍ୟନ୍ତ ( ଚିତ୍ରା ଓ ସ୍ଵାତୀ) ଚୈତ୍ର; ତୁଳାର ସପ୍ତମ ନବାଂଶଠାରୁ ବିଛାର ପଞ୍ଚମ ନବାଂଶ (ବିଶାଖା ଓ ଅନୁରାଧା) ରେ ବୈଶାଖ; ବିଛାର ଷଷ୍ଠ ନବାଂଶଠାରୁ ଧନୁର ଚତୁର୍ଥ ନବାଂଶ ପର୍ଯ୍ୟନ୍ତ (ଜ୍ୟେଷ୍ଠା ଓ ମୂଳା) ଜ୍ୟେଷ୍ଠ; ଧନୁର ପଞ୍ଚମ ନବାଂଶଠାରୁ ମକରର ତୃତୀୟ ନବାଂଶ ଯାଏ ( ପୂର୍ବାଷାଢ଼ା ଓ ଉତ୍ତରଷାଢ଼ା ) ଆଷାଢ଼; ମକରର ଚତୁର୍ଥ ନବାଂଶଠାରୁ କୁମ୍ଭର ଦ୍ଵିତୀୟ ନବାଂଶ ( ଶ୍ରବଣା ଓ ଧନିଷ୍ଠା ) ପର୍ଯ୍ୟନ୍ତ ଶ୍ରାବଣ; କୁମ୍ଭର ତୃତୀୟ ନବାଂଶଠାରୁ ମୀନର ଚତୁର୍ଥ ନବାଂଶ ( ଶତଭିଷା, ପୂର୍ବଭାଦ୍ରପଦ, ଉତ୍ତର ଭାଦ୍ରପଦ ) ଯାଏ ଭାଦ୍ରବ; ମୀନର ପଞ୍ଚମ ନବାଂଶ ଠାରୁ ମେଷର

ଅଷ୍ଟମ ନବାଂଶ ପର୍ଯ୍ୟନ୍ତ (ରେବତୀ, ଅଶ୍ୱିନୀ ଓ କୃତ୍ତିକା ନକ୍ଷତ୍ର) ଚନ୍ଦ୍ର ଥିଲେ ଅଶ୍ୱିନ ମାସ ହେବ ।

ପ୍ରଶ୍ନକାଳୀନ ଲଗ୍ନ, ପଞ୍ଚମ, ନବମ, ଏହି ତିନୋଟି ରାଶିମଧ୍ୟରୁ ଯେ ସର୍ବାଧିକ ବଳଯୁକ୍ତ ସେହି ରାଶିରେ ଜନ୍ମକାଳରେ ଚନ୍ଦ୍ର ଥିବା କହିବେ ।

ପ୍ରଶ୍ନକର୍ତ୍ତା ନିଜର ଯେ ଅଙ୍ଗ ସ୍ପର୍ଶ କରୁଥିବ ବା କାଳପୁରୁଷ ଲେଖି ପ୍ରଶ୍ନକର୍ତ୍ତାଙ୍କୁ କହିଲେ ସେ ଯେଉଁ ଅଙ୍ଗ ସ୍ପର୍ଶ କରିବ ସେହି ଅଙ୍ଗ ଯେ ରାଶି ତଦନୁରୂପ ରାଶି ହେବ । ପ୍ରଶ୍ନକାଳରେ ଯେଉଁ ଜୀବ ଦେଖାଯିବ ବା ଯାହାର ଶବ୍ଦ ପ୍ରଥମେ ଶୁଣାଯିବ ତଦନୁସାରେ ରାଶିହେବ ।୫।

ଦ୍ରଃ—ପ୍ରଥମ ନିୟମରେ ଆନୀତ ମାସ ଓ ବର୍ତ୍ତମାନ ନିୟମରେ ଆନୀତ-ମାସରେ ପ୍ରଭେଦ ରହିଲେ ପ୍ରଥମ ନିୟମହିଁ ଗ୍ରାହ୍ୟ । ନଷ୍ଟଜାତକ ପ୍ରମାଣ ଗୁଡ଼ିକ ପରସ୍ପର ବିରୋଧୀ, 'ଜ୍ୟୋତିଷୀ' ସଂପୂର୍ଣ୍ଣ ସତର୍କ ହୋଇ ନିୟମ ପ୍ରୟୋଗ ନକଲେ ଏହା ବିଫଳ ହେବ ।

## ଅନ୍ୟପ୍ରକାର ନିୟମରେ ଜନ୍ମରାଶି ଜ୍ଞାନ

ଯାବାନ୍ ଗତଃ ଶୀତକରୋ ବିଲଗ୍ନାଚ୍ଚନ୍ଦ୍ରାଦ୍ୱଦେତ୍ତାବତି ଜନ୍ମରାଶିଃ ।
ମୀନୋଦୟେ ମୀନଯୁଗଂ ପ୍ରଦିଷ୍ଟଂ ଭକ୍ଷ୍ୟାହୃତାକାରରୁତୈଶ୍ଚ ଚିନ୍ତ୍ୟମ୍ ।୬।

ଅନ୍ୟପ୍ରକାର ଉପାୟରେ ରାଶି ଆଣିବା କଥା ଏଠାରେ ଉଲ୍ଲେଖ ହେବ । ପ୍ରଶ୍ନକାଳୀନ ଲଗ୍ନଠାରୁ ଯେତିକି ଦୂରରେ ଚନ୍ଦ୍ର ଅଛି, ତାଠାରୁ ସେତିକି ଦୂରରେ ଜନ୍ମରାଶି ସ୍ଥିର କରାଯିବ । କିନ୍ତୁ ପ୍ରଶ୍ନରେ ମୀନରାଶି ହେଲେ ତାହାର ବିଶେଷତ୍ୱ ଏତିକି ଯେ ସେହି ରାଶିରେହିଁ ଚନ୍ଦ୍ର ରହିବ, ଅର୍ଥାତ୍ ମୀନ ରାଶି ହେବ ।

ଉଦାହୃତ ପ୍ରଶ୍ନ ଜାତକର ରାଶି ମକର ଲଗ୍ନର ଏକାଦଶରେ ଚନ୍ଦ୍ରଥିବାରୁ ତାଠାରୁ ଏକାଦଶ ବୃଶ୍ଚିକ ହେଉଛି । ତେବେ ବହୁନିୟମ ଯେଉଁଥିକି ଖଟିବ ତାହା ଗ୍ରହଣ କରାଯିବ । ଏଠାରେ ମାସ ବୈଶାଖ ଶୁକ୍ଳ ଅଷ୍ଟମୀ ହେତୁ ବୃଶ୍ଚିକ ରାଶି ଅସମ୍ଭବ, ତେଣୁ ଅନ୍ୟ ଉପାୟରେ ଆନୀତ ରାଶି ଗ୍ରହଣୀୟ ।

ରାଶି ପ୍ରତ୍ୟେକ ନିୟମରେ ଭିନ୍ନ ଭିନ୍ନ ଆସିଲେ ପ୍ରଶ୍ନ କଲାବେଳେ ଦେଖିବା ଜୀବ, ଖାଦ୍ୟଦ୍ରବ୍ୟ, ପଶୁ ପକ୍ଷୀ ଆଦିଙ୍କର ଶବ୍ଦାଦି ଶୁଣି ତଦନୁରୂପ ଯେ ରାଶି ଆସିବ ସେହିରାଶି ସ୍ଥିର କରାଯିବ ।

## ଜନ୍ମଲଗ୍ନ ନିରୂପଣ

ହୋରାନବାଂଶପ୍ରତିମଂ ବିଲଗ୍ନଂ ଲଗ୍ନାଦ୍ରବିର୍ଯାବତି ଚ ଦୃକ୍କାଣେ ।
ତସ୍ମାଦ୍‌ବଦେତ୍ତାବତି ବା ବିଲଗ୍ନଂପ୍ରଷ୍ଟୁଃ ପ୍ରସୂତାବତି ଶାସ୍ତ୍ରମାହ ।୭।

ପ୍ରଶ୍ନକାଳୀନ ଲଗ୍ନରେ ଯେଉଁରାଶିର ନିବାଂଶ ରହିଥିବ ସେହି ରାଶି ଲଗ୍ନ ହେବ । ଅଥବା ପ୍ରଶ୍ନଲଗ୍ନରେ ଯେ ଦ୍ରେକ୍କାଣ ଥିବ ତାଠାରୁ ଯେତେ ଦ୍ରେକ୍କାଣ ଦୂରରେ ରବିଥିବ, ପ୍ରଶ୍ନଲଗ୍ନର ସେତିକି ଦୂରରେ ଜନ୍ମ ଲଗ୍ନ ହେବ ।

ପ୍ରଥମ ପ୍ରକାରେ ପ୍ରଶ୍ନଲଗ୍ନର ନବାଂଶ ହେଲା କନ୍ୟା । ତେଣୁ କନ୍ୟା ଲଗ୍ନ ।

ଦ୍ୱିତୀୟ ପ୍ରକାରେ ମୀନର ପ୍ରଥମ ଦ୍ରେକ୍କାଣ ପ୍ରଶ୍ନଦ୍ରେକ୍କାଣ, ରବି ଠିକ୍ ସେହି ଦ୍ରେକ୍କାଣରେ ଅଛି । ତେଣୁ ମୀନ ଜନ୍ମଲଗ୍ନ ହେବ ।

ଏଥିରୁ ଦୁଇ ପ୍ରକାର ଲଗ୍ନ ଆସିଲା, ତେବେ ମେଷ ୧୮ ଦିନ ସ୍ପଷ୍ଟ ଦି ୭।୨୮ ହେଲେ ଲଗ୍ନ ସିଂହ ହେବ । ସିଂହ ଲଗ୍ନର ତୃତୀୟରେ ଅର୍ଥାତ୍ ମକର ରାଶିରେ ଗୁରୁ ରହିବା ସମ୍ଭବ ।

ଏଭଳି ପରସ୍ପର ବିରୋଧି ପ୍ରମାଣମାନ ଦେଖାଯିବାରୁ ମହାମତି ବରାହ କହିଛନ୍ତି ଯେ ପ୍ରାଚୀନ ଗ୍ରନ୍ଥ କର୍ତ୍ତାମାନଙ୍କ ମତନେଇ ସେ ଲେଖିଛନ୍ତି ଏଥିରେ ତାଙ୍କର ନିଜତ୍ୱ କିଛି ନାହିଁ ।

## ପ୍ରକାରାନ୍ତର ଲଗ୍ନ ନିର୍ଣ୍ଣୟ

କଲ୍ପାଦଶୈଲ୍ଲଗ୍ନଗେ ବୀର୍ଯ୍ୟଗେ ବା ଛାୟାଙ୍ଗୁଳଘ୍ନେର୍କହୃତେଽବଶିଷ୍ଟମ୍ ।
ଆସୀନସୁପ୍ତୋତ୍ଥିତତିଷ୍ଠତାଭଂ ଜାୟାସୁଖାଜ୍ଞାଦୟଗଂ ପ୍ରଦିଷ୍ଟମ୍ ।୮।

ଅନ୍ୟପ୍ରକାର ଉପାୟରେ ଲଗ୍ନ ଆଣିବା କଥା ଉଲ୍ଲେଖ କରାଯିବ । ପ୍ରଶ୍ନ-ଲଗ୍ନରେ ଗ୍ରହଥିଲେ ତାହାର ସ୍ଫୁଟ, ବହୁଗ୍ରହ ଥିଲେ ଯେ ବଳବାନ୍ ତାହାର ସ୍ଫୁଟ, ଲଗ୍ନରେ କୌଣସି ଗ୍ରହ ନଥିଲେ ସମଗ୍ର ଜାତକରେ ଯେ ଗ୍ରହ ବଳିଷ୍ଠ ତାହାର ସ୍ଫୁଟକୁ କଳାରେ ପରିଣତ କର ।

୧୨ ଅଙ୍ଗୁଳ ଶଙ୍କୁର ଛାୟା ଯାହାହେଲା ତାକୁ ପୂର୍ବୋକ୍ତ ବଳିଷ୍ଠ ଗ୍ରହର କଳାରେ ଗୁଣ କରି ୧୨ରେ ହରି ଦିଅ । ଅବଶିଷ୍ଟରୁ ରାଶି କହିବ । ୧ ଅବଶିଷ୍ଟ ରହିଲେ ମେଷ କ୍ରମରେ ଲଗ୍ନ ସ୍ଥିର ହେବ ।

ଅନ୍ୟ ଉପାୟ ହେଉଛି ପ୍ରଶ୍ନକର୍ତ୍ତା ବସିଥାଇ ପ୍ରଶ୍ନକଲେ ପ୍ରଶ୍ନଲଗ୍ନର ସପ୍ତମରାଶି ଜନ୍ମଲଗ୍ନ ହେବ । ଯଦି ପ୍ରଶ୍ନକର୍ତ୍ତା ପଚାରୁଛି ପଚାରୁ ଶୋଇପଡ଼େ ତେବେ ପ୍ରଶ୍ନଲଗ୍ନର ଚତୁର୍ଥ ଲଗ୍ନ ଜନ୍ମଲଗ୍ନ ହେବ । ଉଠିପଡ଼ି ପଚାରିଲେ

ପ୍ରଶ୍ନଲଗ୍ନର ଦଶମ ରାଶି ଜନ୍ମଲଗ୍ନ ହେବ । ଠିଆହୋଇ ପଚ୍ଛରିଲେ ସେହି ପ୍ରଶ୍ନଲଗ୍ନହିଁ ଜନ୍ମଲଗ୍ନ ହେବ ।୮।

## ଅନ୍ୟଉପାୟରେ ନଷ୍ଟ ଜାତକ ନିରୂପଣ

ଗୋସିଂହୌ ଜୂତୁମାଷ୍ଟମୌ କ୍ରିୟତୁଲେ କନ୍ୟାମୃଗୌ ଚ କ୍ରମାତ୍
ସଂବର୍ଗ୍ୟା ଦଶକାଷ୍ଟସପ୍ତବିଷୟୈଃ ଶେଷାଃ ସ୍ୱସଂଖ୍ୟାଗୁଣାଃ ।
ଜୀବାରାସ୍ଫୁଜିଦୈନ୍ଦବାଃ ପ୍ରଥମବଚ୍ଛେଷା ଗ୍ରହାଃ ସୌମ୍ୟବ-
ଦ୍ରାଶୀନାଂ ନିହତୋ ବଧୂର୍ଗ୍ରହଯୁତୈଃ କାର୍ଯ୍ୟା ଚ ତଦ୍‌ବର୍ଗଣାଃ ।୯।

ପ୍ରଶ୍ନଲଗ୍ନର ସ୍ଫୁଟକୁ କଳାକରି ସେହିରାଶିର ଗୁଣକାଙ୍କ ଦ୍ୱାରା ଗୁଣ, ଲଗ୍ନରେ ଯଦି ଗ୍ରହଥାଏ ତେବେ ଗୁଣକାଙ୍କ ଦ୍ୱାରା ପୂର୍ବଗୁଣନ ଫଳକୁ ଗୁଣ । ବହୁଗ୍ରହ ଥିଲେ ମଧ୍ୟ ସେମାନଙ୍କର ଗୁଣକାଙ୍କ ଦ୍ୱାରା ଗୁଣାଯିବ ।

ରାଶିର ଗୁଣକାଙ୍କ:—ବୃଷ ଏବଂ ସିଂହର ୧୦; ମିଥୁନ ଏବଂ ବୃଶ୍ଚିକର ୮; ମେଷ ଏବଂ ତୁଳାର ୭; କନ୍ୟା ଏବଂ ମକରର ୫; କର୍କଟର ୪; ଧନୁର ୯; କୁମ୍ଭର ୧୧ ଓ ମୀନର ୧୨ ।

ଗ୍ରହର ଗୁଣକାଙ୍କ:—ରବିର ୫, ଚନ୍ଦ୍ରର ୫, ମଙ୍ଗଳର ୮, ବୁଧର ୫, ଗୁରୁର ୧୦, ଶୁକ୍ରର ୭, ଶନିର ୫ ।

## ନକ୍ଷତ୍ର ନିରୂପଣ

ସପ୍ତାହତଂ ତ୍ରିଘନ ଭାଜିତଶେଷମୃକ୍ଷଂ
ଦତ୍ତ୍ୱାଥବା ନବବିଶୋଧ୍ୟ ନବାଥବାସ୍ମାତ୍ ।
ଏବଂ କଳତ୍ରସହଜାତ୍ମଜଶତ୍ରୁଭେଭ୍ୟଃ
ପ୍ରଷ୍ଟୁର୍ବଦେଦୁଦୟରାଶିବଶେନ ତେଷାମ୍ ।୧୦।

ପୂର୍ବୋକ୍ତ ଗୁଣିତାଙ୍କ କଳାପିଣ୍ଡକୁ ୭ରେ ଗୁଣିବେ । ଯଦି ପ୍ରଶ୍ନଲଗ୍ନ ଚରରାଶି ହୁଏ ୯ ମିଶାଇବେ । ଦ୍ୱାତ୍ମିକ ରାଶିହେଲେ ୯ ବିଯୋଗ କରିବେ । ସ୍ଥିରରାଶି ହେଲେ ମିଶାଣ ବା ଫେଡ଼ାଣ କିଛି ଆବଶ୍ୟକ ନାହିଁ । ଏହା କେତେକ ବଙ୍ଗ ଜ୍ୟୋତର୍ବିଦଙ୍କ ମତ, କିନ୍ତୁ ଟୀକାକାର ଉତ୍ପଳ ଏଥିସହ ଏକମତ ନୁହନ୍ତି । ସେ କହନ୍ତି ପ୍ରଶ୍ନଲଗ୍ନର ପ୍ରଥମ ଦ୍ରେକ୍କାଣ ହେଲେ ଗୁଣ-ପିଣ୍ଡରେ ୯ ମିଶାଇବେ । ଦ୍ୱିତୀୟ ଦ୍ରେକ୍କାଣ ହେଲେ ମିଶାଣ ବା ଫେଡ଼ାଣ ନାହିଁ । ତୃତୀୟ ଦ୍ରେକ୍କାଣ ହେଲେ ୯ ଫେଡ଼ିବେ, ତାପରେ ଯାହା

ରହିଲା ତାକୁ ୨୭ରେ ହରିବେ, ଅବଶିଷ୍ଟରୁ ନକ୍ଷତ୍ର ଆସିବ । ୧ ଅବଶିଷ୍ଟ ରହିଲେ ଅଶ୍ୱିନୀ, ୨ ରହିଲେ ଦ୍ୱିତୀୟା ଏପରି କ୍ରମରେ ବୁଝିବେ । ଢେଢେକଙ୍କର ମତ ଏହି ଯେ ଏହି ୯ ଫେଡ଼ିବା ବା ମିଶାଇବା ଆଗରୁ ୨୭ ରେ ହରିବାକୁ ହେବ । ତାପରେ ପୂର୍ବୋକ୍ତ ରୀତିରେ ମିଶାଣ କି ଫେଡ଼ାଣ ଯାହା ଦରକାର ତାହା କରାଯିବ ।

ଏପରି କଳନାବାଦଙ୍କର ବୟସ୍ୟ ମଧ୍ୟ ଆଣିବେ । ଲଗ୍ନରୁ ନିଜର ଅଣିବା ଭଳି ସପ୍ତମ ଭାବସ୍ଫୁଟରୁ ସ୍ତ୍ରୀର, ପଞ୍ଚମରୁ ପୁତ୍ରର ବୟସ୍ୟ ସ୍ଥିର କରିବେ । ମନେକର ସ୍ତ୍ରୀର ନକ୍ଷତ୍ର ଜାଣିବା ଅବଶ୍ୟକ, ତେବେ ସପ୍ତମ ଭାବସ୍ଫୁଟକୁ କଳାକରି ସପ୍ତମ ରାଶିର ଗୁଣକାଙ୍କ ଦ୍ୱାରା ଗୁଣି ଓ ସେଠାରେ ଗ୍ରହଥିଲେ ଗ୍ରହ ଗୁଣକ ଦ୍ୱାରା ଗୁଣି ୨୭ ରେ ହରି ପୂର୍ବୋକ୍ତ କ୍ରମରେ ସ୍ତ୍ରୀର ନକ୍ଷତ୍ର ଆଣିବେ । ଏହିପରି ଅନ୍ୟାନ୍ୟ ଭାବରୁ ସେହି ଭାବସମ୍ପୃକ୍ତ ବ୍ୟକ୍ତିର ବୟସ୍ୟ ବୁଝିବେ, ସେହି ଭାବକୁ ଲଗ୍ନ ବୋଲି ଧରିନେଇ ପୂର୍ବୋକ୍ତ ନିୟମରେ ହିସାବ କରି ସ୍ଥିର କରିବେ ।

ବର୍ଷର୍ତ୍ତୁମାସତିଥୟୋ ଦ୍ୟୁନିଶଂ ହ୍ୟୁଡୂନି
ବେଳୋଦୟର୍କ୍ଷନବଭାଗବିକଳ୍ପନାଃ ସ୍ୟୁଃ ।
ଭୂୟୋ ଦଶାଦିଗୁଣିତାଃ ସ୍ୱବିକଳ୍ପଭକ୍ତା
ବର୍ଷାଦୟୋନବକଦାନବିଶୋଧନାଭ୍ୟାମ୍ ।୧୧।

ଗୁଣପିଣ୍ଡ କଳା ଯାହା ଆସିବ ତାକୁ ୪ ସ୍ଥାନରେ ଅଲଗା ଅଲଗା ଭାବେ ରଖ । ପ୍ରଥମକୁ ୧୦, ଦ୍ୱିତୀୟ ୮, ତୃତୀୟ ୭ ଏବଂ ଚତୁର୍ଥ ସ୍ଥାନରେ ଥିବା ସଂଖ୍ୟାକୁ ୫ ରେ ଗୁଣ, ତାପରେ ୯ ମିଶାଇବ ବା ଫେଡ଼ିବା ନିୟମାନୁସାରେ କରିବେ । ବର୍ଷ ଆଣିବା ଅବଶ୍ୟକ ହେଲେ ଏହି ଗୁଣିତାଙ୍କୁ ୧୨୦ରେ ହରିବେ । ଅବଶିଷ୍ଟରୁ ବୟସ ଆସିବ ଋତୁ ମାସ ତିଥି ମଧ୍ୟ ଏଥିରୁ ଆସିବ । ନିୟମ ପରଶ୍ଳୋକ ଦେଖନ୍ତୁ ।୧୧।

## ଜନ୍ମଋତୁ, ମାସ, ପକ୍ଷ, ତିଥିଜ୍ଞାନ

ବର୍କ୍ଷେତ୍ୟା ଦଶକେଷ୍ୱଦା ଋତୁମାସାସ୍ତଥୈବ ଚ ।
ଅଷ୍ଟକେଷ୍ୱପି ମାସାର୍ଦ୍ଧସ୍ତିଥୟଷ୍ଟ ତଥା ସ୍ମୃତାଃ ।୧୨।

ପୂର୍ବୋକ୍ତ ୧୦ରେ ଗୁଣିଥିବା ଗୁଣପିଣ୍ଡ ଫଳକୁ ୧୨୦ ରେ ହରିଲେ ଅବଶିଷ୍ଟରୁ ଜାତକର ବୟସ ସ୍ଥିର କରିବ । ସେହି ସଂଖ୍ୟାକୁ ୬ ରେ

ଦେଲେ ଅବଶିଷ୍ଟରୁ ଋତୁ ଆସିବ । ଏହି ଋତୁ ଶିଶିର କ୍ରମରେ ଗଣି ନେବେ । ୨ ରେ ହରଦେଲେ ୧ ଅବଶିଷ୍ଟ ରହିଲେ ଋତୁର ପ୍ରଥମ ମାସ ବୋଲି ଧରିନେବେ । ଅଂଶ ନରହିଲେ ଦ୍ୱିତୀୟ ମାସ ବୋଲି ଜାଣିବେ । ଜାତକର ବୟସ ୧୨ ଠାରୁ ଅଧିକ ହେଲେ ନଷ୍ଟ ଜାତକର ନିୟମ ତାକୁ ଖଟିବ ନାହିଁ ।

ତାପରେ ୮ରେ ଗୁଣାଯାଇ ଥିବା ଗୁଣପିଣ୍ଡକୁ ନିଅ, ତାକୁ ୨ ରେ ହର । ୧ ଅଂଶ ରହିଲେ ପୃଚ୍ଛା ମାସର ଶୁକ୍ଳପକ୍ଷରେ ଜନ୍ମ, ଅଂଶ ନ ରହିଲେ କୃଷ୍ଣପକ୍ଷରେ ଜନ୍ମ ବୋଲି ସ୍ଥିର କର । ଗୁଣପିଣ୍ଡକୁ ୧୫ ରେ ହରଣ କଲେ ଅବଶିଷ୍ଟରୁ ତିଥି ଆସିବ ।୧୨।

ଦିବାରାତ୍ରିପ୍ରସୂତଂ ଚ ନକ୍ଷତ୍ରାନୟନଂ ତଥା ।
ସପ୍ତକେଷ୍ୱପି ବର୍ଗେଷୁ ନିତ୍ୟମେବୋପଲକ୍ଷୟେତ୍ ।୧୩।

୭ ରେ ଗୁଣପିଣ୍ଡକୁ ଗୁଣାଯାଇଥିବା ଫଳ ଅଙ୍କ ନିଅ । ଏହାକୁ ୨ ରେ ହରିଲେ ୧ ଅବଶିଷ୍ଟ ରହିଲେ ଦିନ, ଅଂଶ ନରହିଲେ ରାତ୍ରି ବୋଲି ସ୍ଥିର କର । ଏହାକୁ ୨୭ ରେ ହରିଲେ ଅବଶିଷ୍ଟରୁ ନକ୍ଷତ୍ର ଆସିବ । ୧ ଅଂଶ ରହିଲେ ଅଶ୍ୱିନୀ କ୍ରମରେ ବୁଝିବେ । ନକ୍ଷତ୍ର ଆଣିବା କଥା ଆଗରୁ ଉଲ୍ଲେଖ ଥିଲେ ମଧ୍ୟ ଏଠାରେ ପୁନର୍ବାର ଲେଖାଯାଇ ଅଛି ।

## ଜନ୍ମ ସମୟ ଜ୍ଞାନ

ବେଳାମଥ ବିଲଗ୍ନଂ ହୋରାମଂଶକମେବଚ ।
ପଞ୍ଚକେଷୁ ବିଜାନୀୟାନ୍ନଷ୍ଟଜାତକସିଦ୍ଧୟେ ।୧୪।

୫ ରେ ଗୁଣପିଣ୍ଡକୁ ଗୁଣାଯାଇ ଯେ ଫଳ ଆସିଛି, ତାକୁ ସେ ଯଦି ଦିବାରେ ଜନ୍ମ ବୋଲି ପୂର୍ବୋକ୍ତ ନିୟମରେ ସ୍ଥିର କରାଗଲା ତେବେ ଦିବାମାନ ଦ୍ୱାରା, ରାତ୍ରିରେ ଜନ୍ମ ବୋଲି ଜଣାଗଲେ ରାତ୍ରିମାନ ଦ୍ୱାରା ( ଦିବା ବା ରାତ୍ରି ଯେତେ ଦଣ୍ଡ ଯେତେ ଲିତା ତାକୁ ଲିତାକରି ତଦ୍ୱାରା ) ହରଣ କଲେ ଅବଶିଷ୍ଟରୁ ଦିବା ବା ରାତ୍ରି କେତେ ଭୋଗ ହୋଇଛି ଧରାପଡିବ । ସମୟରୁ ଲଗ୍ନ, ସପ୍ତବର୍ଗ, ଗ୍ରହାବସ୍ଥିତି, ଦଶାଶେଷ, ଅଷ୍ଟକବର୍ଗ ସମସ୍ତ ଆସିଯିବ । ତାରଣ ପୂର୍ବରୁ ବୟସ, ମାସ, ଋତୁ, ପକ୍ଷ, ତିଥି ବର୍ତ୍ତିମାନ ବେଳ ମଧ୍ୟ ଜଣାଗଲା ।

## ପ୍ରକାରାନ୍ତର ଜନ୍ମ ନକ୍ଷତ୍ର ଜ୍ଞାନ

ସଂସ୍କାରନାମମାତ୍ରା ଦ୍ୱିଗୁଣା ଛାୟାଙ୍ଗୁଳୈଃ ସମାଯୁକ୍ତାଃ ।
ଶେଷଂ ବିନବକଭକ୍ତାନ୍ନକ୍ଷତ୍ରଂ ତଦ୍ଧନିଷ୍ଠାଦି ।୧୫।

ପ୍ରଶ୍ନକର୍ତ୍ତାଙ୍କ ଡାକନାମ ଯାହା ( ସେ ଯେଉଁ ନାମରେ ପରିଚିତ ) ଓ ତାଙ୍କର ସଂସ୍କାର (ବ୍ରତ ବିବାହ ଆଦି କାର୍ଯ୍ୟ) ଯେଉଁନାମରେ କରାଯାଇ ଅଛି ସେ ସବୁ ମାତ୍ରାକ୍ଷରକୁ ୨ ରେ ଗୁଣି ସେଥିରେ ଶଙ୍କୁର ଛାୟା ଯେତେ ଅଙ୍ଗୁଳ (ପ୍ରଶ୍ନକାଳରେ) ତାହା ମିଶାଇ ୨୭ ରେ ହରଣ କଲେ ଅବଶିଷ୍ଟ ଯାହା ରହିବ ତାହା ଧନିଷ୍ଠା ନକ୍ଷତ୍ର ଠାରୁ ଗଣି ବୁଝିବେ ଅର୍ଥାତ୍ ୧ ଅଂଶ ରହିଲେ ଧନିଷ୍ଠା, ୨ ରହିଲେ ଶତଭିଷା ଏହି କ୍ରମରେ ହେବ ।

ମାତ୍ରାରେ ସ୍ୱରବର୍ଣ୍ଣ ୧ ମାତ୍ରା ଓ ବ୍ୟଞ୍ଜନବର୍ଣ୍ଣ ଅର୍ଦ୍ଧ ମାତ୍ରା ବୋଲି ଧରାଯିବ । ମନେକର ପ୍ରଶ୍ନକର୍ତ୍ତାର ନାମ ନାରାୟଣ । ମାତ୍ରା ହେଲା ନା=୧½ ( ନ ଓ ଅ ) ରା ୧½, ଯ୍ୟ ୧½ ଣ ୧½ ମୋଟ ହେଲା ୬ ମାତ୍ରା । ଏହାକୁ ୨ରେ ଗୁଣାଯିବ । ଫଳହେଲା ୧୨ । ମନେକର ଛାୟାଙ୍ଗୁଳ ହେଲା ୮, ମୋଟ ହେଲା ୨୦ । ଏହାକୁ ୨୭ରେ ହରିବାରୁ ଅଂଶ ରହିଲା ୨୦ । ଧନିଷ୍ଠାଠାରୁ ୨୦ ନକ୍ଷତ୍ର ସ୍ୱାତୀ ଜନ୍ମନକ୍ଷତ୍ର ହେଲା ।

## ପ୍ରକାରାନ୍ତର ଜନ୍ମନକ୍ଷତ୍ର ଜ୍ଞାନ

ଦ୍ୱି ତ୍ରିଚତୁର୍ଦ୍ଦଶଦଶତଥି ସପ୍ତତ୍ରିଗୁଣା ନବାଷ୍ଟ ଚେନ୍ଦ୍ରାଦ୍ୟାଃ ।
ପଞ୍ଚଦଶଘ୍ନାସ୍ତଦିଙ୍ମୁଖାନ୍ୱିତା ଭଧନିଷ୍ଠାଦ୍ୟ ।୧୬।

ଦିଗାନୁରୂପ ଅଙ୍କ ନ୍ୟାସ କର । ପୂର୍ବାଦି ଦିଗକ୍ରମରେ ୨, ୩, ୧୪, ୧୦, ୧୫, ୨୧, ୯, ୮ ରଖ । ମନେକର ପ୍ରଶ୍ନକର୍ତ୍ତା ଉତ୍ତର ମୁଖ ହୋଇଅଛି, ତେବେ ଦିଗର ୯ ସଂଖ୍ୟା ନିଅ ତାକୁ ୧୫ ରେ ଗୁଣକର । ଗୁଣଫଳ ହେବ ୧୩୫ । ଏ ସମୟରେ ଯଦି ଅନ୍ୟକେହି ଥାଇ ସେଦିଗକୁ ମୁଖ କରିଥାଏ ତେବେ ସେମାନଙ୍କର ସଂଖ୍ୟା ଯାହା ସେଥିରେ ମିଶାଅ । ମନେକର ୩ ଜଣ ଉତ୍ତର ଦିଗକୁ ଚାହିଁଛନ୍ତି, ତେବେ ଦିଗର ଅଙ୍କସଂଖ୍ୟା ୯ର ୩ଗୁଣ ମିଶିବ ଅର୍ଥାତ୍ ଫଳ ଆସିବ ୧୩୫+୨୭=୧୬୨ ।

ପୂର୍ବଦିଗର ଅଙ୍କ ୨, ଏପରି ଅଗ୍ନିକୋଣର ୩, ଦକ୍ଷିଣର ୧୪, ନୈରୃତର ୧୦, ପଶ୍ଚିମର ୧୫, ବାୟବ୍ୟର ୨୧, ଉତ୍ତରର ୯, ଐଶାନ୍ୟର ୮ ଅଙ୍କ ଅଟେ ।

ଏହି ଗୁଣିତାଙ୍କ ୧୬୨କୁ ୨୭ରେ ହର ଫଳ ଆସିଲା ୧୬୨+୨୭=୬ ଲବ୍ଧ ଅଂଶ ଶୂନ୍ୟ । ୨୭ ନକ୍ଷତ୍ର ଧନିଷ୍ଠାଠାରୁ ଗଣିବାକୁ ହେବ ଅର୍ଥାତ୍ ଶ୍ରବଣା ଜନ୍ମନକ୍ଷତ୍ର ହେଲା ।

ଇତି ନଷ୍ଟଜାତକମିଦଂ ବହୁପ୍ରକାରଂ ମୟୋପଦିଷ୍ଟମ୍ ।
ଗ୍ରାହ୍ୟମତଃ ସଦ୍ଭିଶ୍ଚୈଃ ପରୀକ୍ଷ୍ୟଯନ୍ନାଦ୍ୟଥା ଭବତି ।୧୭।

ଇତି ଶ୍ରୀ ବରାହ ମିହିର କୃତେ ବୃହଜ୍ଜାତକେ ନଷ୍ଟଜାତକାଧ୍ୟାୟଃ ଷଡ୍‌ବିଂଶଃ

ଗ୍ରନ୍ଥକର୍ତ୍ତା ଏଠାରେ ଉଲ୍ଲେଖ କରୁଅଛନ୍ତି ଯେ— ମୁଁ ବହୁପ୍ରକାର ମତରେ ନଷ୍ଟଜାତକ ବିଧି କହିଲି । ବୁଦ୍ଧିମାନ୍ ଲୋକ ଯତ୍ନପୂର୍ବକ ଏହା ପରୀକ୍ଷାକରି ଯେ ନିୟମ ଲାଗୁହେବ ତାକୁ ଗ୍ରହଣ କରିବା ଉଚିତ ।

ଶ୍ରୀ ବରାହମିହିର କୃତ ବୃହଜ୍ଜାତକ ଗ୍ରନ୍ଥର ନଷ୍ଟଜାତକାଧ୍ୟାୟ ନାମକ
ଷଡ୍‌ବିଂଶତି ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।

—)+— ॥॥✱॥॥ —+(—

# ଦ୍ରେଷ୍କାଣାଧ୍ୟାୟଃ ସପ୍ତବିଂଶଃ

## ମେଷର ପ୍ରଥମ ଦ୍ରେଷ୍କାଣର ସ୍ୱରୂପ ଜ୍ଞାନ

କଟ୍ୟାଂ ସିତବସ୍ତ୍ରବେଷ୍ଟିତଃ କୃଷ୍ଣଃ ଶକ୍ତ ଇବାଭିରକ୍ଷିତୁମ୍ ।
ରୌଦ୍ରଃ ପରଶୁଂ ସମୁଦ୍ୟତଂ ଧତ୍ତେ ରକ୍ତବିଲୋଚନଃ ପୁମାନ୍ ।୧।

ମେଷର ପ୍ରଥମ ଦ୍ରେଷ୍କାଣ—ମେଷ ଦ୍ରେଷ୍କାଣ, ଏହାର ଅଧିପତି ମଙ୍ଗଳ । ଏପରି ପ୍ରତ୍ୟେକ ରାଶିର ୩ଟି ଦ୍ରେଷ୍କାଣ; ମୋଟ ୩୬ ଦ୍ରେଷ୍କାଣ । ଏହିମାନଙ୍କର ରୂପ, ସ୍ୱଭାବାଦି ଲେଖା ଯାଉଛି । ଯାତ୍ରାକାଳରେ ସୌମ୍ୟଦର୍ଶନ ଦ୍ରେଷ୍କାଣ ( ପୁଷ୍ପ, ଫଳ, ରତ୍ନ, ସୁବେଶ ) ହେଲେ ଫଳ ଶୁଭ ହୁଏ । ପ୍ରଶ୍ନକାଳରେ ହଜିଯାଇଥିବା ଦ୍ରବ୍ୟ କିଏ ନେଇଛି ତାହାର ବିଷୟ ଏହି ଦ୍ରେଷ୍କାଣରୁ ବୁଝିବେ । ଚୋରର ଆକୃତି ପ୍ରକୃତି ଦ୍ରେଷ୍କାଣର ଅନୁରୂପ ହିଁ ହେବ । ଜାତକର ଗ୍ରହାବସ୍ଥିତ ସୌମ୍ୟଦ୍ରେଷ୍କାଣରେ ହେଲେ ମୋଟ ଉପରେ ଜାତକର ସୌମ୍ୟରୂପ ତଥା ଲକ୍ଷଣ ହୁଏ । ଯାତ୍ରାକାଳରେ ଦ୍ରେଷ୍କାଣ ଶୁଭ ଦୃଷ୍ଟ ହେଲେ ଯାତ୍ରା ଫଳ ଶୁଭ ହୁଏ । ଦ୍ରେଷ୍କାଣ ପାପଦୃଷ୍ଟ ହେଲେ, ଭୁଜଙ୍ଗ ତଥା ନିଗଡ଼ ହେଲେ, ପାପଯୁକ୍ତ ହେଲେ, ରୂପଲକ୍ଷଣରେ ଭୟପ୍ରଦ ହେଲେ, ଶସ୍ତ୍ରାସ୍ତ୍ର ଧାରଣ କରିଥିଲେ ତାହାର ଫଳ ଭଲ ହୁଏ ନାହିଁ ।

ମେଷର ପ୍ରଥମ ଦ୍ରେଷ୍କାଣର ରୂପ ଏହି ଯେ ସେ ପୁରୁଷ ଙ୍କଙ୍କ, କଟିରେ ଶୁକ୍ଳବସ୍ତ୍ର ଥାଏ । ବର୍ଣ୍ଣକଳା, ରକ୍ଷାକରିବାରେ ସମର୍ଥପରି ଦେଖାଇ ହୁଏ । ସେ ଭୀଷଣ, ରକ୍ତବର୍ଣ୍ଣ ଚକ୍ଷୁଯୁକ୍ତ ହୁଏ । ସେ ହାତରେ କୁଠାରକୁ ଟେକି ଧରିଥାଏ ।

## ମେଷର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ରକ୍ତାମ୍ବରା ଭୂଷଣଭକ୍ଷ୍ୟଚିନ୍ତା କୁମ୍ଭାକୃତିର୍ବାଜିମୁଖୀ ତୃଷାର୍ତ୍ତା ।
ଏକେନ ପାଦେନ ଚ ମେଷମଧ୍ୟେ ଦ୍ରେଷ୍କାଣରୂପଂ ଯବନୋପଦିଷ୍ଟମ୍ ।୨।

ମେଷର ଦ୍ୱିତୀୟ ଦ୍ରେଷ୍କାଣର ସ୍ୱାମି ଅଧିପତି ରବି । ଏହା ସ୍ତ୍ରୀ ଦ୍ରେଷ୍କାଣ । ଚତୁଷ୍ପଦ ଅଟେ । କେହି କେହି ଏହାକୁ ଖଗ ଦ୍ରେଷ୍କାଣ କହନ୍ତି । ଏହାର ସ୍ୱରୂପ ସ୍ତ୍ରୀ, ଏହି ଯେ ଲାଲବର୍ଣ୍ଣର ଲୁଗା ଧାରଣ କରିଥାଏ । ଅଳଙ୍କାର ଓ ଖାଦ୍ୟ ବିଷୟରେ ମନକୁ ରଖେ, ତାହାର କୁମ୍ଭାକାର ଉଦର, ଘୋଡ଼ାମୁହଁପରି ମୁହଁ, ସେ ତୃଷାର୍ତ୍ତା ଓ ଏକପାଦରେ ଗତି କରେ । ଯବନେଶ୍ୱରଙ୍କର ଏହିମତ ଅଟେ ।

## ମେଷର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

କ୍ରୂରଃ କଳାଜ୍ଞଃ କପିଳଃ କ୍ରିୟାର୍ଥୀ ଭଗ୍ନବ୍ରତୋଽଭ୍ୟୁଦ୍ୟତଦଣ୍ଡହସ୍ତଃ ।
ରକ୍ତାନି ବସ୍ତ୍ରାଣି ବିଭର୍ତ୍ତି ଚଣ୍ଡୋ ମେଷେ ତୃତୀୟଃ କଥିତସ୍ତ୍ରିଭାଗଃ ।୩।

ମେଷର ତୃତୀୟ ଦ୍ରେକ୍କାଣର ଅଧିପତି ଗୁରୁ, ଏହି ପୁରୁଷ ଦ୍ରେକ୍କାଣ କ୍ରୂରସ୍ୱଭାବ, କଳାବିଦ୍ୟାରେ ପ୍ରବୀଣ, ପିଙ୍ଗଳବର୍ଣ୍ଣ, କାର୍ଯ୍ୟପ୍ରିୟ, ନୀତିହୀନ, ହସ୍ତ ଉଞ୍ଚାଇ ଠେଙ୍ଗା ଧରିଥାଏ । ସେ ରକ୍ତବର୍ଣ୍ଣ ବସ୍ତ୍ର ଧାରଣ କରିଥାଏ ଓ କ୍ରୋଧଯୁକ୍ତ ହୋଇଥାଏ ।

## ବୃଷର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

କୁଞ୍ଚିତଲୂନକଚଃ ଘଟଦେହା ଦଗ୍ଧପଟା ତୃଷିତାଶନଚିତ୍ତା ।
ଆଭରଣାନ୍ୟଭିବାଞ୍ଛିତ ନାରୀ ରୂପମିଦଂ ବୃଷଭେ ପ୍ରଥମସ୍ୟ ।୪।

ବୃଷର ପ୍ରଥମ ଦ୍ରେକ୍କାଣର ଅଧିପତି ଶୁକ୍ର, ସେ ସ୍ତ୍ରୀ କୁଞ୍ଚିତ ଓ କର୍ତ୍ତିତ କେଶଯୁକ୍ତ, ଉଦର କୁମ୍ଭପରି, ପୋଡିଯାଇ ଥିବା ଲୁଗା ପିନ୍ଧିଥାଏ, ତୃଷାର୍ତ୍ତା, ଅଳଙ୍କାର ତଥା ଖାଦ୍ୟରେ ମନବଳାଇ ଥାଏ ।

## ବୃଷର ଦ୍ୱିତୀୟ ଦ୍ରେଷ୍କାଣର ସ୍ୱରୂପ ବର୍ଣ୍ଣନ

କ୍ଷେତ୍ର ଧାନ୍ୟଗୃହଧେନୁକଳାଜ୍ଞୋ ଲଙ୍ଗଲେ ସଶକଟେ କୁଶଲଶ୍ଚ ।
ସ୍କନ୍ଧମୁଦ୍ୱହତି ଗୋପତିତୁଲ୍ୟଂ କ୍ଷୁତ୍ପରୋଽଜବଦନୋମଲବାସାଃ ।୫।

ବୃଷର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ବୁଧ, ଏହା ଚତୁଷ୍ପଦ ଦ୍ରେକ୍କାଣ ସେ ପୁରୁଷ ଭୂମି, ଧାନ୍ୟ, ଗୃହ, ଗୋକାତି, କଳାଶାସ୍ତ୍ର ବିଷୟରେ ଜ୍ଞାନ

ରଖିଥାଏ । ବୃଷ ତଥା ଶକଟ ବିଷୟରେ ବିଶେଷ କାଠିଣ୍ୟ । ସ୍କନ୍ଧ ଖୁବ୍ ମୋଟା, କ୍ଷୁଧାର୍ତ୍ତି, ମେଣ୍ଢାର ମୁହଁପରି ମୁହଁ ଓ ମଇଳାଲୁଗା ଧାରଣ କରିଥାଏ ।

## ବୃଷର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଦ୍ୱିପସମକାୟଃ ପାଣ୍ଡୁରଦଂଷ୍ଟ୍ରଃ ଶରଭସମାଂଘ୍ରିଃ ପିଙ୍ଗଲମୂର୍ତ୍ତିଃ ।
ଅବିମୃଗଲୋଭବ୍ୟାକୁଲଚିତ୍ତୋ ବୃଷଭବନସ୍ୟ ପ୍ରାନ୍ତଗତୋଽୟମ୍ ।୬।

ବୃଷର ତୃତୀୟ ଦ୍ରେକ୍କାଣ ମକର ରାଶିରେ ହୁଏ । ଅଧିପତି ଶନି, ପୁରୁଷ ହସ୍ତୀପରି ମୋଟା ଶରୀର, ଶୁକ୍ଳଦନ୍ତ, ଶରଭତୁଲ୍ୟ ପାଦ ମୋଟା ଓ ଶକ୍ତ, ପିଙ୍ଗଳ-ବର୍ଣ୍ଣ, ମେଷ ଓ ମୃଗ ନିମନ୍ତେ ଆତୁର ( ଉଭୟ ମାଂସ ପ୍ରତି ଲୋଭ ଯୁକ୍ତ ) ହୁଏ ।

## ମିଥୁନର ପ୍ରଥମ ଦ୍ରେକ୍କାଣ ସ୍ୱରୂପ ବର୍ଣ୍ଣନ

ସୂଚ୍ୟାଶ୍ରୟଂ ସମଭିବାଞ୍ଛତି କର୍ମ ନାରୀ ରୂପାନ୍ୱିତାଭରଣକାର୍ଯ୍ୟକୃତାଦରଶ୍ଚ ।
ହୀନପ୍ରଜୋଚ୍ଛ୍ରିତଭୁଜର୍ତ୍ତୁମତୀ ତ୍ରିଭାଗମାଦ୍ୟଂ ତୃତୀୟଭବନସ୍ୟ ବଦନ୍ତି ତଦ୍‌ଜ୍ଞାଃ ।।

ମିଥୁନର ପ୍ରଥମ ଦ୍ରେକ୍କାଣର ଅଧିପତି ବୁଧ, ଏହି ଦ୍ରେକ୍କାଣ ସ୍ତ୍ରୀ, ସୂଚୀ-କର୍ମ କାରିଣୀ ( ସିଅଁ ସେଇଁ କାର୍ଯ୍ୟ ) ସୁନ୍ଦରୀ, ବେଶ ଭୂଷଣ ପ୍ରତି ବିଶେଷ ଆଦର, ସନ୍ତାନହୀନ, ଦୁଇହାତ ଉପରକୁ ଉଠାଇ ଥାଏ ଓ ରଜସ୍ୱଳା ହୋଇ-ଥାଏ ।

## ମିଥୁନର ଦ୍ୱିତୀୟ ଦ୍ରେକ୍କାଣ ସ୍ୱରୂପ ବର୍ଣ୍ଣନ

ଉଦ୍ୟାନସଂସ୍ଥଃ କବଚୀ ଧନୁଷ୍ମାନ୍‌ଶୂରୋଽସ୍ତ୍ରଧାରୀ ଗରୁଡ଼ାନନଶ୍ଚ ।
କ୍ରୀଡ଼ାତ୍ମଜାଲଂକରଣାର୍ଥଚିନ୍ତାଂ କରୋତି ମଧ୍ୟେ ମିଥୁନସ୍ୟ ରାଶେଃ ।୮।

ମିଥୁନର ଦ୍ୱିତୀୟ ଦ୍ରେକ୍କାଣରେ ଅଧିପତି ଶୁକ୍ର, ଏହା ପୁରୁଷ ଦ୍ରେକ୍କାଣ ଓ ପକ୍ଷୀ ଦ୍ରେକ୍କାଣ ରୂପେ ପରିଚିତ । ଏଥିରେ ପୁରୁଷ ବଗିଚାରେ ବିହାରକାରୀ, କବଚ ଓ ଧନୁ ତଥା ଅସ୍ତ୍ରାଦି ଧାରଣକାରୀ, ରଣପ୍ରିୟ, ଗରୁଡ଼ପକ୍ଷୀପରି ମୁଖ, ଖେଳରେ ଆସକ୍ତ, ସନ୍ତାନ, ଭୂଷଣ ତଥା ଧନ ବିଷୟରେ ସବୁବେଳେ ଚେଷ୍ଟାକରେ ।

## ମିଥୁନର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଭୂଷିତୋ ବରୁଣବଦ୍‌ବହୁରତ୍ନୋ ବଦ୍ଧତୂଣକବଚଃ ସଧନୁଷ୍କଃ ।
ନୃତ୍ୟବାଦିତକଳାସୁ ଚ ବିଦ୍ୱାନ୍‌କାବ୍ୟକୃନ୍ମିଥୁନରାଶ୍ୟବସାନେ ।୯।

ମିଥୁନର ତୃତୀୟ ଦ୍ରେକ୍କାଣ ପୁରୁଷ, ଅଧିପତି ଶନି, ଏହି ପୁରୁଷ ସୁବସ୍ତ୍ର ତଥା ଅଳଙ୍କାର ଯୁକ୍ତ, ରତ୍ନଭୂଷିତ, ତୂଣୀର ତଥା କବଚ ଧାରଣକାରୀ, ଧନୁର୍ଦ୍ଧାରୀ, ନୃତ୍ୟବାଦ୍ୟାଦି କଳାରେ ପଟୁ ଓ କାବ୍ୟକର୍ତ୍ତା ।

## କର୍କଟର ପ୍ରଥମ ଦେ୍କ୍କାଣର ସ୍ୱରୂପ ବର୍ଣ୍ଣନ

ପତ୍ରମୂଳଫଳଭୃଦ୍ଦ୍ୱିପକାୟଃ କାନନେ ମଲୟଗଃ ଶରଭାଙ୍ଘ୍ରିଃ ।
କୋଡ଼ତୁଲ୍ୟବଦନୋ ହୟକଣ୍ଠଃ କର୍କଟେ ପ୍ରଥମରୂପମୁଶନ୍ତି ।୧୦।

କର୍କଟର ପ୍ରଥମଦ୍ରେକ୍କାଣର ଅଧିପତି ଚନ୍ଦ୍ର, ଏହା ପୁରୁଷ, ଚତୁଷ୍ପଦ ଅଟେ । ଏହି ପୁରୁଷ ପତ୍ର, ମୂଳ ଓ ଫଳ ଧାରଣ କରିଥାଏ । ହାତୀପରି ଶରୀର ହୋଇଥାଏ । ବନ ମଧ୍ୟରେ ଚନ୍ଦନ ବୃକ୍ଷଥିବା ସ୍ଥାନରେ ନିବାସ କରେ, ଶରଭତୁଲ୍ୟ ଶକ୍ତ ଓ ବିସ୍ତାରିତ ପାଦ ଥାଏ । ତାହାର ଶୁକର ତୁଲ୍ୟ ମୁଖ ଓ ଘୋଡ଼ାର ଗ୍ରୀବାପରି ଗ୍ରୀବା ହୋଇଥାଏ ।

## କର୍କଟର ଦ୍ୱିତୀୟ ଦେ୍କ୍କାଣର ସ୍ୱରୂପ ବର୍ଣ୍ଣନ

ପଦ୍ମାର୍ଚ୍ଚିତା ମୂର୍ଦ୍ଧନି ଭୋଗିଯୁକ୍ତା ସ୍ତ୍ରୀକର୍କଶାରଣ୍ୟଗତା ବିରୌତି ।
ଶାଖାଂ ପଲାଶସ୍ୟ ସମାଶ୍ରିତା ଚ ମଧ୍ୟେ ସ୍ଥିତା କର୍କଟକସ୍ୟରାଶେଃ ।୧୧।

କର୍କଟର ଦ୍ୱିତୀୟ ଦ୍ରେକ୍କାଣାଧିପ ମଙ୍ଗଳ । ସେ ସ୍ତ୍ରୀ ଦ୍ରେକ୍କାଣ, ତାହାର ମସ୍ତକରେ ପଦ୍ମପୁଷ୍ପ ( ପୂଜାବେଳେ ଦେବତା ଉପରେ ଦେବାପରି ) ସର୍ପଯୁକ୍ତ ଦେହ, ପୂର୍ଣ୍ଣ ଯୌବନା, ଅରଣ୍ୟ ଗତା, କ୍ରନ୍ଦନ ଶୀଳା, ପଳାଶବୃକ୍ଷ ଶାଖା ଅବଲମ୍ବନରେ ନିବାସ କରିଥାଏ ।

## କର୍କଟର ତୃତୀୟ ଦେ୍କ୍କାଣର ସ୍ୱରୂପ ବର୍ଣ୍ଣନ

ଭାର୍ଯ୍ୟାଭରଣାର୍ଥମର୍ଣ୍ଣବଂ ନୌସ୍ଥୋ ଗଚ୍ଛତି ସର୍ପବେଷ୍ଟିତଃ ।
ହୈମୈଶ୍ଚ ଯୁତୋ ବିଭୂଷଣୈଶ୍ଚିପିଟାସ୍ୟୋଽନ୍ତ୍ୟଗତଶ୍ଚ କର୍କଟେ ।୧୨।

କର୍କଟର ତୃତୀୟ ଦ୍ରେକ୍କାଣାଧିପ ଗୁରୁ । ଏହା ପୁରୁଷ ଦ୍ରେକ୍କାଣ ତଥା ସର୍ପଦ୍ରେକ୍କାଣ ଅଟେ । ଏହି ପୁରୁଷ ସର୍ପବେଷ୍ଟିତ ହୋଇ ଭାର୍ଯ୍ୟାର ଅଳଙ୍କାର ଧାରଣ କରି ନୌକାରେ ବସି ସମୁଦ୍ରରେ ପାର ହେଉଥାଏ ସେ ସ୍ୱର୍ଣ୍ଣାଳଙ୍କାର-ଯୁକ୍ତ, ଚେପଟା ମୁଖ ହୁଏ ।

## ସିଂହର ପ୍ରଥମ ଦେ୍କ୍କାଣର ସ୍ୱରୂପ ବର୍ଣ୍ଣନ

ଶାଲ୍ମଲେରୁପରି ଗୃଧ୍ରଜମ୍ବୁକୌ ଶ୍ୱା ନରଶ୍ଚ ମଲିନାମ୍ବରାନ୍ୱିତଃ ।
ରୌତି ମାତୃପିତୃ ବିପ୍ରୟୋଜିତଃ ସିଂହରୂପମିଦମାଦ୍ୟମୁଚ୍ୟତେ ।୧୩।

ସିଂହର ପ୍ରଥମ ଦ୍ରେକ୍କାଣ ମନୁଷ୍ୟ ସଂଜ୍ଞକ, ଚତୁଷ୍ପଦ ସଂଜ୍ଞକ ଓ ପକ୍ଷୀ-ସଂଜ୍ଞକ ଦ୍ରେକ୍କାଣ ଅଟେ । ଏହାର ଅଧିପତି ରବି । ଶିମୂଳୀ ବୃକ୍ଷର ଉପରେ ବସିଥିବା ଗୃଧ୍ର ଓ ଶୃଗାଳ ସହିତ, ମନୁଷ୍ୟ କୁକ୍କୁରସହ ମଳିନ ବେଶ ଧରିଥିବା, ପିତା ଓ ମାତାଙ୍କ ବିଯୋଗରେ ଦୁଃଖିତ ହୋଇ କାନ୍ଦିବା ସ୍ୱରୂପ ଅଟେ ।

## ସିଂହର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ହୟାକୃତିଃ ପାଣ୍ଡୁରମାଲ୍ୟ ଶେଖରୋ ବିଭର୍ତ୍ତି କୃଷ୍ଣାଜିନକମ୍ବଳଂ ନରଃ ।
ଦୁରାସଦଃ ସିଂହଇବାତ୍ତକାର୍ମୁକୋ ନତାଗ୍ରନାସୋ ମୃଗରାଜ ମଧ୍ୟମଃ ।୧୪।

ସିଂହର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଗୁରୁ, ଏହି ଦ୍ରେକ୍କାଣ ପୁରୁଷ ଦ୍ରେକ୍କାଣ ଓ ଚତୁଷ୍ପଦ ସଂଜ୍ଞକ, ଏହି ଦ୍ରେକ୍କାଣ ଘୋଡ଼ାର ସ୍ୱରୂପଯୁକ୍ତ, ମସ୍ତକରେ ମାଳାଯୁକ୍ତ, କୃଷ୍ଣାଜିନ ତଥା କମ୍ବଳରେ ଦେହ ଘୋଡ଼ାଇଥାଏ । ସିଂହଭଳି ଭୀଷଣ, ହାତରେ ଧନୁଥାଏ ଓ ନାସାର ଅଗ୍ରଭାଗ ଲଇଁଲ ଭଳି ଥାଏ ।

## ସିଂହର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଋକ୍ଷାନନୋ ବାନରତୁଲ୍ୟ ଚେଷ୍ଟୋ ବିଭର୍ତ୍ତି ଦଣ୍ଡଂ ଫଳମାମିଷଂଚ ।
କୂର୍ଚ୍ଚୀ ମନୁଷ୍ୟଃ କୁଟିଳୈଶ୍ଚ କେଶୈର୍ମୃଗେଶ୍ୱରସ୍ୟାନ୍ତ୍ୟଗତସ୍ତ୍ରିଭାଗଃ ।୧୫।

ସିଂହର ତୃତୀୟ ଦ୍ରେକ୍କାଣର ଅଧିପତି ମଙ୍ଗଳ । ଏହା ଚତୁଷ୍ପଦ, ପୁରୁଷ ସଂଜ୍ଞକ, ଭଲ୍ଲୁକ ସମାନ ମୁଖ, ବାନର ତୁଲ୍ୟ ଚେଷ୍ଟିତ, ଦଣ୍ଡଧାରଣ-କାରୀ, ଫଳ ଓ ଆମିଷ ଧାରଣକାରୀ, ଦାଢ଼ି ରଖିଥାଏ, କୁଟିଳ କେଶ ଥାଏ ।

## କନ୍ୟାର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ପୁଷ୍ପପ୍ରପୂର୍ଣ୍ଣେନ ଘଟେନ କନ୍ୟା ମଳପ୍ରଦିଗ୍ଧାମ୍ବରସଂବୃତାଙ୍ଗୀ ।
ବସ୍ତ୍ରାର୍ଥସଂଯୋଗମଭୀପ୍ସମାନାଂ ଗୁରୋଃ କୁଲଂ ବାଞ୍ଛନ୍ତି କନ୍ୟକାଦ୍ୟଃ ।୧୬।

କନ୍ୟାର ପ୍ରଥମ ଦ୍ରେକ୍କାଣ ସ୍ତ୍ରୀ ସଂଜ୍ଞକ, ବୁଧ ଏହାର ଅଧିପତି । ଏହି ସ୍ତ୍ରୀ ଫୁଲ ଭରତି ହୋଇଥିବା ଘଟଧାରଣ କରିଥାଏ । ତାହାର କନ୍ୟାରୂପ ତଥା ମଇଳା ଲୁଗା ଘୋଡ଼ାଇ ହୋଇଥାଏ । ବସ୍ତ୍ର ତଥା ଧନକୁ ଆଶା ରଖେ, ଗୁରୁର କୁଳକୁ ଇଚ୍ଛା କରେ ।

## କନ୍ୟାର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ପୁରୁଷଃ ପ୍ରଗୃହୀତଲେଖନିଃ ଶ୍ୟାମୋ ବସ୍ତ୍ରଶିରବ୍ୟୟାୟକୃତ ।
ବିପୁଳଂ ଚ ବିଭର୍ତ୍ତି କାର୍ମୁକଂ ରୋମବ୍ୟାପ୍ତତନୁଶ୍ଚ ମଧ୍ୟମଂ ।୧୭।

କନ୍ୟାର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଶନି, ଏହା ପୁରୁଷ ଦ୍ରେକ୍କାଣ, ହସ୍ତରେ ଲେଖନୀ (କଲମ) ଧାରଣ କରିଥାଏ, ଶ୍ୟାମବର୍ଣ୍ଣ ଶରୀର, ମୁଣ୍ଡକୁ ବସ୍ତ୍ରରେ ଆବୃତ କରିଥାଏ, ଆୟବ୍ୟୟ ଦେଖି ବ୍ୟୟ କରେ, ବିଶାଳ ଧନୁ ଧରିଥାଏ, ଶରୀର ରୋମ ବହୁଳ ହୋଇଥାଏ ।୧୭।

## କନ୍ୟାର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଗୌରୀ ସୁଧୌତାଗ୍ରଦୁକୂଲ ଗୁପ୍ତା ସମୁଚ୍ଛ୍ରିତା କୁମ୍ଭକଟଚ୍ଛୁହସ୍ତା ।
ଦେବାଳୟଂ ସ୍ତ୍ରୀ ପ୍ରସୃତା ପ୍ରବୃତ୍ତା ବଦନ୍ତି କନ୍ୟାଂତ୍ୟଗତସ୍ତ୍ରିଭାଗଃ ।୧୮।

କନ୍ୟାର ତୃତୀୟ ଦ୍ରେକ୍କାଣର ଅଧିପତି ଶୁକ୍ର । ଏହା ସ୍ତ୍ରୀ ସଞ୍ଜ୍ଞକ ଦ୍ରେକ୍କାଣ । ସେ ଗୌରବର୍ଣ୍ଣା, ଉତ୍ତମ ଭାବେ ଅଗ୍ରଭାଗ ଧୂଆଯାଇ ଥିବା ପଟ୍ଟବସ୍ତ୍ର ପିନ୍ଧିଥାଏ କେହିବା ପଟ୍ଟବସ୍ତ୍ର ହାତରେ ଧରିଥାଏ ( ସୁଧୌତାଗ୍ର ଦୁକୂଳ ହସ୍ତା ) ବୋଲି ପାଠାନ୍ତର କହନ୍ତି । ସେ ଅତିଉଚ୍ଚ, ହାତରେ ଲୌହଭାଣ୍ଡ ଓ ଚେଲା ଧରିଥାଏ । ଦେବାଳୟାଭିମୁଖେ ଗମନ କରୁଥାଏ ।

## ତୁଳାର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ବୀଥ୍ୟନ୍ତରାପଣଗତଃ ପୁରୁଷସ୍ତୁଲାବାନୁନ୍ମାନମାନକୁଶଲଃ ପ୍ରତିମାନହସ୍ତଃ ।
ଭାଣ୍ଡଂ ବିଚିନ୍ତୟତି ତସ୍ୟ ଚ ମୂଲ୍ୟମେତଦ୍ରୂପଂ ବଦନ୍ତି ଯବନାଃ
ପ୍ରଥମଂ ତୁଳାୟାଃ ।୧୯।

ତୁଳାର ପ୍ରଥମ ଦ୍ରେକ୍‌କାଣର ଅଧିପତି ଶୁକ୍ର, ଏହା ପୁରୁଷ ଦ୍ରେକ୍‌କାଣ । ସେ ରାସ୍ତା ମଧ୍ୟରେ ଦୋକାନରେ ବସିଥାଏ । ହାତରେ ନିକିତି (ତୁଳାଯନ୍ତ୍ର) ଧରିଥାଏ । ସେ ତଉଲିବାରେ ଓ ମାପିବାରେ ପାରଙ୍ଗମ । ରତ୍ନାଦି ଚିହ୍ନିବାରେ କୁଶଳ, ସେ ନିଜର ଦ୍ରବ୍ୟାଦିର ମୂଲ୍ୟ ସମ୍ବନ୍ଧେ ବିଶେଷ ଜ୍ଞାନ ଲାଭ କରିଥାଏ ॥

## ତୁଳାର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ଜ୍ଞାନ

କଲଶଂ ପରିଗୃହ୍ୟ ବିନିଷ୍ପତିତୁଂ ସମଭୀପ୍ସତି ଗୃଧ୍ରମୁଖଃ ପୁରୁଷଃ ।
କ୍ଷୁଧିତସ୍ତୃଷିତଶ୍ଚ କଳତ୍ର ସୁତାନ୍ମନସୈତି ତୁଳାଧରମଧ୍ୟଗତଃ ।୨୦।

ତୁଳାର ଦ୍ୱିତୀୟ ଦ୍ରେକ୍କାଣ ପୁରୁଷ ଓ ପକ୍ଷୀ ସଞ୍ଜ୍ଞକ, ଏହାର ଅଧିପତି ଶନି । ସେ କଲଶକୁ ହାତରେ ଧରି ପଡିଯିବା ଭଳି ଅବସ୍ଥାରେ ଥାଏ (ଦୁର୍ବଳ ହେତୁ) ତାହାର ମୁଖ ଗୃଧ୍ର ତୁଲ୍ୟ ସେ କ୍ଷୁଧା ତଥା ତୃଷାରେ ପୀଡ଼ିତ, ସ୍ତ୍ରୀ ଓ ପୁତ୍ର ବିଷୟରେ ଚିନ୍ତିତ ହୁଏ ।

## ତୁଳାର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ବଣ୍ଡଷସ୍ତଂପ୍ରିଷ୍ଟତ ଜନୃଚସ୍ତିତୋ ବନେଽନ୍ମୃଗାନ୍‌କାଞ୍ଚନ ତୂଣବର୍ମଭୃତ୍ ।
ଫଲାମିଷଂ ବାନରରୂପଭୃନ୍ନରସ୍ତୁଳାବସାନେ ଯବନୈରୁଦାହୃତଃ ।୨୧।

ତୁଳାର ତୃତୀୟଦ୍ରେକ୍କାଣର ଅଧିପତି ବୁଧ, ଏହା ଚତୁଷ୍ପଦ ଦ୍ରେକ୍କାଣ, ନୃରୂପଫଳକ ଅଟେ, ଏବନରେ ହରଣକୁ ଭୟ ଦେଉଥିବା, ତୂଣୀର ଏବ କବଚ ଧାରଣ କରିଥିବା ଏବଂ ଫଳ ଓ ମାଂସ ହାତରେ ଧରିଥିବା ତଥା ମର୍କଟର ସାଦୃଶ୍ୟ ଥିବା ରୂପଧାରଣକାରୀ ଅଟେ । ଯବନେଶ୍ୱର ଏହିଭଳି କହନ୍ତି ।

ଦ୍ରଃ ଦ୍ରେକ୍କାଣାଧ୍ୟାୟର ବିଷୟ ଗ୍ରନ୍ଥକର୍ତ୍ତା ଯବନେଶ୍ୱରଙ୍କ ଠାରୁ ଗ୍ରହଣ କରିଥିବା ଜଣାଯାଏ । କାରଣ ସେ ଏ ଅଧ୍ୟାୟରେ ବହୁଶଃ ଯବନେଶ୍ୱରଙ୍କ ମତବୋଲି ଉଲ୍ଲେଖ କରନ୍ତି ।

## ବୃଶ୍ଚିକର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ବସ୍ତ୍ରୈର୍ବିହୀନାଭରଣୈଶ୍ଚ ନାରୀ ମହାସମୁଦ୍ରାତ୍ସମୁପୈତି କୂଳମ୍
ସ୍ଥାନଚ୍ୟୁତା ସର୍ପନିବଦ୍ଧପାଦା ମନୋରମା ବୃଶ୍ଚିକରାଶିପୂର୍ବଃ ।୨୨।

ବିଛାର ପ୍ରଥମ ଦ୍ରେକ୍କାଣର ଅଧିପତି ମଙ୍ଗଳ, ଏ ସ୍ତ୍ରୀ ଦ୍ରେକ୍କାଣ, ସେ ସ୍ତ୍ରୀ ବସନ ଓ ଭୂଷଣବିହୀନା, ସମୁଦ୍ର ମଧ୍ୟରୁ ତଟଦେଶକୁ ଆସି ରହିଥିବା, ନିଜ ସ୍ଥାନରୁ ଭ୍ରଷ୍ଟ ହୋଇଥିବା, ପାଦ ସର୍ପଦ୍ୱାରା ବାନ୍ଧ ହୋଇଥିବା ଓ ମନୋରମା ହୁଏ । ଏହାକୁ ସର୍ପଦ୍ରେକ୍କାଣମଧ୍ୟ କହନ୍ତି ।

## ବୃଶ୍ଚିକର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ସ୍ଥାନସୁଖାନ୍ୟଭିବାଞ୍ଛନ୍ତି ନାରୀ ଭର୍ତ୍ତୁଃକୃତେ ଭୁଜଗାବୃତଦେହା
କଚ୍ଛପକୁମ୍ଭସମାନଶରୀରା ବୃଶ୍ଚିକମଧ୍ୟମରୂପମୁଶନ୍ତି ।୨୩।

ବିଛାର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଗୁରୁ । ଏହା ସ୍ତ୍ରୀ ଫଳକ ଦ୍ରେକ୍କାଣ, ଏହି ସ୍ତ୍ରୀ ନିଜର ପତି ନିମନ୍ତେ ସ୍ଥାନ ତଥା ସୁଖ ଇଚ୍ଛା କରୁଥାଏ, ଦେହରେ ସର୍ପଗୁଡ଼ାଇ ହୋଇଥାଏ । କଚ୍ଛପ ବା କୁମ୍ଭତୁଲ୍ୟ ଶରୀର ହୁଏ ।

## ବୃଶ୍ଚିକର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ପୃଥୁଳଚିପିଟକୂର୍ମତୁଲ୍ୟବକ୍ତ୍ରଃ ଶ୍ୱମୃଗବରାହଶୃଗାଲଭୀଷଣକାରୀ
ଅବତି ଚ ମଲୟାକରପ୍ରଦେଶଂ ମୃଗପତିଂରନ୍ତ୍ୟଗତସ୍ୟ ବୃଶ୍ଚିକସ୍ୟ ।୨୪।

ବିଛାର ତୃତୀୟ ଦ୍ରେକ୍କାଣର ଅଧିପତି ଚନ୍ଦ୍ର । ଏହା ପୁରୁଷ ଓ ଚତୁଷ୍ପଦ ଦ୍ରେକ୍କାଣ ଅଟେ । ଏହାର ମୁଖ ଚୁଁଅୁଲ, ଚେପଟା, କୂର୍ମତୁଲ୍ୟ । ଏ କୁକୁର, ହରିଣ, ବରାହ, ଶୃଗାଳଙ୍କୁ ଭୟଦେଇ ଥାଏ । ଚନ୍ଦନ ବୃକ୍ଷଉତ୍ପନ୍ନ ପ୍ରଦେଶକୁ ରକ୍ଷାକରେ ଓ ସିଂହତୁଲ୍ୟ ହୁଏ ।

## ଧନୁର ପ୍ରଥମଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ମନୁଷ୍ୟବକ୍ତ୍ରୋଽଶ୍ୱସମାନକାୟୋ ଧନୁର୍ବିଗୃହ୍ୟାୟତପାର୍ଶ୍ୱସଂସ୍ଥଃ
କ୍ରତୁପଯୋଗ୍ୟାନି ତପସ୍ୱିନଶ୍ଚ ରରକ୍ଷ ଅାଦ୍ୟୋ ଧନୁଷସ୍ତ୍ରିଭାଗଃ ।୨୫।

ଧନୁର ପ୍ରଥମ ଦ୍ରେକ୍କାଣର ଅଧିପତି ଗୁରୁ, ପୁରୁଷ ସଞ୍ଜ୍ଞକ, ଏହାର ମନୁଷ୍ୟ ମୁଖ, ଘୋଡ଼ାପରି ଦେହ, ବୃହତ୍ ଧନୁଧାରଣ କରିଥାଏ । ସେ ଅଶ୍ରମରେ ରହି ଯଜ୍ଞଦ୍ରବ୍ୟ ଓ ତପସ୍ୱୀ ମାନଙ୍କୁ ରକ୍ଷାକରେ । ଏହା ଚତୁଷ୍ପଦ ଦ୍ରେକ୍କାଣ ।୨୫।

## ଧନୁର ଦ୍ୱିତୀୟଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ମନୋରମା ଚମ୍ପକ ହେମବର୍ଣ୍ଣା ଭଦ୍ରାସନେ ତିଷ୍ଠତି ମଧ୍ୟରୂପା
ସମୁଦ୍ରରତ୍ନାନି ବିଘଟ୍ଟୟନ୍ତୀ ମଧ୍ୟତ୍ରିଭାଗୋ ଧନୁଷଃ ପ୍ରଦିଷ୍ଟଃ ।୨୬।

ଧନୁର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ମଙ୍ଗଳ, ଏହା ସ୍ତ୍ରୀ ଦ୍ରେକ୍କାଣ ସେ ସୁନ୍ଦରୀ, ଚମ୍ପକ ବା ସୁବର୍ଣ୍ଣ ପରି ତାର ଦେହକାନ୍ତି ହୋଇଥାଏ, ସେ ଭଦ୍ରାନସରେ ବସିଥାଏ, ମଧ୍ୟମ ଶରୀର, ସମୁଦ୍ରରୁ ରତ୍ନନେଇ ଗୁନ୍ଥୁଥାଏ ।

## ଧନୁର ତୃତୀୟଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

କୂର୍ଚୀ ନରେ ହାଟକଚମ୍ପକାଭୋ ବରାସନେ ଦଣ୍ଡଧରୋ ନିଷଣ୍ଣଃ
କୌଶେୟକାନ୍ୟୁଦ୍ୱହତେଽଜିନଂ ଚ ତୃତୀୟରୂପଂ ନବମସ୍ୟ ରାଶେଃ ।୨୭।

ଧନୁର ତୃତୀୟ ଦ୍ରେକ୍କାଣର ଅଧିପତି ରବି, ଏହା ପୁରୁଷ ଦ୍ରେକ୍କାଣ, ଏପୁରୁଷ ଲମ୍ବାଦାଢ଼ୀ, ଚମ୍ପକ ବା ସୁବର୍ଣ୍ଣର ପରି ଶରୀରକାନ୍ତି, ଦଣ୍ଡଧାରଣ କରି ଉତ୍ତମ ଆସନରେ ବସିଥାଏ । ପଟ୍ଟବସ୍ତ୍ର ତଥା ମୃଗଚର୍ମରେ ଶରୀର ଆବୃତ କରିଥାଏ ଓ ଅଯୁଧଯୁକ୍ତ ହୁଏ ।୨୭।

## ମକରର ପ୍ରଥମଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ରୋମଚିତୋ ମକରୋପମଦଂଷ୍ଟ୍ରଃ ଶୂକରକାୟସମାନଶରୀରଃ
ଯୋକ୍ତ୍ରକଜାଲକବନ୍ଧନଧାରୀ ରୌଦ୍ରମୁଖୋ ମକରପ୍ରଥମସ୍ତୁ ।୨୮।

ମକରର ପ୍ରଥମ ଦ୍ରେକ୍କାଣର ଅଧିପତି ଶନି, ଏହା ପୁରୁଷ ତଥା ନିଗଡ଼ (ପାଶ) ଦ୍ରେକ୍କାଣ ଅଟେ । ଏହାର ଶରୀର ବହୁରୋମଯୁକ୍ତ, ଦନ୍ତ ଗୁଡ଼ିକ ମକର (କୁମ୍ଭୀର ଜାତୀୟ) ପରି ବଡ଼, ଶୂକର ପରି ଶରୀର, ଯୋତା (ବଳଦ ଯୋଚିବା ଦଉଡ଼ି) ଜାଲ ବା କଡ଼ା (ହାତକଡ଼ି) ଧାରଣ କରିଥାଏ, ଓ ତାହାର ମୁଖ ଭୟଙ୍କର ହୁଏ ।୨୮।

## ମକରର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

କଳାସ୍ୱଭିଜ୍ଞାବ୍ଜଦଳାୟତାକ୍ଷୀ ଶ୍ୟାମା ବିଚିତ୍ରାଣି ଚ ମାର୍ଗମାଣା
ବିଭୂଷଣାଲଂକୃତଲୋହକର୍ଣ୍ଣୀ ଯୋଷା ପ୍ରଦିଷ୍ଟା ମକରସ୍ୟ ମଧ୍ୟେ ।୨୯।

ମକରର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଶୁକ୍ର, ଏହା ସ୍ତ୍ରୀ ଦ୍ରେକ୍କାଣ, ସେ କଳାରେ ପଣ୍ଡିତା, ପଦ୍ମ ପାଖୁଡ଼ା ପ୍ରାୟ ଦୀର୍ଘନେତ୍ରା, ଶ୍ୟାମବର୍ଣ୍ଣ ଶରୀର ଧାରିଣୀ, ବିଭିନ୍ନ ଦ୍ରବ୍ୟର ନିମନ୍ତେ ଭ୍ରମଣକାରିଣୀ ଓ କର୍ଣ୍ଣରେ ଲୌହାଳଙ୍କାର ଧାରଣ କରିଥାଏ ।୨୯।

## ମକରର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

କିନ୍ନରୋପମତନୁଃ ସକମ୍ବଳସ୍ତୂଣଚାପକବଚୈଃ ସମନ୍ୱିତଃ
କୁମ୍ଭମୁଦ୍ୱହତି ରତ୍ନଚିତ୍ରିତଂ ସ୍କନ୍ଧଗଂ ମକରରାଶିପଶ୍ଚିମଃ ।୩୦।

ମକରର ତୃତୀୟ ଦ୍ରେକ୍କାଣର ଅଧିପତି ବୁଧ, ଏହା ଆୟୁଧଧାରୀ ପୁରୁଷ ଦ୍ରେକ୍କାଣ, ତାହାର ଶରୀର କିନ୍ନରତୁଲ୍ୟ, ସେ କମ୍ବଳ, ତୂଣୀର, ଧନୁ, ତଥା କବଚ ଧାରଣ କରିଥାଏ । କାନ୍ଧରେ ରତ୍ନଖଚିତ କୁମ୍ଭ ବହିଥାଏ ।୩୦।

## କୁମ୍ଭର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ସ୍ନେହମଦ୍ୟଜଲଭୋଜନାଗମବ୍ୟାକୁଲୀକୃତମନାଃ ସକମ୍ବଳଃ
କୋଶକାରବସନୋଜିନାନ୍ୱିତୋ ଗୃଧ୍ରତୁଲ୍ୟବଦନୋ ଘଟାଦିଗଃ ।୩୧।

କୁମ୍ଭର ପ୍ରଥମ ଦ୍ରେକ୍କାଣର ଅଧିପତି ଶନି ଏହା ପୁରୁଷ ସଙ୍କକ, ସେ ତୈଳ, ମଦ୍ୟ, ଜଳ, ଖାଦ୍ୟପଦାର୍ଥ ପ୍ରାପ୍ତି ଚିନ୍ତାରେ ଆକୁଳ ହୁଏ, କମ୍ବଳ, ପଟବସ୍ତ୍ର ତଥା ମୃଗଚର୍ମ (କୃଷ୍ଣାଜିନ) ଧାରଣକରିଥାଏ, ମୁଖ ଗୃଧ୍ରତୁଲ୍ୟ ଦେଖାଯାଏ ।

## କୁମ୍ଭର ଦ୍ୱିତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଦହ୍ୟତେଶକଟେ ସଶାଲ୍ମଲେ ଲୋହାନ୍ୟାହରତେଙ୍ଗନାବନେ
ମଳିନେନ ପଟେନ ସଂବୃତା ଭାଣ୍ଡୈର୍ମୂର୍ଦ୍ଧ୍ନି ଗତୈଶ୍ଚ ମଧ୍ୟମଃ ।୩୨।

କୁମ୍ଭର ଦ୍ୱିତୀୟ ଦ୍ରେକ୍କାଣରେ ଅଧିପତି ବୁଧ । ଏହା ସ୍ତ୍ରୀ ଦ୍ରେକ୍କାଣ, ବନ ମଧ୍ୟରେ ଶାଳ୍ମଳିବୃକ୍ଷ ସହିତ ଜଳୁଥିବା ଶଗଡ଼ ଉପରେ ସେ ବସିଥାଏ, ସେଥିରୁ ଲୌହାଂଖଣ୍ଡମାନ ସଂଗ୍ରହ କରୁଥାଏ, ସେ ମଳିନ ବସ୍ତ୍ରଧାରିଣୀ ଓ ମସ୍ତକରେ ଘଟ ଧାରଣ କରିଥାଏ ।୩୨।

## କୁମ୍ଭର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଶ୍ୟାମଃ ସରୋମଶ୍ରବଣଃ କିରୀଟୀ ତ୍ୱକ୍‌ପତ୍ରନିର୍ଯାସଫଲୈର୍ବିଭର୍ତ୍ତି,
ଭାଣ୍ଡାନି ଲୌହବ୍ୟତିମିଶ୍ରିତାନି ସଞ୍ଚାରୟନ୍ତ୍ୟନ୍ତଗତୋ ଘଟସ୍ୟ ।୩୩।

କୁମ୍ଭର ତୃତୀୟ ଦ୍ରେକ୍କାଣର ଅଧିପତି ଶୁକ୍ର, ଏହା ପୁରୁଷ ଦ୍ରେକ୍କାଣ, ତାର ବର୍ଣ୍ଣ ଶ୍ୟାମ, କର୍ଣ୍ଣଲୋମଯୁକ୍ତ, ସେ କିରୀଟୀ ଧାରଣ କରିଥାଏ, କୁମ୍ଭମାନଙ୍କରେ ଚର୍ମ୍ମ, ପତ୍ର, ବୃକ୍ଷର ରସ (ଗୁଗୁଳୁ ଇତ୍ୟାଦି ବା ତେଲ) ଫଳ, ଲୌହ ଇତ୍ୟାଦି ରଖି ସେ ଗୁଡ଼ିକ ଧରି ଭ୍ରମଣ କରୁଥାଏ ।୩୩।

## ମୀନର ପ୍ରଥମ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ସ୍ରୁଗ୍‌ଭାଣ୍ଡମୁକ୍ତାମଣିଶଙ୍ଖମିଶ୍ରୈର୍ବ୍ୟାକ୍ଷିପ୍ତହସ୍ତଃ ସବିଭୂଷଣଶ୍ଚ
ଭାର୍ଯ୍ୟାବିଭୂଷାର୍ଥମପାଂନିଧାନଂ ନାବାପ୍ଲବତ୍ୟାଦିଗତୋ ଝଷସ୍ୟ ।୩୪।

ମୀନର ପ୍ରଥମ ଦ୍ରେକ୍କାଣର ଅଧିପତି ଗୁରୁ, ଏହା ପୁରୁଷ ଦ୍ରେକ୍କାଣ, ସେ ଯଜ୍ଞ କାର୍ଯ୍ୟର ଆବଶ୍ୟକ ପାତ୍ର ଧରିଥାଏ । ସେ ମୁକ୍ତା, ମଣି, ଶଙ୍ଖାଦି ମିଶାଇ ଧାରଣ କରିଥାଏ ଓ ଅଳଙ୍କାର ମଧ୍ୟ ଲଗାଇ ଥାଏ । ସ୍ତ୍ରୀ ପାଇଁ ଅଳଙ୍କାର ଆଣିବା ନିମନ୍ତେ ନୌକାରେ ବସି ସମୁଦ୍ରଯାତ୍ରା କରୁଥାଏ, ହାତକୁ ଏଣେତେଣେ ବିକ୍ଷେପ କରେ ।

## ମୀନର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଅତ୍ୟୁଚ୍ଛ୍ରିତଧ୍ୱଜପତାକମୁପୈତି ପୋତଂ
କୂଳଂ ପ୍ରୟାତି ଜଳଧେଃ ପରିବାରଯୁକ୍ତା ।
ବର୍ଣ୍ଣେନ ଚମ୍ପକମୁଖୀ ପ୍ରମଦା ଦ୍ୱିତୀୟୋ
ମୀନସ୍ୟ ଚୈଷ କଥିତୋ ମୁନିଭିର୍ଦ୍ୱିତୀୟଃ ।୩୫।

ମୀନର ଦ୍ୱିତୀୟ ଦ୍ରେକ୍କାଣର ଅଧିପତି ଚନ୍ଦ୍ର । ଏ ସ୍ତ୍ରୀ ଦ୍ରେକାଣ, ସେ ଅତ୍ୟୁଚ୍ଚରେ ଉଡୁଥିବା ପତାକା ବନ୍ଧା ହୋଇଥିବା ଜାହାଜରେ ନିଜର ସଖୀମାନଙ୍କ ସହିତ ବସି ସମୁଦ୍ର ମଧ୍ୟରୁ କୂଳଆଡ଼େ ଆସୁଥାଏ । ମୁଖର କାନ୍ତି ଚମ୍ପାଫୁଲ ପରି ହୋଇଥାଏ ।୩୫।

## ମୀନର ତୃତୀୟ ଦ୍ରେକ୍କାଣର ସ୍ୱରୂପ ବର୍ଣ୍ଣନ

ଶ୍ୱଭ୍ରାନ୍ତିକେ ସର୍ପନିବେଷ୍ଟିତାଙ୍ଗୋ ବସ୍ତ୍ରୈର୍ବିହୀନଃ ପୁରୁଷସ୍ତ୍ୱଟବ୍ୟାମ୍
ଚୌରାନଳବ୍ୟାକୁଳିତାନ୍ତରାତ୍ମା ବିଚେଷ୍ଟତେଽନ୍ତ୍ୟାପଗତୋଽଙ୍ଘସ୍ୟ ।୩୬।

ଇତି ଶ୍ରୀବରାହମିହିର କୃତେ ବୃହଜ୍ଜାତକେ ଦ୍ରେକ୍କାଣାଧ୍ୟାୟଃ ସପ୍ତବିଂଶଃ

ମୀନର ତୃତୀୟ ଦ୍ରେକ୍କାଣର ଅଧିପତି ମଙ୍ଗଳ, ଏହାପୁରୁଷ ଓ ସର୍ପ ଦ୍ରେକ୍କାଣ । ଏପୁରୁଷ ବନରେ ଗର୍ତ୍ତନିକଟରେ, ସର୍ପଦ୍ୱାରା ଅବୃତ ଓ ଲଙ୍ଗଳା ହୋଇ ପଡ଼ିଥାଏ, ଚୌର, ଓ ଅଗ୍ନି ଦ୍ୱାରା ବ୍ୟାକୁଳିତଚିତ୍ତ ହୋଇ କନ୍ଦନ କରୁଥାଏ ।୩୬।

ଦ୍ର:—ଯାବାଦରେ ତଥା ହୃତ ଓ ନଷ୍ଟ ଦ୍ରବ୍ୟାଦିର ପ୍ରଶ୍ନରେ ଦ୍ରେକ୍କାଣାନୁରୂପ ଫଳ ତଥା ଚୌରର ଆକୃତି ଇତ୍ୟାଦି କହିବା କଥା ଆଗରୁ ଲେଖା ଯାଇଅଛି । ଗ୍ରନ୍ଥକର୍ତ୍ତା ଏହି ଦ୍ରେକ୍କାଣ ସମ୍ବନ୍ଧେ ଆଉ ଅଧିକ ଫଳ ଦେଇନାହାନ୍ତି ଜାତକ ପାରିଜାତକ ଗ୍ରନ୍ଥରେ ଏସମ୍ବନ୍ଧେ ଯେ ପ୍ରମାଣ ଅଛି ତାହା ନିମ୍ନରେ ଦିଆଗଲା, ଏଗ୍ରନ୍ଥିକ ଗ୍ରନ୍ଥର ନବମ ଅଧ୍ୟାୟରେ ଅଛି ।

କଣ୍ଠୀରବାଜଘଟକୀଟମୃଗାନନାଦ୍ୟା
ମୀନାଳିସିଂହବଣିଗନ୍ତ୍ୟଗତା ଦୃକାଣାଃ
କ୍ରୂରା ଭବନ୍ତି କର୍କଟସ୍ୟ ସରୀସୃପସ୍ୟ
ମଧ୍ୟସ୍ଥିତଶ୍ଚ ବହୁଶଃ ପ୍ରବଦନ୍ତି ସନ୍ତଃ ॥

କୁଳୀରମୀନାଦିଗତୌ ଦୃକାଣୌ ମୀନାଙ୍ଗନାମନ୍ଦିରମଧ୍ୟଗୌ ଚ
ଗୋଯୁଗ୍ମୟୋରନ୍ୟଗତନ୍ତିଭାଗୌ ଭବନ୍ତିଷଟ୍ ତୋୟଚରା ଦୃକାଣାଃ ॥
ମେଷାଶ୍ୱିଗୋକୁମ୍ଭମୃଗଦ୍ୱିତୀୟସ୍ତୁଲାଧରସ୍ତ୍ରୀଯୁଗପୂର୍ବଭାଗଃ
ଗୃପାଙ୍ଗନାତୋୟଧରାନ୍ତ୍ୟଯାତା ଦୃକାଣସଂଜ୍ଞାଃ ପ୍ରବଦନ୍ତି ସୌମ୍ୟାଃ ।
ମୃଗାଜକର୍କ୍ୟନ୍ତ୍ୟଗତା ଦୃକାଣା ବୃଷସ୍ୟଗୃପସ୍ୟ ଚ ପୂର୍ବଯାତୌ
ନୃଯୁଗ୍ମତୌଳିହରିମଧ୍ୟଗାସ୍ତେ ବିମିଶ୍ରସଂଜ୍ଞା ଇତି ସମ୍ପଦନ୍ତି ॥

ସିଂହ, ମେଷ, କୁମ୍ଭ, ବୃଶ୍ଚିକ, ମକର ଏହି ରାଶିମାନଙ୍କର ପ୍ରଥମ ଦ୍ରେକ୍କାଣ, ମୀନ, ବୃଶ୍ଚିକ, ସିଂହ, ତୁଳା ଏମାନଙ୍କର ତୃତୀୟ ଦ୍ରେକ୍କାଣ, କର୍କଟ, ବୃଶ୍ଚିକର ମଧ୍ୟମ ଦ୍ରେକ୍କାଣ କ୍ରୂରସଂଜ୍ଞକ, କର୍କଟ ଓ ମୀନର ପ୍ରଥମ ଦ୍ରେକ୍କାଣ, ମୀନ ଓ କନ୍ୟାର ଦ୍ୱିତୀୟ ଦ୍ରେକ୍କାଣ, ବୃଷ ଓ ମିଥୁନର ତୃତୀୟ ଦ୍ରେକ୍କାଣକୁ ଜଳଚର ଦ୍ରେକାଣ କହନ୍ତି ।

ମେଷ, ଧନୁ, ବୃଷ, କୁମ୍ଭ ଓ ମକର ରାଶିର ଦ୍ୱିତୀୟ ଦ୍ରେକ୍କାଣ, ତୁଳା, କନ୍ୟା, ମିଥୁନର ପ୍ରଥମ ଦ୍ରେକ୍କାଣ, ଧନୁ କନ୍ୟା କୁମ୍ଭର ତୃତୀୟ ଦ୍ରେକ୍କାଣ ସୌମ୍ୟ ସଂଜ୍ଞକ ।

ମକର, ମେଷ, କର୍କଟର ତୃତୀୟ ଦ୍ରେକ୍କାଣ, ବୃଷ ଓ ଧନୁର ପ୍ରଥମ ଦ୍ରେକ୍କାଣ, ମିଥୁନ, ତୁଳା ଓ ସିଂହର ଦ୍ୱିତୀୟ ଦ୍ରେକ୍କାଣକୁ ମିଶ୍ର ଦ୍ରେକ୍କାଣ କହନ୍ତି ।

କ୍ରୂରଦ୍ରେକ୍କାଣଜାତଃ ଖଳମତିରଟନଃ ପାପକର୍ମାପବାଦୀ
ଦାତାଭୋଗୀ ଦୟାଳୁଃ କୃଷିସଲିଲଧନସ୍ତୋୟଭୂଭାଗେ ବଶୀଲଃ
ସୌମ୍ୟ ଦ୍ରେକ୍କାଣକୋଯଃ ସୁଖଧନତନୟୈଃ ଶ୍ଲାଘ୍ୟରୂପୋ ଦୟାଳୁ
ର୍ଜାତୋ ମିଶ୍ରେ କୁଶୀଲଃ ପରଯୁବତୀରତଃ କ୍ରୂରଦୃଷ୍ଟିଶ୍ଚଲାତ୍ମା ॥

ଯାହାର କ୍ରୂର ଦ୍ରେକ୍କାଣରେ ଜନ୍ମହୁଏ ସେ ଖଳ ବୁଦ୍ଧିଯୁକ୍ତ, ଭ୍ରମଣଶୀଳ, ପାପକର୍ମା ଓ ଅପବାଦ ଯୁକ୍ତ ହୁଏ ।

ଯେ ଜଳଚର ଦ୍ରେକ୍କାଣରେ ଜନ୍ମହୁଏ ସେ ଦାତା, ଭୋଗୀ, ଦୟାଳୁ, କୃଷିତଥା ଜଳ ଜାତ ଦ୍ରବ୍ୟାଦି ହେତୁ ଧନୀ ଓ ଚରିତ୍ର ହୀନ ହୁଏ ।

ଯେ ବ୍ୟକ୍ତି ସୌମ୍ୟ ଦ୍ରେକ୍କାଣରେ ଜନ୍ମହୁଏ ସେ ବ୍ୟକ୍ତି ସୁଖ, ଧନ, ପୁତ୍ରାଦିରେ ଯୁକ୍ତହୁଏ, ତାହାର ଶରୀର ରମଣୀୟ ଓ ସେ ଦୟାଳୁ ହୋଇଥାଏ ।

ଯେଉଁ ବ୍ୟକ୍ତି ମିଶ୍ରଦ୍ରେକ୍କାଣରେ ଜନ୍ମଲାଭ କରେ ସେ ଚରିତ୍ରହୀନ, ପରସ୍ତ୍ରୀରତ, କ୍ରୂରଦୃଷ୍ଟି ଓ ଚଞ୍ଚଳମତି ହୁଏ ।

ଦ୍ରେକ୍କାଣ ଶୁଭଦୃଷ୍ଟ ହେଲେ, ସୌମ୍ୟ ଦ୍ରେକ୍କାଣରେ ଶୁଭଗ୍ରହ ଥିଲେ ତାହା ଶୁଭପ୍ରଦ ହୁଏ । ଦ୍ରେକ୍କାଣ ପାପଦୃଷ୍ଟ ହେଲେ, ପାପଗ୍ରହ ସେଥିରେ ଥିଲେ ଫଳ ଅଶୁଭ ହୁଏ । ପାପଦ୍ରେକ୍କାଣରେ ଶୁଭଗ୍ରହ ବା ଶୁଭ ଦ୍ରେକ୍କାଣରେ ପାପଗ୍ରହ ରହିଲେ ଫଳ ମିଶ୍ରିତ ହୁଏ ।

ଶ୍ରୀବରାହମିହିରକୃତ ବୃହଜ୍ଜାତକ ଗ୍ରନ୍ଥର ଦ୍ରେକ୍କାଣାଧ୍ୟାୟ ନାମକ
ସପ୍ତବିଂଶତି ଅଧ୍ୟାୟର ସୁବୋଧିନୀ ଭାଷାଟୀକା ସମାପ୍ତ ହେଲା ।



# ଉପସଂହାରାଧ୍ୟାୟୋଽଷ୍ଟାବିଂଶଃ

## ଗ୍ରନ୍ଥର ପ୍ରତ୍ୟେକ ଅଧ୍ୟାୟରେଥିବା ବିଷୟ

ରାଶିପ୍ରଭେଦୋ ଗ୍ରହଯୋନିଭେଦୋ ବିୟୋନିଜନ୍ମାଥ ନିଷେକକାଳଃ ।
ଜନ୍ମାଥ ସଦ୍ୟୋ ମରଣଂ ତଥାୟୁର୍ଦ୍ଦଶାବିପାକୋଷ୍ଟକବର୍ଗଫଳଞ୍ଚ ।୧।

ଏ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ରାଶିପ୍ରଭେଦ; ଦ୍ୱିତୀୟ ଅଧ୍ୟାୟରେ ଗ୍ରହଯୋନି ଭେଦ, ତୃତୀୟ ଅଧ୍ୟାୟରେ ବିୟୋନିଜନ୍ମ; ଚତୁର୍ଥ ଅଧ୍ୟାୟରେ ନିଷେକକାଳ; ପଞ୍ଚମ ଅଧ୍ୟାୟରେ ଜନ୍ମବିଧି; ଷଷ୍ଠ ଅଧ୍ୟାୟରେ ସଦ୍ୟୋମରଣ ଅରିଷ୍ଟ ନିର୍ଣ୍ଣୟ; ସପ୍ତମ ଅଧ୍ୟାୟରେ ଆୟୁର୍ବିଭାଗ; ଅଷ୍ଟମ ଅଧ୍ୟାୟରେ ଦଶାବିଭାଗ; ନବମ ଅଧ୍ୟାୟରେ ଅଷ୍ଟକବର୍ଗ ବିଷୟ ଲେଖା ଯାଇଅଛି ।

କର୍ମାଜୀବୋ ରାଜଯୋଗାଃ ସ୍ୱନଭୋଯୋଗାଶ୍ଚନ୍ଦ୍ରଯୋଗା ଦ୍ୱିଗ୍ରହାଦ୍ୟାସ୍ତୁ ଯୋଗାଃ ।
ପ୍ରବ୍ରଜ୍ୟାଥୋ ରାଶିଶୀଲାନି ଦୃଷ୍ଟିର୍ଭାବସ୍ତସ୍ମାଦାଶ୍ରୟୋଽଥ ପ୍ରକୀର୍ଣ୍ଣଃ ।୨।

ଦଶମ ଅଧ୍ୟାୟରେ କର୍ମାଜୀବ; ଏକାଦଶରେ ରାଜଯୋଗ, ଦ୍ୱାଦଶ ଅଧ୍ୟାୟରେ ନାଭସଯୋଗ; ତ୍ରୟୋଦଶ ଅଧ୍ୟାୟରେ ଚନ୍ଦ୍ରଯୋଗ (ସୁନଫାଂ ତଥା ଅନଫାଂ); ଚତୁର୍ଦ୍ଦଶ ଅଧ୍ୟାୟରେ ଦ୍ୱିଗ୍ରହାଦି ଯୋଗ; ପଞ୍ଚଦଶ ଅଧ୍ୟାୟରେ ପ୍ରବ୍ରଜ୍ୟା ଯୋଗ; ଷୋଡ଼ଶ ଅଧ୍ୟାୟରେ ରାଶିଶୀଳ; ସପ୍ତଦଶ ଅଧ୍ୟାୟରେ ଦୃଷ୍ଟିଫଳ; ଅଷ୍ଟାଦଶ ଅଧ୍ୟାୟରେ ଭାବଫଳ, ଊନବିଂଶ ଅଧ୍ୟାୟରେ ଆଶ୍ରୟ ଯୋଗ ଓ ବିଂଶ ଅଧ୍ୟାୟରେ ପ୍ରକୀର୍ଣ୍ଣ ବିଷୟ ବର୍ଣ୍ଣନ କରାଯାଇ ଅଛି ।

ନେଷ୍ଟା ଯୋଗା ଜାତକଂ କାମିନୀନାଂ ନିର୍ଯାଣଂ ସ୍ୟାନଷ୍ଟଜନ୍ମଦ୍ରେକାଣଃ
ଅଧ୍ୟାୟାନାଂ ବିଂଶତିଃ ପଞ୍ଚଯୁକ୍ତା ଜନ୍ମନ୍ୟେତଦ୍ୟାତ୍ରିକଂ ଚାଭିଧାସ୍ୟେ ।
ପ୍ରଶ୍ନାସ୍ତିଥ୍ୟର୍ଦ୍ଧଂ ଦିବସଃ କ୍ଷଣଶ୍ଚ ଚନ୍ଦ୍ରୋ ବିଲଗ୍ନଂ ତ୍ୱଥ ଲଗ୍ନଭେଦଃ
ଶୁଦ୍ଧିର୍ଗ୍ରହାଣାମଥ ଗୃହପ୍ରବାଦୋ ବିମିଶ୍ରକାଖ୍ୟଂ ତନୁବେପନଂ ଚ ।୩।

ଏକବିଂଶତି ଅଧ୍ୟାୟରେ ଅନିଷ୍ଟ ଯୋଗ; ଦ୍ୱାବିଂଶତି ଅଧ୍ୟାୟରେ ସ୍ତ୍ରୀଜାତକ; ତ୍ରୟୋବିଂଶତି ଅଧ୍ୟାୟରେ ନିର୍ଯାଣ (ମରଣ) ବିଷୟ; ଚତୁର୍ବିଂଶତି ଅଧ୍ୟାୟରେ ନଷ୍ଟଜାତକ; ପଞ୍ଚବିଂଶତି ଅଧ୍ୟାୟରେ ଦ୍ରେକ୍କାଣସ୍ଥ ରୂପାଧ୍ୟାୟ ବର୍ଣ୍ଣନ କରାଯାଇ ଅଛି ।

ଗ୍ରନ୍ଥକର୍ତ୍ତା ଏଥିରେ ପଞ୍ଚବିଂଶ ଅଧ୍ୟାୟରେ ଗ୍ରନ୍ଥର ସବୁ ବିଷୟ ଉଲ୍ଲେଖ କରିଛନ୍ତି, କିନ୍ତୁ ଏଥିରେ ଅଠେଇଶି ଅଧ୍ୟାୟ ରହିଛି । ରାଶିଶୀଳ, ଋକ୍ଷଶୀଳ,

ଚନ୍ଦ୍ରାଶିଶୀଳ ସମସ୍ତ ଗୋଟିଏ ବିଷୟର ଅନ୍ତର୍ଭୁକ୍ତ ହେତୁ ଏସମସ୍ତ ଗୋଟିଏ ଅଧ୍ୟାୟ ବୋଲି ସେ ଧରିନେଲେ । କିନ୍ତୁ ଟୀକାକାର ଭଟ୍ଟୋତ୍ପଳ ଏହାକୁ ଷୋଡ଼ଶ ସପ୍ତଦଶ ତଥା ଅଷ୍ଟାଦଶ ଏପରି ତିନୋଟି ଅଧ୍ୟାୟରେ ବାଣ୍ଟିଦେଇଛନ୍ତି ଓ ଅନ୍ୟାନ୍ୟମାନେ ମଧ୍ୟ ଏହା ଗ୍ରହଣ କରିଛନ୍ତି ।

ଗ୍ରନ୍ଥକର୍ତ୍ତା ଅନ୍ୟଗୋଟିଏ ଗ୍ରନ୍ଥ ଲେଖିଛନ୍ତି ତାହାର ନାମ 'ଯାତ୍ରାପଟଳ' । ଏଥିରେ ପ୍ରଥମ ଅଧ୍ୟାୟରେ ପ୍ରଶ୍ନପ୍ରଭେଦ; ଦ୍ଵିତୀୟ ଅଧ୍ୟାୟରେ ତିଥିବଳ, ତୃତୀୟ ଅଧ୍ୟାୟରେ ନକ୍ଷତ୍ରଭେଦ; ଚତୁର୍ଥ ଅଧ୍ୟାୟରେ ଦିବସବଳ; ପଞ୍ଚମ ଅଧ୍ୟାୟରେ ବାରବଳ; ଷଷ୍ଠ ଅଧ୍ୟାୟରେ ମୁହୂର୍ତ୍ତବଳ; ସପ୍ତମ ଅଧ୍ୟାୟରେ ଚନ୍ଦ୍ରବଳ, ଅଷ୍ଟମ ଅଧ୍ୟାୟରେ ଲଗ୍ନନିଶ୍ଚୟ; ନବମ ଅଧ୍ୟାୟରେ ଲଗ୍ନଭେଦ; ଦଶମ ଅଧ୍ୟାୟରେ ଗ୍ରହଶୁଦ୍ଧି; ଏକାଦଶ ଅଧ୍ୟାୟରେ ଅପବାଦ ଓ ଦ୍ଵାଦଶ ଅଧ୍ୟାୟରେ ବିମିଶ୍ର, ତ୍ରୟୋଦଶ ଅଧ୍ୟାୟରେ ଅଙ୍ଗକମ୍ପନ ବିଷୟ ଅଛି ।

ଅସ୍ମିଃ ଗ୍ରନ୍ଥ ଗୁହ୍ୟକପୂଜନଂ ସ୍ୟାତ୍ସ୍ୱପ୍ନଂ ତତଃ ସ୍ନାନବିଧିଃ ପ୍ରଦିଷ୍ଟଃ ।
ଯଜ୍ଞୋ ଗ୍ରହାଣାମଥ ନିର୍ଗମଶ୍ଚ କ୍ରମାଚ୍ଚ ଦିଷ୍ଟଃ ଶକୁନୋପଦେଶଃ ।୫।

ଚତୁର୍ଦ୍ଦଶ ଅଧ୍ୟାୟରେ ଗୁହ୍ୟକ ପୂଜନ; ପଞ୍ଚଦଶ ଅଧ୍ୟାୟରେ ସ୍ୱପ୍ନଫଳ; ଷୋଡ଼ଶ ଅଧ୍ୟାୟରେ ସ୍ନାନବିଧି, ସପ୍ତଦଶ ଅଧ୍ୟାୟରେ ଗ୍ରହଯଜ୍ଞ; ଅଷ୍ଟାଦଶ ଅଧ୍ୟାୟରେ ନିର୍ଗମ, ଊନବିଂଶ ଅଧ୍ୟାୟରେ ଶକୁନ ରହିଛି ।

ବିବାହକାଲଃ କରଣଂ ଗ୍ରହାଣାଂ ପ୍ରୋକ୍ତଂ ପୃଥକ୍ତଦ୍ଵିପୁଲାଚ ଶାଖା ।
ସ୍କନ୍ଧୈସ୍ତ୍ରିଭିର୍ଜ୍ୟୋତିଷ ସଂଗ୍ରହୋୟଂ ମୟା କୃତୋ ଦୈବବିଦାଂ ହିତାୟ ।୬।

ବିଂଶ ଅଧ୍ୟାୟରେ ବିବାହକାଳ, ଏକବିଂଶ ଅଧ୍ୟାୟରେ ଗ୍ରହକର୍ମ (ଗ୍ରହଗତି, ଗ୍ରହଣ ଗଣନା) ରହିଛି । ଏସମସ୍ତ ଜ୍ୟୋତିର୍ବିଦ ମାନଙ୍କର ବହୁହିତ କରିବ । ବୃହଜ୍ଜାତକ ଗ୍ରନ୍ଥକୁ ମିଶାଇ ଏସବୁ ଗ୍ରନ୍ଥରେ ଜ୍ୟୋତିଷର ତ୍ରିସ୍କନ୍ଧ ( ସିଦ୍ଧାନ୍ତ, ସଂହିତା ତଥା ହୋରା) ସଂପୂର୍ଣ୍ଣ ବିବୃତ କରାଯାଇ ଅଛି । 'ବିବାହ ପଟଳ' ନାମକ ତାଙ୍କର ଗ୍ରନ୍ଥ ମଧ୍ୟ ରହିଛି । ଜ୍ୟୋତିଷୀ ପୂର୍ଣ୍ଣଜ୍ଞାନ ପାଇବା ପାଇଁ ଜ୍ୟୋତିଷ ଶାସ୍ତ୍ରର ଏହି ତିନୋଟି ବିଭାଗକୁ ଉତ୍ତମ ରୂପେ ବୁଝିବା ଉଚିତ ।

ସଜ୍ଜନମାନଙ୍କୁ ଗ୍ରନ୍ଥକର୍ତ୍ତାଙ୍କ ନିବେଦନ

ପୃଥୁବିରଚିତମନ୍ୟୈଃ ଶାସ୍ତ୍ରମେତତ୍ସମସ୍ତଂ
ତଦନୁ ଲଘୁ ମୟେଦଂ ତତ୍ପ୍ରଦେଶାର୍ଥମେବ ।
କୃତମିହ ହି ସମର୍ଥଂ ଧୀବିଷାଣାମଲତ୍ୱେ
ମମ ଯଦିହ ଯଦୁକ୍ତଂ ସଜ୍ଜନୈଃ କ୍ଷମ୍ୟତାଂ ତତ୍ ।୭।

ପ୍ରାଚୀନ ଅର୍ଯ୍ୟମାନେ ଜ୍ୟୋତିଷ ଶାସ୍ତ୍ରକୁ ବହୁବିସ୍ତାର କରି କହିଛନ୍ତି । ମୁଁ କିନ୍ତୁ ବହୁତ ଅଳ୍ପରେ ସମସ୍ତ ବିଷୟ କହିଲି । ଅଳ୍ପରେ କହିଦେଲି ଭାବି ବିଷୟ ମଧ୍ୟ ଅଳ୍ପବୋଲି କେହି ଭାବିବା ଉଚିତ ନୁହେଁ । ଯାହା କୁହାଯାଇଛି ତାହା ନିଜର ନିର୍ମଳ ବୁଦ୍ଧିରେ ବିଚାରି କରି ସବୁବୁଝି ପାରିବେ । ଭୁଲ ଦେଖିଲେ ସଜ୍ଜନମାନେ ସଂଶୋଧନ କରି କ୍ଷମା କରିବେ ।୭।

ଗ୍ରନ୍ଥସ୍ୟ ଯା ପ୍ରଚରତୋଽସ୍ୟ ବିନାଶମେତି
ଲେଖାଦ୍ବହୁଶ୍ରୁତମୁଖାଧିଗମକ୍ରମେଣ ।
ଯଦ୍ବା ମୟା କୁକୃତମଳ୍ପମିହାକୃତଂ ବା
କାର୍ଯ୍ୟଂ ତଦତ୍ର ବିଦୁଷା ପରିହୃତ୍ୟ ରାଗମ୍ ।୮।

କାଳକ୍ରମେ ଏଗ୍ରନ୍ଥର ବିଶେଷ ପ୍ରଚାର ହେତୁ, ବିଭିନ୍ନ ଲେଖକଙ୍କର ଲେଖାରେ ଭୁଲ ହେତୁ, ଅନ୍ୟଗା ପ୍ରକାର ଅର୍ଥ ହୋଇପାରେ, ଭୁଲ ବି ହୋଇ-ପାରେ କିନ୍ତୁ ପଣ୍ଡିତମାନଙ୍କଠାରୁ ଏହାର ପ୍ରକୃତ ଅର୍ଥ ବୁଝିନେଇ ମୋର ପରିଶ୍ରମ ସାର୍ଥକ କରିବେ । ସଜ୍ଜନମାନେ ଅକାରଣରେ ଏହାର ନିନ୍ଦାନକରି ମୁଁ ଯାହା କହିନାହିଁ ବା ଯାହା ବା ଅଧିକ କହିଛି ସେ ସମସ୍ତ ବିଚାର କରି କ୍ଷମା ଦେବେ ।

## ଗ୍ରନ୍ଥକର୍ତ୍ତାଙ୍କ ପରିଚୟ

ଆଦିତ୍ୟ ଦାସତନୟସ୍ତଦବାପ୍ତବୋଧଃ
କାପିତ୍ଥକେ ସବିତୃଲବ୍ଧବରପ୍ରସାଦଃ ।
ଆବନ୍ତିକୋ ମୁନିମତାନ୍ୟବଲୋକ୍ୟ ସମ୍ୟକ୍-
ହୋରାଂ ବରାହମିହିରୋ ରୁଚିରାଂ ଚକାର ।୯।

ଅବନ୍ତୀ ଦେଶାନ୍ତର୍ଗତ କାପିତ୍ଥ ଗ୍ରାମ ନିବାସୀ ଆଦିତ୍ୟ ଦାସଙ୍କର ମୁଁ ପୁତ୍ର । ମୋର ନାମ ବରାହମିହିର । ମୁଁ ପିତାଙ୍କଠାରୁ ଶାସ୍ତ୍ରଜ୍ଞାନ ଲାଭ କରିଅଛି । ଶ୍ରୀସୂର୍ଯ୍ୟଦେବଙ୍କ କରୁଣା ବଳରୁ ମୁନିମାନଙ୍କ କଥିତ ଶାସ୍ତ୍ରମାନ ସମ୍ୟକ ବିଚାର କରି ଏହି ଉତ୍ତମ ହୋରାଗ୍ରନ୍ଥ (ବୃହଜ୍ଜାତକ) ରଚନା କଲି ।

## ସୂର୍ଯ୍ୟାଦିଙ୍କ ବନ୍ଦନା ଓ ଗ୍ରନ୍ଥସମାପ୍ତି

ଦିନକରମୁନିଗୁରୁଚରଣପ୍ରଣିପାତକୃତପ୍ରସାଦମତିନେଦମ୍ ।
ଶାସ୍ତ୍ରମୁପସଂଗୃହୀତଂ ନମୋଽସ୍ତୁ ପୂର୍ବପ୍ରଣେତୃଭ୍ୟଃ ।୧୦।